# ସାରଳା ରତ୍ନଭଣ୍ଡାର
# ରସସାଗର
## (ଏକାଦଶ ଖଣ୍ଡ)

ମୁଖବନ୍ଧ
ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ
ଅପର୍ଣ୍ଣା ନଗର, କଟକ

ସଙ୍କଳୟିତା
ବିନୋଦବିହାରୀ ଦାସ

# ସାରଳା ରତ୍ନଭଣ୍ଡାର ରସସାଗର (ଏକାଦଶ ଖଣ୍ଡ)

## SARALA RATNABHANDAR RASASAGAR (11th.Volume)

ଉପଦେଷ୍ଟା , ପୃଷ୍ଠପୋଷକ, ସ୍ମାରକ ଓ ନିର୍ଦ୍ଦେଶକ

## ମା ’ ସା ର ଳା

ସଂକଳୟିତା : ବିନୋଦବିହାରୀ ଦାସ


| | |
|---|---|
| ସମ୍ପାଦନା : | ମହେଶ୍ୱର ମୂଳିଆ |
| ସହ-ସମ୍ପାଦକ | ଜାନକୀଲାଲ୍ ଆଦିତ୍ୟ, ସାରସ୍ୱତ ସାଧକ |
| ଡ଼ି.ଟି.ପି. | ଚନ୍ଦ୍ରଶେଖର ପାତ୍ର |
| ମୁଦ୍ରାକର | ରାମକୃଷ୍ଣ ପ୍ରିଣ୍ଟର୍ସ, ୬/ବି, ରମାନାଥ ମଜୁମ୍‌ଦାର ଷ୍ଟ୍ରିଟ୍, କଲିକତା - ୯ |
| ପ୍ରଚ୍ଛଦ ଶିଳ୍ପୀ | ସୁଧୀର ଲେଙ୍କା |
| ପ୍ରକାଶ କାଳ | ତା ୧୫-୦୬-୨୦୦୮ (ରଜ ସଂକ୍ରାନ୍ତି) |
| ପ୍ରକାଶକ ଓ © ସର୍ବସ୍ୱତ୍ୱାଧିକାରୀ | ସୁନୀଲ ଦତ୍ତ, ପୁଫରୋଡ଼, ପଡୁଆଁପଦା, ବାଲେଶ୍ୱର - ୭୫୬୦୦୧ |
| ମୂଲ୍ୟ | ଟ. ୧୩୭.୦୦ (ଏକଶତ ସଇଁତିରିଶ ଟଙ୍କା ମାତ୍ର) |
| ପୃଷ୍ଠାସଂଖ୍ୟା | ୮ + ୨୮୦ = ୨୮୮ |

**ପୁସ୍ତକ ପ୍ରାପ୍ତିସ୍ଥାନ**

ସୁନୀଲ ଦତ୍ତ (ପ୍ରକାଶକ ଓ ପୁସ୍ତକ ବିକ୍ରେତା)
ପୁଫରୋଡ଼, ପଡୁଆଁପଦା, ପୋ-ବାଲେଶ୍ୱର-୭୫୬୦୦୧,
ଫୋନ୍ - ୨୬୨୩୭୨, ମୋବାଇଲ୍ - ୯୪୩୭୦ ୬୨୩୭୨

**ପଦ୍ମାଳୟା**
୩୧/ଏ, ଜନପଥ, ୟୁନିଟ - ୩
ଭୁବନେଶ୍ୱର (ଫୋନ - ୨୫୩୧୦୧୫)

**ଦି. ଲ. (The Law)**
ନିମଚଉଡ଼ି , କଟକ-୨
(ଫୋନ - ୨୬୨୦୭୬୮)

**ଫ୍ରେଣ୍ଡସ୍ ପବ୍ଲିସର**
ବିନୋଦବିହାରୀ,
କଟକ - ୭୫୬୦୦୨

**ଗ୍ରନ୍ଥାଳୟ**
ମାର୍କେଟ ବିଲ୍ଡିଂ,
ଭୁବନେଶ୍ୱର-୭୫୧୦୦୧

# ସାରଳା ରତ୍ନଭଣ୍ଡାର ରସସାଗର

## (ଏକାଦଶ ଖଣ୍ଡ)

## ଅଂଶୀଦାର ବୃନ୍ଦ

| | |
|---|---|
| ପୁଥି-ପୁଞ୍ଜି ଓ ପ୍ରତ୍ନତତ୍ତ୍ୱ ନିର୍ଦ୍ଦେଶକ | : ଗୋପାଳ ପ୍ରସାଦ ନନ୍ଦ,<br>ଅବସରପ୍ରାପ୍ତ ମୁଖ୍ୟ ଆୟକର କମିଶନର, ଓଡ଼ିଶା<br>ଓ<br>ପୁଥି-ପୁଞ୍ଜି, ପ୍ରତ୍ନତତ୍ତ୍ୱ ଗବେଷକ । |
| ସଂଗ୍ରାହକ | : ଝରଣାରାଣୀ ଦାସ, ଆଡ଼ଭୋକେଟ । |
| ସହାୟକ | : ଡାକ୍ତର କୃଷ୍ଣା ଦାସ, ଏମ.ଡି. ।<br>ଅବସରପ୍ରାପ୍ତ ଯୁଗ୍ମନିର୍ଦ୍ଦେଶକ,<br>ସ୍ୱାସ୍ଥ୍ୟ ବିଭାଗ, ଓଡ଼ିଶା । |
| ବ୍ୟବସ୍ଥାପକ | : ଚକ୍ରଧର ପ୍ରଧାନ, ଆଡ଼ଭୋକେଟ । |
| ବ୍ୟବସାୟିକ ପରାମର୍ଶଦାତା | : ଦ୍ରୁପଦ ଚନ୍ଦ୍ର ତଗରା, ମାଛନ୍ ଓନପ । |



# ଶ୍ରୀ ବିନୋଦବିହାରୀ ଦାସଙ୍କ ପ୍ରକାଶିତ ଗ୍ରନ୍ଥମାଳା

(୧) ସାରଳା ରତ୍ନଭଣ୍ଡାର ରସସାଗର (୧ମରୁ ୧୧ଶ ଖଣ୍ଡ)
(ଓଡ଼ିଆ ଢଗଢମାଳି, ପ୍ରବାଦ, ବଚନ, ପ୍ରବଚନ, ପ୍ରାଚୀନ ଓଡ଼ିଆ ସାହିତ୍ୟ ଏବଂ ରୂଢ଼ିପ୍ରତ୍ୟୟ ସଂପର୍କରେ ପ୍ରଥମଥର ପାଇଁ ସୁଦୀର୍ଘ ଆଲୋଚନା।)

(୨) ସାଉଁଟା ମଣିମାଣିକ୍ୟ (ଓଡ଼ିଆରେ ୨୭୦୦ ବିଶ୍ୱବିଖ୍ୟାତ ପ୍ରବଚନ)।

(୩) ସାନ୍ତାଳ ଲୋକକଥା (୧ମ ଓ ୨ୟ ଖଣ୍ଡ)
(ଆଦିବାସୀ ଲୋକ କାହାଣୀ)।

(୪) ଲୋଧା ଶବର ଲୋକକଥା (ଆଦିବାସୀ ଲୋକ କାହାଣୀ)।

(୫) ଆଦିବାସୀ ଜୀବନ
(ବିଭିନ୍ନ ଆଦିବାସୀ ଗୋଷ୍ଠୀର ସମାଜ ସଂପର୍କରେ ଆଲୋଚନା)।

(୬) ବୀରବଲ୍ଙ୍କ ହସ କାହାଣୀ (୧ମ ଖଣ୍ଡ)।

(୭) ହସ କଲ୍ଲୋଳ (୧ମ, ୨ୟ ଓ ୩ୟ ଖଣ୍ଡ) (ବ୍ୟଙ୍ଗ ଗଳ୍ପ)।

(୮) ଗଳ୍ପ ବିନୋଦ (କ୍ଷୁଦ୍ର ଗଳ୍ପ)।

(୯) ଜୀବନ କାହାଣୀ (ଅନୁବାଦ ଗଳ୍ପ)।

(୧୦) ବାଂଲାଦେଶର ଲୋକଗୀତ (ଅନୁବାଦ)।

(୧୧) ଓଡ଼ିଆ ପ୍ରହେଳିକା ଉନ୍ମେଷ ଓ ବିକାଶ
(ପ୍ରହେଳିକା ସଂପର୍କରେ ଆଲୋଚନା)।

(୧୨) ଲୋକକାହାଣୀ ସଙ୍କଳନ (୧ମ ଓ ୨ୟ ଖଣ୍ଡ)।

(୧୩) ଅପହରଣ (ଉପନ୍ୟାସ)।

(୧୪) ସହ-ବାସ (ଉପନ୍ୟାସ)।

(୧୫) ରହସ୍ୟଗଳ୍ପ।

—— ପ୍ରକାଶକ ଓ ପୁସ୍ତକ ବିକ୍ରେତା



# ଉତ୍ସର୍ଗ

ଉତ୍କଳଗୌରବ କୁଳବୃଦ୍ଧ  ମଧୁସୂଦନ ଦାସଙ୍କୁ
ଭକ୍ତି ଓ ପ୍ରୀତି ଅର୍ଘ୍ୟ ସ୍ୱରୂପ
ଏହି ଗ୍ରନ୍ଥଟିକୁ ବିନମ୍ରତାର ସହ ଉତ୍ସର୍ଗ କରୁଛି ।

ହେ ମହାଭାଗ!
ଅମର ଧାମରୁ ଏ ଅକିଞ୍ଚନଙ୍କୁ ଆଶୀର୍ବାଦ କରନ୍ତୁ ।

- ସଙ୍କଳୟିତା

# -ମଙ୍ଗଳାଚରଣ-

## *ଭଗବାନ ଶ୍ରୀକୃଷ୍ଣଙ୍କୁ ଜଣାଣ*

ଶୁଣ ସୁମନେ ସୁମନ ଦେଇ ହୋଇ ସାବଧାନ
ସାତପୋଇ ରେ ଜଣାଣ କଲି ଯେ ମୁହିଁ ।
ପଦ ଆଦ୍ୟରେ କଳନା ପଞ୍ଚାଶ ବର୍ଣ୍ଣ ବର୍ଣ୍ଣନା
ଆଦ୍ୟ ପ୍ରାନ୍ତ ଅନୁପ୍ରାସପ୍ରଥମ ପୋଇ ॥
ଦ୍ୱିତୀୟରେ ପ୍ରାନ୍ତଯମକ,
ତୃତୀୟ ପୋଇ ଅବନା ଅକ୍ଷରେ ଠିକ ।
ଚତୁର୍ଥ ସମସ୍ତ ବର୍ଣ୍ଣ ବନାରେ ହେଲା ଘଟଣ
ଆଦ୍ୟ ଯମକ ପଞ୍ଚମେ ହେଲା ବିଦିତ ।
ଷଷ୍ଠ ମଧ ଯମକରେ ସପତମ ଶୃଙ୍ଖଳାରେ
ତଣ୍ଡକ ମାଳ ଯମକେ କଲି ରଚିତ ॥
ସନ୍ତୋଷେ ହେଜିବ ସୁଜନେ,
ଶ୍ରୀକୃଷ୍ଣ ଜଣାଣ ଦୋଷ ନଧର ମନେ ।

## ସାରଳାଙ୍କୁ ପ୍ରାର୍ଥନା

ଜୟ ଜୟ ଜୟ ଜଗତ ଜନନୀ ଜୟ ଝଙ୍କଡ଼-ବାସିନୀ ମା ।
ଦୈତ୍ୟ ବିନାଶିନୀ ଶ୍ମଶାନବାସିନୀ ଜୟ ମହିଷମର୍ଦ୍ଦିନୀ ମା ।
ବିପଦତାରିଣୀ ମଙ୍ଗଳକାରିଣୀ ରକ୍ତ ମନ୍ଦାରଧାରିଣୀ ମା
ଶଙ୍କର ଘରଣୀ ଟଙ୍କାର ନାଦିନୀ ଜୟ ଝଙ୍କାର ଗମନୀ ମା ।
ଚଉଦ ବ୍ରହ୍ମାଣ୍ଡ ତୋହ ପାଦେ ଲୁଣ୍ଠ ଚଣ୍ଡ ମୁଣ୍ଡବିଧ୍ୱଂସି ମା
ଖଣ୍ଡାଧରି ଖଣ୍ଡ ମୋ ଦୁଃଖ ଦୁର୍ଦ୍ଦଣ୍ଡ ପ୍ରଚଣ୍ଡ ଗର୍ବ ଗଞ୍ଜିନୀ ମା ।
ମାଗୋ ହୈମବତୀ ଘେନ ମୋ ବିନତି ମୁଁ ଅଟେ ଅତି ଅଜ୍ଞାନୀ ମା ।
ତଗ ଗୀତେ କହି ତୋହ ପାଦ ଧ୍ୟାୟି ଦିନ ଯାଉ ଏ ଦୟିନୀ ମା ॥

# ଭଦ୍ରକାଳୀ ସ୍ତବ

ତୁମେ ଭଦ୍ରକାଳୀ ମହାକାଳୀ ଯେ ଭୀଷଣୀ
ତୁମେ ମହାଦେବୀ ଦକ୍ଷଯଜ୍ଞ ବିନାଶିନୀ ।
ତୁମେ ଦୁର୍ଗା ମହାବୀର୍ଯ୍ୟା ଦୁର୍ଗ ପରାକ୍ରମ
ସକଳ ନିଷ୍କଳ ତୁମେ ଘେନ ମୋ ପ୍ରଣାମ ।
ତୁମେ ଦୁର୍ଗା ଅପବର୍ଗା ମୁକ୍ତି ପ୍ରଦାୟିନୀ
ତୁମକୁ ପ୍ରଣାମ ଆମ ଘେନ ହେ ଭବାନି ।
ତୁମେ ବୃଷ୍ଟି ତୁମେ ସୃଷ୍ଟି ଦେବୀ ସରସ୍ୱତୀ
ତୁମେ ଦେବୀ ସର୍ବମୟ ପୁଣି ପ୍ରଜାପତି ।
ତୁମେ ସର୍ବାତ୍ମିକା ସକଳ ମୂର୍ତ୍ତି ଧାରିଣୀ
ତୁମେ ସ୍ଥୂଳ ସୂକ୍ଷ୍ମ ମୂର୍ତ୍ତି ତୁମେ ଗୋ ଜନନୀ ।
ପ୍ରସନ୍ନା ହୋଇଣ କୃପାଦୃଷ୍ଟି କର ଦାନ
ଏତିକି ଦଇନି, କର ସକଳ କଲ୍ୟାଣ ।

# ଗାୟତ୍ରୀମାତାଙ୍କ ଆରତି

ଶ୍ରୀମୁଖରେ ବିରାଜଇ ତୀକ୍ଷ୍ଣ ଦନ୍ତ ପଙ୍କ୍ତି
ଜନମଙ୍କ ମନ ମଧ୍ୟେ ସିଂହ ମୁଖ କାନ୍ତି ।
ଘୋର ରୂପେ ଜୟନ୍ତି ହେ ନୟନ ଯୁଗଳ
ପଦ୍ମପତ୍ରେ ଯେହ୍ନେ ଶୋଭେ ଶ୍ରୀମୁଖମଣ୍ଡଳ ।
ହେ ଜୟେ! ହେ ମାନସୀ ହେ ମାନବୀ ଆପଣ
ନିଖିଳ ମାନବଙ୍କର ଜନ୍ମଦାତ୍ରୀ ପୁଣ ।
ବାହନ ହୋଇଛି ପଶୁରାଜ ସିଂହ ଯେଣୁ
ସିଂହଧ୍ୱଜା ନାମେ ପରିଚିତା ବିଶ୍ୱେ ତେଣୁ ।
ସମସ୍ତ ସିଦ୍ଧି ପ୍ରଦାନ କରିଥାଅ ମାତ!
ତବ ସୁଗମ୍ଭୀର ସ୍ୱର ହେଲେ ଥରେ ଜାତ ।

ନ୍ୟୂନ କରେ ମେଘ ଶବ୍ଦ ସମୁଦ୍ର ଗର୍ଜ୍ଜନ
ଏହାର ତୁଳନା ଶବ୍ଦ ନାହିଁ କାହିଁ ଆନ ।
ହେ ମାତ! ଆପଣ ବ୍ରାହ୍ମୀ ମାହେନ୍ଦ୍ରୀ ଗଉରୀ
ବୈଷ୍ଣବୀ ବାରାହୀ ବାରୁଣୀ ଯେ ମାହେଶ୍ୱରୀ ।
ଶକ୍ତି ରୂପେ ଆପଣ ସର୍ବଦା ବିରାଜିତ
ଅଗ୍ନି ବାୟୁ ଜଳୁ ହୋଇ ଅଛନ୍ତି ସମ୍ଭୃତ ।
ପୃଥିବୀ ଧାରଣ କର୍ତ୍ତୀ ହୋଇ ମଧ ମାତ!
ହେମକୂଟ ମହେନ୍ଦ୍ର ଓ ଶ୍ରୀଗିରି ପର୍ବତ ।
ହିମାଳୟ ବିନ୍ଧ୍ୟ ସହ୍ୟ ଆଦି ସ୍ଥାନେ ସଦା
କରୁଛ ବିହାର ମନ ଆନନ୍ଦେ ସର୍ବଦା ।
ଏହି ଯେ ଭୀଷଣ ଲକ୍ଷ୍ୟ ପ୍ରମଥ ସମୂହ
ବେଢ଼ିଛନ୍ତି ଚଉପାଶେ ବୁଲି ଅହରହ ।
ହେ ମାତ! ଆପଣଙ୍କର ତେଜ ଶୋଭାପାଏ;
କୋଟି କୋଟି ସୂର୍ଯ୍ୟ କିରଣର ଦୀପ୍ତିପ୍ରାୟେ ।
ପ୍ରଳୟ କାଳୀନ ବହ୍ନି ଦେଖି ସେହି ତେଜ
ସମକକ୍ଷ ନ ହୋଇଣ ପାଏ ମନେ ଲାଜ ।
ସ୍ୱର୍ଣ୍ଣସମ ସମୁଜ୍ଜ୍ୱଳ ରୂପ ଦେଖି ନର
ରତିରେ ଗାଢ଼ ଆସକ୍ତ ହୁଏ ବାରବାର ।
ହେ ମାତ! ଶାନ୍ତି, ସମ୍ପଦ,ଋଦ୍ଧି, ଲକ୍ଷ୍ମୀ, ଧୃତି,
ପ୍ରଭା, ସିଦ୍ଧି, ବୁଦ୍ଧି ସର୍ବ ଅଟେ ପୁଣି ମତି ।
ହେ ପ୍ରିୟେ! ଜୀବମାନଙ୍କ ଏକମାତ୍ର ଗତି
ଆପଣ ତୁଷ୍ଟି, ସୃଷ୍ଟି ଓ ଦୃଷ୍ଟି ଆଉ ସ୍ଥିତି ।
ନିତ୍ୟ ଦେବଗଣଙ୍କର ଅଟୁ ତୁ ଜନନୀ
ବିଧି ଓ କାର୍ଯ୍ୟ ସମସ୍ତ କରୁଅଛ ଜାଣି ।
ନିତ୍ୟ କୁମାରୀ ଆପଣ, ନିତ୍ୟ ଯେ ତାପସୀ
ଆପଣଙ୍କଠାରୁ ସାଂଖ୍ୟ ଯୋଗ ଅଛି ଆସି ।

ସର୍ପ, ହଳ, ପଶୁ, ଅସି, ଶଙ୍ଖ, ଚକ୍ର, ପାଶ
ଖଟ୍ୱାଙ୍ଗ ମୂଷଳ ଦଣ୍ଡ ସହିତ ଅଙ୍କୁଶ ।
ଶିବଦଣ୍ଡ ତ୍ରିଶୂଳ ଓ ଅକ୍ଷମାଳାମାନ
ଅସ୍ତ୍ର ଧରିଅଛ ଗଛି ଅସୁର ନିଧନ ।
ହେ ଉମା ଚଣ୍ଡିକେ ବିଶ୍ୱ ସଂହାର କାରିଣୀ
ପୁଣି ପାଳୁଛ ସଂସାର ଏକାଧାରେ ପୁଣି ।
ଜୀବଙ୍କୁ ଯେ ବନ୍ଧ ମୋକ୍ଷ କରିପାର ମାତା
ଧ୍ୱଂସ କର ପାପରାଶି ଲୋକର ସର୍ବଥା ।
କ୍ଷଣପ୍ରଭା ଉଲ୍କା ପରି ସୁଖକାନ୍ତି ଦୀପ୍ତି
ଆହେ କୃଷ୍ଣ ମୂର୍ତ୍ତେ ନବମୀ ଅଷ୍ଟମୀ ତିଥି ।
ପଞ୍ଚମୀ ଚତୁର୍ଥୀ ପୌର୍ଣ୍ଣମାସୀ ଏକାଦଶୀ
ଦିବସେ ତୁମ୍ଭ ଉତ୍ସବ ହୁଏ ପରମେଶି ।
ପଦ୍ମରାଗ, ମରକତ ବଜ୍ର ଇନ୍ଦ୍ରନୀଳ
ସ୍ଫଟିକ ବୈଦୁର୍ଯ୍ୟ ମହାନୀଳ ମୁକ୍ତାଫଳ ।
ବିଭୂଷିତ ହୋଇ ସଦା ଶୋଭା ଦିଶୁଥା'ନ୍ତି,
ହେମରତ୍ନ ପ୍ରଭାବରେ ଉଜ୍ଜ୍ୱଳ ଦେହକାନ୍ତି ।



ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ
ଅବସରପ୍ରାପ୍ତ ପ୍ରଫେସର,
ବିଶ୍ୱଭାରତୀ, ଶାନ୍ତିନିକେତନ, ପଶ୍ଚିମ ବଙ୍ଗ ।

# ଶୁଆ କଥା ଶୁଆ କହିବ

ବିସ୍ମୟ ବିନୋଦ । ବିସ୍ମୟ-ଚିନ୍ମୟ ଆନନ୍ଦରେ ନିତ୍ୟ ବର୍ତ୍ତମାନ । ସେ ବିନୋଦ ବିହାରୀ ଦାସ ଜଣେ ପ୍ରତିଷ୍ଠିତ ଆଇନ୍‌ଜୀବୀ ବୋଲି ବିସ୍ମୟ ନୁହନ୍ତି; ବିସ୍ମୟ ନୁହନ୍ତି ମଧ ପୃଥିବୀର ବିଭିନ୍ନ ଦେଶରେ ଅନୁଷ୍ଠିତ ଆଇନ୍‌ଜୀବୀ ସମ୍ମିଳନୀରେ ଯୋଗ ଦେଇ ନିଜର ବଳିଷ୍ଠ ଯୁକ୍ତି ଉପସ୍ଥାପନ କରିଛନ୍ତି ବୋଲି । ବିସ୍ମୟ ମଧ ନୁହନ୍ତି ଆପଣାର ବଦାନ୍ୟତା ପାଇଁ । ସେ ବିସ୍ମୟ ଆପଣାର ଜ୍ଞାନ ପାଇଁ । ସେ ଜ୍ଞାନୀ, ଯେହେତୁ ସେ ଶ୍ରଦ୍ଧାବାନ୍ । 'ଶ୍ରଦ୍ଧାବାନ୍ ଲଭତେ ଜ୍ଞାନମ୍' - ତାଙ୍କ ଜୀବନର ଆଦର୍ଶ । ସେହି ଜ୍ଞାନ ଆଇନ୍‌ର ପର୍ଦ୍ଦା ଫାଶ କରିବାର ଜ୍ଞାନ ନୁହେଁ; ହୃଦୟକୁ ମୁକ୍ତ କରିଦେବାର ଜ୍ଞାନ, ସଂସ୍କୃତିକୁ ଭଲ ପାଇବାର ଜ୍ଞାନ, ମଣିଷ ସହିତ ମଣିଷର ହୃଦୟକୁ ମିଶାଇ ଦେବାର ଜ୍ଞାନ, ଭାଷା ଓ ସାହିତ୍ୟର ରତ୍ନଭଣ୍ଡାର ପ୍ରତି ଶ୍ରଦ୍ଧା ନିବେଦନ କରିବାର ଜ୍ଞାନ, ମଣିଷ ଚରିତ୍ରକୁ ଆବିଷ୍କାର କରିବାର ଜ୍ଞାନ, ଯତ୍ରତତ୍ର ବିଛୁରିତ ହୋଇ ପଡ଼ି ରହିଥିବା ଜାତିର ଚାରିତ୍ରିକ ମହିମା ଓ ମହତ୍ତ୍ୱକୁ ସାଉଁଟି ଆଣି ସଂକଳନ କରିଦେବା ଓ ତାହାର ମାର୍ମିକ ବ୍ୟାଖ୍ୟା କରିବାର ଜ୍ଞାନ । ବିସ୍ମୟ ବିନୋଦଙ୍କ ଜୀବନ-ଚର୍ଯ୍ୟା ଆରମ୍ଭ ହୁଏ ଶିକ୍ଷକତାରୁ । କ୍ରମେ ସେ ଗତି କରିଯାଆନ୍ତି ଆଇନ୍ ବ୍ୟବସାୟକୁ । କୁଳବୃଦ୍ଧ ମଧୁସୂଦନ ଦାସଙ୍କ ପରି ପ୍ରଚୁର ଅର୍ଥ ରୋଜଗାର କରିଛନ୍ତି ମାତ୍ର ଅର୍ଥ ତାଙ୍କୁ କବଳିତ କରିପାରିନାହିଁ । ବରଂ ଅର୍ଥ ହୋଇଛି ତାଙ୍କର ଆଜ୍ଞାବହ ଭୃତ୍ୟ । ସେହି ଅର୍ଥ ବଳରେ ସେ ପ୍ରକାଶ କରିଛନ୍ତି ଗୋଟିକ ପରେ ଗୋଟିଏ ପୁସ୍ତକ । କାହାରି କୃପାପ୍ରାର୍ଥୀ ହୋଇନାହାନ୍ତି । ନିଜର ସ୍ୱାଭିମାନ ବଜାୟ ରଖିଛନ୍ତି ଓ ସେହି ସ୍ୱାଭିମାନ ବଳରେ ସେ ଓଡ଼ିଆ ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ଅଦ୍‌ଭୁତ ଏହି ପ୍ରଜ୍ଞାଦୀପ୍ତ ମଣିଷ; ମଣିଷ ରୂପରେ ଋଷିପ୍ରତିମ ବ୍ୟକ୍ତି । ଏକାନ୍ତ ଧ୍ୟାନନିଷ୍ଠ ସାଧକ । ସାଧନାର ସିଦ୍ଧି ଅନନ୍ୟ । ସେ ଗବେଷକ ମାତ୍ର ମୋହରମରା ଗବେଷକ ନୁହନ୍ତି । ସେ ଔପନ୍ୟାସିକ ଓ ଗାଳ୍ପିକ ମାତ୍ର ପ୍ରଚାରସର୍ବସ୍ୱ ନୁହନ୍ତି । ସେ ଭାଷାତତ୍ତ୍ୱ ବିଶାରଦ ମାତ୍ର ଏଥିପାଇଁ ଅହଂକାର ନାହିଁ । ସେ ଲୋକ-କୃତି ବା ଲୋକ-ସଂସ୍କୃତିର ସଂଗ୍ରାହକ; ମାତ୍ର ଏଥିପାଇଁ ସ୍ୱୀକୃତି ଅପେକ୍ଷା କରିନାହାନ୍ତି । ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଆ ଭାଷାର କଳା-କୋଣାର୍କ । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପ୍ରଣୟନ କଲା ପରି ସେ ପ୍ରଣୟନ କରିଛନ୍ତି 'ସାରଳା ରତ୍ନଭଣ୍ଡାର ରସସାଗର' (୧ମରୁ ୧୦ମ ଖଣ୍ଡ), ସାଉଁଟା ମଣିମାଣିକ୍ୟ (ପ୍ରବଚନ) । ଏବେ ମଧ

ସାଧନାରତ 'ସାରଳା ରତ୍ନଭଣ୍ଡାର ରସସାଗର'ର ୧ ୧ଶ ଖଣ୍ଡ ଛଡ଼ା, ଆହୁରି କେତେଗୁଡ଼ିଏ ଖଣ୍ଡରେ ତାହା ସଂପୂର୍ଣ୍ଣ କରିବା ପାଇଁ । ଓଡ଼ିଆ ସାହିତ୍ୟର ପ୍ରବାଦ, ପ୍ରବଚନ, ବଚନ, ଢଗ, ସାନ୍ତାଳ ଲୋକକଥା (୧ମ, ୨ୟ), ଲୋଧା ଶବର ଲୋକକଥା, ବୀରବଲଙ୍କ ହସ କାହାଣୀ, ହସ କଲ୍ଲୋଳ (୧ମ-୩ୟ), ଜୀବନ କାହାଣୀ (ଅନୁବାଦ), ବାଂଲାଦେଶର ଲୋକଗୀତ (ଅନୁବାଦ), ନାମକରଣ ଅଭିଧାନ, ସାରଳା ମନୋରଂଜନ ମଂଜରୀ, ଓଡ଼ିଆ ପ୍ରହେଳିକା ଉନ୍ମେଷ ଓ ବିକାଶ, ସାନ୍ତାଳ୍ ହଲ୍‌କୁଆ କାଥା, ସାନ୍ତାଳୀ ପ୍ରବାଦ ଓ ରୁଢ଼ି ପ୍ରତ୍ୟୟ ସଂକଳନ ବିନୋଦ ପ୍ରଜ୍ଞା-ମାନସର ଗୋଟିଏ ଗୋଟିଏ ସାର୍ଥକ ପ୍ରତିଲିପି । ଏହି ପ୍ରଜ୍ଞା-ମାନସ ପୁଣି ସୃଷ୍ଟି କରିଛି ମୌଳିକ ସାରସ୍ୱତ କୃତି । ସହବାସ, ଅପହରଣ, ପୁନିଆଗୁଣ୍ଡା, ପଣସୁନ୍ଦରୀ, ନୃତ୍ୟାଙ୍ଗନା ବିନୋଦିନୀ ଆଦି ଉପନ୍ୟାସ ଓ ଗଳ୍ପ ବିନୋଦ, ଗଳ୍ପ ମହୁର ଆଦି ଗଳ୍ପ ସଂକଳନ । ତାଙ୍କ ସର୍ଜନ-ମାନସର କଳାତ୍ମକ ଅଭିବ୍ୟକ୍ତି । କୃତି ଅନେକ । କୀର୍ତ୍ତୀ ଅନନ୍ୟ । ସାଧାରଣରେ ଅସାଧାରଣ । ମାଟିର ମହାକବି ସାରଳା ଦାସଙ୍କ ପରି ସାରଳା ଦେବୀଙ୍କ କୃପାରୁ ହିଁ ବିନୋଦ-ବିଦ୍ୟା-ବିସ୍ମୟ ।

'ସାରଳା ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥର ପ୍ରତ୍ୟେକ ଖଣ୍ଡରେ ଶ୍ରୀଯୁକ୍ତ ଦାସ ଯେପରି ନିଜର ସୁଚିନ୍ତିତ ମନ୍ତବ୍ୟ ଦେଇଛନ୍ତି, ଯେପରି ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଅଛନ୍ତି, ତାହା ତାଙ୍କ ପ୍ରଜ୍ଞା, ପିପତିଷା ଓ ସମୀକ୍ଷାତ୍ମକ ଦୃଷ୍ଟିଭଙ୍ଗୀର ପରିଚୟ ଦେଇଥାଏ । ଏକାଦଶ ଖଣ୍ଡର ଗ୍ରନ୍ଥପ୍ରବେଶରେ ଶ୍ରୀ ଦାସ ସାରଳା ଦେବୀଙ୍କ ଆଶୀର୍ବାଦ କାମନା କରି ନିଃସ୍ୱାର୍ଥପର ସମର୍ପିତ ଭାବରେ ଆନ୍ତରିକତା ଓ ନିଷ୍ଠାର ସହ ଲୋକମଙ୍ଗଳ ପାଇଁ ଏହି ସାରସ୍ୱତ କର୍ମଟିକୁ ଦୀର୍ଘ ଚଉଦବର୍ଷ ଧରି କରିଆସିଛନ୍ତି ବୋଲି ସୂଚାଇ ଦେଇଛନ୍ତି । ସେ ପୁଣି କହନ୍ତି - 'ଅବିଦ୍ୟା ଅରଣ୍ୟରେ ପଡ଼ିଥିବା କେତେଜଣ ସାହିତ୍ୟ ବିଶାରଦ ମୋର ସାରସ୍ୱତ ସାଧନାକୁ ସହ୍ୟ କରିନପାରି, ମୋତେ ଛିଗୁଲାଉଛନ୍ତି । ଫୋନ୍ ଉପରେ ଗାଳିଗୁଲଜ କରିବାକୁ ମଧ ପଛାଉ ନାହାନ୍ତି । ଅହରହ ନିନ୍ଦା କରିବାରେ ବ୍ୟସ୍ତ ।' ଏଥିରେ ବିନୋଦବାବୁ ବିଚଳିତ ନୁହନ୍ତି । କାରଣ ସେ ଜାଣନ୍ତି ଅବିଦ୍ୟା ଅରଣ୍ୟର ଜୀବନ୍ତ ମନୁଷ୍ୟ କାହାରି ପ୍ରଶଂସା ସହିପାରେ ନାହିଁ । ଏହି ଅସହିଷ୍ଣୁମାନେ ସଜ ମାଛରେ ପୋକ ପକାନ୍ତି । ଏମାନେ ନିନ୍ଦୁକ । ନିନ୍ଦୁକମାନଙ୍କଠାରୁ କିଛି ଆଶା କରାଯାଏ ନାହିଁ । ସେମାନେ ଜାତିର କଳଙ୍କ । ଯିଏ କର୍ମଯୋଗୀ, ଜ୍ଞାନଯୋଗୀ ସେ କାହାରି ନିନ୍ଦା ପ୍ରଶଂସାରେ ବିବ୍ରତ ହୁଏ ନାହିଁ ବା ଆନନ୍ଦମୁଖର ହୁଏ ନାହିଁ । କର୍ମ ତାର ତପସ୍ୟା । ଜ୍ଞାନ ତାର ଉପାସ୍ୟ । ଶ୍ରଦ୍ଧା ତାର ନୈବେଦ୍ୟ । ଏହି ତିନୋଟି ଗୁଣ ବିନୋଦବାବୁଙ୍କର ଅଛି । ସେ ତ ସତ୍ୟ ଓ ମଙ୍ଗଳର ଉପାସକ । ଅହିତକରଙ୍କ କୁତ୍ସା ପ୍ରତି ଧ୍ୟାନ କାହିଁକି ଦେଉଛନ୍ତି? ଯିଏ ସତ୍ୟବାକ୍ ଓ ମଙ୍ଗଳର ଉପାସକ ତା'ପ୍ରତି ଯୁଗେ ଯୁଗେ ପ୍ରତାରକ ଓ ଅହଂଦୃପ୍ତମାନେ କୁତ୍ସାରଟନା କରନ୍ତି । ସାରଳା ଦାସଙ୍କ ଭାଗ୍ୟରେ ଏହା ହୋଇଥିଲା । ଆଧୁନିକ ଯୁଗରେ ମଧ କେତେ କେତେ ଲୋକଙ୍କ ଭାଗ୍ୟରେ ଏହା ହୋଇଛି । କବିବର ରାଧାନାଥ ରାୟ ଏପରି ବ୍ୟକ୍ତିଙ୍କୁ ଈର୍ଷା, ଅଜ୍ଞ ଓ

ବିଜ୍ଞମାନ୍ୟ କହି ସେମାନଙ୍କ ନିନ୍ଦା ପ୍ରତି କର୍ଣ୍ଣପାତ ନକରିବାକୁ କହିଛନ୍ତି । ସମୟ ସବୁଠାରୁ ମଣିଷର ବଡ଼ ବିଚାରକ । ସମୟ ଆସିବ ଯେତେବେଳେ ନିନ୍ଦୁକମାନେ ମଧ ପ୍ରଶଂସା ଅଜାଡ଼ି ଦେବେ । ବିବେକୀ ମଣିଷ ଧୈର୍ଯ୍ୟ ସହକାରେ କାର୍ଯ୍ୟ କରେ ଓ ଅପେକ୍ଷା କରେ ଭବିଷ୍ୟତକୁ କାଳେ କେହି ଜଣେ ସହୃଦୟ ମଣିଷଟିଏ ଆସିଯିବ ।

ଗ୍ରନ୍ଥର 'ଅବତରଣିକା' ଅତ୍ୟନ୍ତ ଉପାଦେୟ ଓ ପାଣ୍ଡିତ୍ୟପୂର୍ଣ୍ଣ । ଏଥିରେ ରୂଢ଼ିପ୍ରତ୍ୟୟ ସଂପର୍କରେ ବିସ୍ତୃତ ତାତ୍ତ୍ୱିକ ଆଲୋଚନା ରହିଅଛି । ପ୍ରସଙ୍ଗକ୍ରମେ ଲେଖକ ଦର୍ଶାଇ ଦେଇଛନ୍ତି ଯେ ରୂଢ଼ି ପ୍ରତ୍ୟୟର ଯଥାର୍ଥ ଅର୍ଥବୋଧକ ଶବ୍ଦ ଓଡ଼ିଆ ବ୍ୟତୀତ ଅନ୍ୟ କୌଣସି ଭାଷାରେ ନାହିଁ । ବାଗ୍‌ଧାରା, ବାଗ୍‌ରୀତି, ପ୍ରଯୁକ୍ତତା ଓ ଭାଷା ସଂପ୍ରଦାୟ ଆଦି ଯେତେ ଯେତେ ଶବ୍ଦ କୁହାଯାଇଛି ତାହା ରୂଢ଼ିପ୍ରତ୍ୟୟର ଯଥାର୍ଥ ପ୍ରତିଶବ୍ଦ ହୋଇପାରେ ନାହିଁ । ଓଡ଼ିଆ ଭାଷାରେ ଢଗଢମାଳି ଏକାନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ହିନ୍ଦୀରେ ବା ସଂସ୍କୃତରେ ଏହାକୁ ଲୋକୋକ୍ତି, ପ୍ରବାଦ ଓ ସୂକ୍ତି କୁହାଯାଏ । ଏସବୁ କିନ୍ତୁ ଓଡ଼ିଆ ଭାଷାରେ ପ୍ରଚଳିତ ଢଗଢମାଳି ଠାରୁ ଭିନ୍ନ । ଲେଖକ ପୁଣି ରୂଢ଼ିପ୍ରତ୍ୟୟର ପରିଚୟ ଦେବାକୁ ଯାଇ ଯେପରି ତାହାକୁ ପୁରାଣ ଓ ଇତିହାସ, ପଞ୍ଚଭୂତ, ପ୍ରାକୃତିକ ଉପାଦାନ, ଈଶ୍ୱର, ସାଧନା ଓ ଧର୍ମ, ଜନ୍ମ, ଜୀବନ ଓ ମୃତ୍ୟୁ, ମନୋଭାବ, ସଂଗୀତ, ନୃତ୍ୟ, ଶରୀରାବୟବ, ଚିତ୍ରକଳା ଓ ଅଭିନୟ, ସଂଖ୍ୟା ଇତ୍ୟାଦି ଭେଦରେ ବିଚାର କରିଛନ୍ତି ତାହା ତାଙ୍କର ମୌଳିକ ଦୃଷ୍ଟିକୋଣର ପରିଚୟ ଦିଏ । ତୋଷାମୋଦ, ବାତ୍ସଲ୍ୟବୋଧ, ମାନସମ୍ମାନ, କୃତଜ୍ଞତାବୋଧ,କ୍ରୋଧ-ଲୋଭ ଓ ସ୍ୱାର୍ଥ, ଘୃଣା-ଉତ୍ତେଜନା ଓ ବିଦ୍ରୋହ, ଆଳସ୍ୟ ଭାବ ଇତ୍ୟାଦିକୁ ନେଇ କିପରି ରୂଢ଼ିପ୍ରତ୍ୟୟର ପ୍ରୟୋଗ ହୋଇଛି ତାହାକୁ ବିଜ୍ଞାନ ସମ୍ମତ ଭାବରେ ଦର୍ଶାଇ ଦେଇଛନ୍ତି ଲେଖକ । ରୂଢ଼ିପ୍ରତ୍ୟୟର ଉନ୍ମେଷ, ଉଦ୍ଭରଣ, ଗଠନ, ଆକାର, ଅର୍ଥ ସଂଯୋଜନା, ଅଳଙ୍କାର ଓ ପ୍ରତୀକ ସଂଯୋଜନା ଇତ୍ୟାଦି ବିଷୟରେ ଲେଖକଙ୍କ ବିଚାର-ବିମର୍ଶ ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ । ପୁରାଣରୁ ଅନେକ ପ୍ରସଙ୍ଗ ରୂଢ଼ିପ୍ରତ୍ୟୟ ରୂପେ ବ୍ୟବହୃତ ହୋଇ ଅର୍ଥର ଚମତ୍କାରିତା ସୃଷ୍ଟି କରିଛି । କଳିଆ ନାରଦ, ଭୀଷ୍ମ ପ୍ରତିଜ୍ଞା, ପ୍ରଥମ ପାଳିରେ ଭୀମ ହାରେ, ଭୀମ ବଳ କୋଇନ୍ତା ଜାଣେ, ଗୋବର ଗଣେଶ, ବ୍ରହ୍ମ ବିଳିବିଳେଇଲେ ବେଦ, ଭାରଦା ସାଜିବା ଆଦି ନାନା ଶବ୍ଦ ରୂଢ଼ି ପ୍ରତ୍ୟୟ ଭାବରେ ବ୍ୟବହୃତ । ସେହିପରି ଇତିହାସରୁ ଅନେକ ଶବ୍ଦ ରୂଢ଼ିପ୍ରତ୍ୟୟ ରୂପେ ପ୍ରଚଳିତ; ଯେମିତି କଟକ ଚିନ୍ତା ବାଇମୁଣ୍ଡିକି, କଳାପାହାଡ଼, କାଣିଆ କିଏ କପିଳା କିଏ, ଗାନ୍ଧୀ ବନିବା ଇତ୍ୟାଦି ରୂଢ଼ିପ୍ରତ୍ୟୟତାତ୍ମକ ଶବ୍ଦ । ଏହିପରି ମାଟିର ପିତୁଳା, ପାଣିରେ ଘର କରି କୁମ୍ଭୀର ସଙ୍ଗେ ବାଦ, ପାଣିରେ ଗାର, ପବନରେ ଘର, ଆକାଶ କଇଁଆ, ବଡ଼ଲୋକକୁ ଉତ୍ତର ନାହିଁ ସ୍ୱର୍ଗକୁ ନିଶୁଣି ନାହିଁ, ଆକାଶ ଫୁଲ, ହାଉଆ କଥା, ତୋଫାନିଆ ଲୋକ, ରାଗି ନିଆଁ ହେବା, ଅଗ୍ନିକୁ ସାକ୍ଷୀ ରଖି,ସୂର୍ଯ୍ୟକୁ ଦୀପ ଦେଖାଇବା, ସୂର୍ଯ୍ୟ ଉଠିବା, ଚନ୍ଦ୍ରମୁଖ, ତାରା ଗଣିବା, ଶନିଦଶା, ନକ୍ଷତ୍ର ବୃଷ୍ଟି, ପଥର ଦିଅଁ, ପଥର ହେବା, ପଥର ଚିପୁଡ଼ିବା, ସମୁଦ୍ରକୁ ଶଙ୍ଖେ ପାଣି, ଗଙ୍ଗା ସ୍ନାନ,

ଗଙ୍ଗା ପାରି କରିଦେବା, ମଝି ନଈରେ ନାଆ ବୁଡ଼ିବା, ଫଳନ୍ତା ଗଛ, ଅଧର୍ମ ବିର ବଢ଼େ ବହୁତ / ଗଲା ବେଳେ ଯାଏ ମୂଳ ସହିତ, ଦୁହାଁଳିଆ ଗାଈ, ଧର୍ମକୁ ଆଖିଠାର, ଧର୍ମ ଅର୍ଜିବା, ମୂଳଦୁଆ ପକାଇବା, ଚିତା କାଟିବା, ଆଖିରେ ଧୂଳି ପକାଇବା, ଦୁଧ ଉତୁରିଲେ ଚୁଲିରେ ପଶେ, ଆଖି ମାରିବା, କନ୍ଦାକନା ବୁଲାଇବା, କାନ ଧରିବା, କାନକୁହା, କୁଳେ ପ୍ରଦୀପ, ନାଁ ପକେଇବା, ନାଁ କରିବା, ନିଶ ମୋଡ଼ିବା, ନିଶ ଫୁଲେଇବା, ହାତକୁ ଦି'ହାତ ହେବା, ହାତ ଧରିବା, ଗୋଡ଼ ଧରିବା, ମୁହଁ ମୋଡ଼ିବା, ନାକ ଛିଞ୍ଚାଡ଼ିବା, ନିଆଁକୁ ଅଞ୍ଚିରେ ପୂରାଇବା ଆଦି ରାଶି ରାଶି ରୂଢ଼ିପ୍ରତ୍ୟୟ ଓଡ଼ିଆ ଭାଷାରେ ପ୍ରଚଳିତ ହୋଇ ଅର୍ଥ ବିସ୍ତାର କରିବାରେ ସାହାଯ୍ୟ କରିଅଛି ।

ବିନୋଦବାବୁ ଯେପରି ଭାବରେ 'ସାରଳା ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥର ଏକାଦଶ ଖଣ୍ଡରେ ରୂଢ଼ିପ୍ରତ୍ୟୟ ସଂପର୍କରେ ଆଲୋଚନା କରିଅଛନ୍ତି ଓ ନାନା ରୂଢ଼ି ସଂଗ୍ରହ କରି ଉପସ୍ଥାପନ କରିଅଛନ୍ତି ତାହା ତାଙ୍କର ପାଣ୍ଡିତ୍ୟର ପରିଚୟ ଦିଏ । ଜାତି ସଂପ୍ରୀତି, ସଂସ୍କୃତି-ପ୍ରୀତି ଓ ଭାଷା-ପ୍ରୀତି ନଥିଲେ ଜଣେ ଏପରି କାର୍ଯ୍ୟ କରିବା ପାଇଁ ସମର୍ଥ ହୋଇପାରିବ ନାହିଁ । ବିନୋଦବାବୁଙ୍କର ଓଡ଼ିଆ ଜାତି ପ୍ରୀତି, ସଂସ୍କୃତି-ପ୍ରୀତି ଓ ଭାଷା-ପ୍ରୀତି ଅତ୍ୟନ୍ତ ନିବିଡ଼ ହୋଇଥିବାରୁ ସେ ଯେଉଁ ନୂତନ କଳା-କୋଣାର୍କ ନିର୍ମାଣ କରି ଯାଉ ଅଛନ୍ତି ତାହା କାଳ ବକ୍ଷରେ ଅକ୍ଷତ ରହିବ ଓ ପରବର୍ତ୍ତୀ କାଳରେ ସେ ଦିଗରେ କୌଣସି ବିଜ୍ଞ ବ୍ୟକ୍ତି ହୁଏତ ଅଧିକ କିଛି କରିପାରିବେ । ଏହା ସତ୍ୟ ଯେ ରୂଢ଼ିପ୍ରତ୍ୟୟ ବିଚାର ବେଳେ ଲୋକୋକ୍ତି ଓ ଅନ୍ୟାନ୍ୟ ପ୍ରସଙ୍ଗ ଆସିଯାଇଛି । ତେବେ ଲକ୍ଷ୍ୟ କରିବାର କଥା, ସେଥିରେ ମଧ ଲେଖକ ଗୃହିତ୍ୱର ବାସ୍ନା ବାରିଛନ୍ତି ।

ବିନୋଦ ବାବୁ ସାରସ୍ୱତ ତପସ୍ୱୀ । ତପସ୍ୟା ତାଙ୍କର ଚାଲିଛି । ଶେଷ ହୋଇନାହିଁ ଯେତିକି ତପଃ ଲବ୍ଧ ଜ୍ଞାନ ଆହରଣ କରୁଛନ୍ତି ସେତିକି ସେତିକି ପ୍ରକାଶ କରିଦେଉଛନ୍ତି । ପ୍ରକାଶ କରୁଛନ୍ତି ତାଙ୍କର ଜ୍ଞାନର ଗାରିମା ଦେଖାଇବାକୁ ନୁହେଁ; ଲୁପ୍ତ ସାଂସ୍କୃତିକ ଐତିହ୍ୟ ଓ ଭାଷିକ ବିଭବକୁ ଲୋକଲୋଚନକୁ ଆଣିବା ପାଇଁ, ଲୋକ-କଲ୍ୟାଣପାଇଁ, ଜାତିର ଭାଷା ସଂପଦ ଯେ କେତେ ବିରାଟ ତାହାକୁ ଦର୍ଶାଇ ଦେବା ପାଇଁ । ସେ ପୁଣି ଉପନ୍ୟାସ ଓ ଗଳ୍ପ ରଚନା କରି ନିଜର ମାନବୀୟ ଚିନ୍ତାକୁ ଯେପରି ପ୍ରକଟ କରୁଛନ୍ତି, ତାହା ମଧ ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱର ଅନ୍ୟତମ ମହନୀୟ ଦିଗ । ବିନୋଦ ବାବୁ ବିଜ୍ଞ, ସୁହୃଦ୍, ସମ୍ବେଦନଶୀଳ ମଣିଷ ପରି ମଣିଷ । ଏହି ମଣିଷଟିର ବିଲୟ ନାହିଁ । ଇତହାସ ପୃଷ୍ଠାରେ ଚିର ଦେଦୀପ୍ୟମାନ ହୋଇ ରହିବେ । ଆଶା କରେ ଓ ମାଆ ଭଗବତୀ ସାରଳାଙ୍କୁ ପ୍ରାର୍ଥନା କରେ ବିନୋଦ ବାବୁ ତାଙ୍କ ସ୍ୱପ୍ନ ସବୁକୁ ଓଡ଼ିଆ ଜାତିକୁ ଦେଇଯାଆନ୍ତୁ - ସେ ଦୀର୍ଘଜୀବୀ ହୁଅନ୍ତୁ ।

**ବୈଷ୍ଣବ ଚରଣ ସାମଲ**

# ଗ୍ରନ୍ଥ ପ୍ରବେଶ

"'ମା' ମୋର ବାଣୀ ତୁମର ପ୍ରାର୍ଥନାରେ ପରିଣତ ହେଉ । ମୋର ସମସ୍ତ ଶାରୀରିକ କାର୍ଯ୍ୟରେ ତୁମର ମୁଦ୍ରା, ମୋର ଚାଲି ଚଳନରେ ତୁମର ଆହୁତି, ମୋର ଶୟନରେ ତୁମ ପ୍ରତି ପ୍ରଣାମ ପ୍ରତିଫଳିତ ହେଉ । ହେ ଦେବୀ, ମୋର ସମସ୍ତ ସୁଖ ଭୋଗରୁ ମୁଁ ଯେପରି ତୁମ ପାଖରେ ନିଜକୁ ଅର୍ପଣ କରିଦିଏ । ମୁଁ ଯାହା କରେ, ତାହା ଯେପରି ତୁମର ଆରାଧନାର ଅନ୍ୟନାମ ହୁଏ ।"

ଜଗତଗୁରୁ ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଏହି ଭକ୍ତିପୂତ ଆରାଧନାକୁ ସ୍ମରଣ କରି ସାରଳା ରତ୍ନ ଭଣ୍ଡାର ରସ ସାଗର, ଗ୍ରନ୍ଥର ଏକାଦଶ ଖଣ୍ଡ ପ୍ରାରମ୍ଭରେ ମା' ସାରଳାଙ୍କ ସଦା ଭର୍ତ୍ସଗୀକୃତ, ସଦା ଚରଣାଶ୍ରିତ ଦାସ, ଏହି ପୁଣ୍ୟ ଅନୁକ୍ଷଣରେ ମା'ଙ୍କ ପାଦପଦ୍ମରେ ଦଣ୍ଡବତ ହୋଇ ବ୍ୟାକୁଳତା ସହିତ କାନ୍ଦି କାନ୍ଦି ପ୍ରାର୍ଥନା କରୁଛି - ହେ ମା । ମୋତେ ଆଶୀର୍ବାଦ କର, ମୋତେ ଶକ୍ତି ଦିଅ, ସାମର୍ଥ୍ୟ ଦିଅ, ଯେପରି ଅଚିରଚରା ଗ୍ରନ୍ଥଟିକୁ ଅଚିରେ ସଙ୍କଳନ ସମ୍ପୂର୍ଣ୍ଣ କରି ପାରିବି । ନିଃସ୍ୱାର୍ଥ ଭାବରେ ଆନ୍ତରିକତା ଓ ନିଷ୍ଠାର ସହ ଲୋକମଙ୍ଗଳ ପାଇଁ, ଏହି ସାରସ୍ୱତ କର୍ମଟିକୁ ମା' ସାରଳାଙ୍କ ନିର୍ଦ୍ଦେଶ କ୍ରମେ କାହାରି ସ୍ୱାର୍ଥରେ ହାନୀ ନ ଘଟେଇ ବାଧା ନ ଦେଇ, ଆଜକୁ ଦୀର୍ଘ ୧୪ ବର୍ଷରୁ ଉର୍ଦ୍ଧ୍ୱ 'ହେଲା ଅବିଶ୍ରାନ୍ତ ଭାବରେ କରି ଚାଲିଛି । ମୋ ପରି ଜଣେ ମୂଢ଼ ଓ ଅଜ୍ଞାନ ହାତରେ ଏହି ସଙ୍କଳନ କାର୍ଯ୍ୟଟି ସମ୍ପାଦିତ କରେଇବା ପାଇଁ ଦେବୀ ପ୍ରସନ୍ନ ହୋଇଛନ୍ତି । ମୋର ବା ଏଥିରେ କି ଦୋଷ ରହିଲା ।

ଅବିଦ୍ୟା ଅରଣ୍ୟରେ ପଡ଼ିଥିବା କେତେଜଣ ସାହିତ୍ୟ ବିଶାରଦ ମୋର ସାରସ୍ୱତ ସାଧନାକୁ ସହ୍ୟ କରି ନ ପାରି, ମୋତେ ଛିଗୁଲାଉଛନ୍ତି । ଫୋନ ଉପରେ ଗାଳି ଗୁଲଜ କରିବାକୁ ମଧ ପଛାଉ ନାହାନ୍ତି । ଅହରହ ନିନ୍ଦା କରିବାରେ ବ୍ୟସ୍ତ । କଥିତ ଅଛି, କାହାରି ପ୍ରଶଂସା ଅବିଦ୍ୟା ଅରଣ୍ୟରେ ଜୀବନ୍ତ ମଣିଷ ସହିପାରେ ନାହିଁ । ପରନ୍ତୁ ଅନ୍ୟର ଅନିଷ୍ଟ ଦେଖିଲେ ଆନନ୍ଦିତ ହୁଏ । ଏହା ତାଙ୍କର ସ୍ୱଜାତ, ସ୍ୱଭାବଗତ ଆଚରଣ ପଦ୍ଧତିର ବୃତ୍ତି ଓ ପ୍ରବୃତ୍ତି । ଯେଉଁ ଗାତ ପର ପାଇଁ ସେମାନେ ଖୋଳନ୍ତି, ନିଜେ ସେ ଗାତରେ ପଡ଼ନ୍ତି । ଏହା ପରମ ପୁରୁଷଙ୍କ ନୀତିଗତ ଶିକ୍ଷା । ଏହିଭଳି ଅବିଦ୍ୟା ଅରଣ୍ୟରେ ପଡ଼ିଥିବା ସଜ୍ଞାହୀନ ମଣିଷଙ୍କୁ କରୁଣା କରିବାକୁ ପରମ କାରୁଣିକ ଶ୍ରୀ ଜଗନ୍ନାଥଙ୍କୁ କର ଯୋଡ଼ି ପ୍ରାର୍ଥନା କରୁଛି । ପ୍ରଭୋ ! ଏମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ । ଅନ୍ଧାରରୁ ଆଲୋକକୁ ନିଅନ୍ତୁ । ମନର ଆଖି ଖୋଲି ଦିଅନ୍ତୁ । ଓଡ଼ିଆ ଜାତିର ହୃତ ଗୌରବ ଫେରାଇ ଆଣିବା ପାଇଁ ସମସ୍ତେ ଯେପରି ଏକାଠି ହୋଇ ଆଗେଇ ଚାଲନ୍ତୁ । ଓଡ଼ିଶା ମାତାଙ୍କର ଗୌରବ ଫେରି ଆସୁ । ଆମ ଜୀବଦ୍ଦଶାରେ ନ ହେଲେ ମଧ ଆମର ପରବର୍ତ୍ତୀ ବଂଶଧରମାନେ ସମୃଦ୍ଧ ଓଡ଼ିଶାର ବାସିନ୍ଦା ବୋଲି ଗର୍ବ ଅନୁଭବ କରନ୍ତୁ ।

ପ୍ରତ୍ୟେକଙ୍କର ସାଫଲ୍ୟ ଓ ନିଷ୍ଫଳତାର ପ୍ରଧାନ କାରଣ ହେଲା - ଯେଉଁ ଲୋକମାନଙ୍କ

ସହିତ ଆମକୁ ଦୈନନ୍ଦିନ ମୁକାବିଲା ବା ସମ୍ମୁଖୀନ ହେବାକୁ ପଡିଥାଏ, ସେମାନଙ୍କ ଉପରେ ଆମର କୌଣସି କର୍ତ୍ତୃତ୍ୱ ନଥାଏ । ବସ୍ତୁତଃ ଆମେ ଦୁଇ ପ୍ରକାର ଲୋକଙ୍କ ସମ୍ପର୍କରେ ଆସିଥାଉଁ । (୧) ହିତକର ବ୍ୟକ୍ତି (୨) ଅହିତକର ବ୍ୟକ୍ତି , ଯେଉଁମାନେ ଆମର ଅହରହ ଗୋଡ ଟାଣିବାରେ ବ୍ୟସ୍ତ ।

ଏହି ଅହିତକର ବ୍ୟକ୍ତିମାନେ ପ୍ରବଞ୍ଚକ ବୋଲି ସାଧାରଣତଃ ନାମିତ । ଏହି ପ୍ରବଞ୍ଚକମାନେ ଆମ ଜୀବନରେ ବ୍ୟାପକ ଧ୍ୱଂସ ସାଧନ କରିଥାନ୍ତି । ଯଦି ଆମେ ସଫଳତାର ସହିତ ଏମାନଙ୍କର ସମ୍ମୁଖୀନ ବା ମୁକାବିଲା କରି ପାରିବୁ, ତାହା ହେଲେ ଆମ ଜୀବନ ନିଶ୍ଚିତ ଭାବେ ଆନନ୍ଦ ଓ ସୁଖମୟ ହୋଇ ପାରିବ । ଅପର ପକ୍ଷରେ ଯଦି ଏମାନଙ୍କ ହାତରେ ଆମ ଜୀବନର ଦାୟିତ୍ୱ ପ୍ରଦାନ କରୁ, ତାହେଲେ ଆମ ଜୀବନ ମାନସିକ ଚାପଯୁକ୍ତ ହୋଇ ଦୁର୍ବିସହ ହୋଇ ପଡିବ । ଏହି ପ୍ରବଞ୍ଚକମାନଙ୍କ ମଧ୍ୟରେ ଅବସ୍ଥାନ କରି ଉନ୍ନତ ହେବାକୁ ପଡିବ । ସୌଭାଗ୍ୟଶାଳୀ ହେବାକୁ ପଡିବ ଏବଂ ଆନନ୍ଦ ଓ ସୁଖର ଜୀବନ ନିର୍ବାହ କରିବାକୁ ହେବ ।

ଏହି ପ୍ରବଞ୍ଚକମାନଙ୍କ ଘେର ମଧ୍ୟରେ ରହି ମୋ ଭଳି ଜଣେ କ୍ଷୁଦ୍ରାତିକ୍ଷୁଦ୍ର ପକ୍ଷରେ ଆନନ୍ଦ ଓ ସୁଖର ଜୀବନ ତ ଦୂରର କଥା, ନିନ୍ଦା, ଅପମାନ, ଗାଳି ଫଗଜତ ଇତ୍ୟାଦି ଶୁଣି ଶୁଣି ଅହରହ ଗୋଡଟଣାଟଣି ହେଲା ଫଳରେ ମୋର ମାନସିକ ଅବସ୍ଥା ଅସ୍ଥିର ହେଉଛି । ବେଳେ ବେଳେ ଭାରସାମ୍ୟ ମଧ୍ୟ ଦୋହଲି ଯାଉଛି । ତଥାପି ସଂସାରରେ ବାସ କଲେ, ବଞ୍ଚିରହି ଉନ୍ନତ ହେବାକୁ ଓ ସୌଭାଗ୍ୟଶାଳୀ ହେବାକୁ ପଡିବ । ତତ୍ ସହିତ ଆନନ୍ଦ ଓ ସୁଖରେ ଜୀବନ ନିର୍ବାହ କରିବାକୁ ହେବ ।

ଆତ୍ମମାନଙ୍କର କୁଶଳତା, ସମୃଦ୍ଧି ଓ ସୁଖ ଆମ୍ଭର ଭାବୋଦ୍ଦୀପକ ଜ୍ଞାନ । ( Emotional Intelligence) ସହିତ ପ୍ରତ୍ୟକ୍ଷ ଭାବରେ ଜଡିତ । ଯୋଗ, ଧ୍ୟାନ, ପ୍ରାର୍ଥନା, ସତ୍ସଙ୍ଗ, ଦାନ ଓ ସେବା ପ୍ରଭୃତି ଭାବୋଦ୍ଦୀପକ ଜ୍ଞାନର ଉନ୍ନତି ସାଧନ କରିବାରେ ସାହାଯ୍ୟ କରିଥାଏ । କେବଳ ଐଶ୍ୱର ଆର୍ଶିବାଦ ହିଁ ଏହାକୁ ଫଳପ୍ରଦ କରାଇଥାଏ । ଏହି ମର୍ମରେ ଭାଗବତର ପଦଟି ହେଲା, " କରି କରାଉ ଥାଏ ମୁହିଁ, ମୋ ବିନୁ ଆନ ଗତି ନାହିଁ " ସ୍ମରଣ କରି ବିଶ୍ୱନିୟନ୍ତାଙ୍କୁ ପ୍ରଣାମ କରୁଛି ।

ମୋ ଜାଣିବାରେ ପ୍ରାୟ ଚାରି ଶତାବ୍ଦୀ ପୂର୍ବରୁ ରକ୍ଷଣଶୀଳ ବିଧି ବ୍ୟବସ୍ଥା ସମାଜରେ ପ୍ରଚଳନ ଥିଲା । ଅବିଦ୍ୟା-ଅରଣ୍ୟରେ ସେତେବେଳେ ମଧ୍ୟ ଜୀବନ୍ତ ମଣିଷମାନେ ଥିଲେ । ସେମାନଙ୍କର ସ୍ୱଜାତ - ସ୍ୱଭାବ ପରଶ୍ରୀକାତର ପ୍ରକୃତି ଆଜି ଯେପରି ଅଛି, ସେ ଦିନ ମଧ୍ୟ ସେହି ପରି ଥିଲା ।

ବର୍ଷ ବର୍ଷ ଧରି ଗଦା ଗଦା ତାଳପତ୍ର ଉପରେ ଲେଖନୀ ମୁନରେ, ଦୀପ ଆଲୁଅରେ ଶୂଦ୍ରମୁନି ସାରଳା ଦାସ ପ୍ରାକୃତ ଭାଷାରେ ଓଡିଆ ମହାଭାରତ ମହାକାବ୍ୟ ରଚନା କରିଥିଲେ । ଫଳରେ ଓଡିଶାର ସମଗ୍ର ସଂସ୍କୃତ ପଣ୍ଡିତଙ୍କର ଶରବ୍ୟ ହୋଇଥିଲେ । କେବଳ ସେତିକି ନୁହେଁ, ମହନ୍ତ ମହାରାଜ, ରାଜ ପୁରୋହିତ, ରାଜଗୁରୁମାନଙ୍କର ରୋଷ ଓ ଭର୍ତ୍ସନାର ଶିକାର ହୋଇଥିଲେ । ଏପରିକି ମହାକବି ସାରଳା ଦାସଙ୍କୁ ଇଷ୍ଟଦେବୀ ସାରଳା ଠାକୁରାଣୀଙ୍କ ଦର୍ଶନ କରିବା ଉପରେ କଟକଣା ଜାରି ହୋଇଥିଲା ।

ଜନ୍ମାନ୍ଧ କନ୍ଧ ସନ୍ଥ କବି ଭୀମଭୋଇଙ୍କୁ କେବଳ ଯେ ପଣ୍ଡିତମାନେ ଗାଳି ଦେଇଥିଲେ ତାହା ନୁହେଁ, ସନ୍ଥ କବିଙ୍କର ବ୍ୟକ୍ତିଗତ ଚରିତ୍ର ସଂହାର କରିବାକୁ ମଧ ପଛାଇ ନଥିଲେ । ଏଥିରେ କାତର ହୋଇ କବି ବିଶ୍ୱ ବିହାରୀଙ୍କୁ କରଯୋଡି ପ୍ରତିକାର କରିବା ପାଇଁ ପ୍ରାର୍ଥନା କରିଛନ୍ତି । (ଏ ସମ୍ପର୍କରେ "ସାରଳା ରତ୍ନ ଭଣ୍ଡାର ରସ ସାଗର" ଗ୍ରନ୍ଥର ୧୦ମ ଖଣ୍ଡ "ଗ୍ରନ୍ଥ ପ୍ରବେଶ" ଶୀର୍ଷକ ଦ୍ରଷ୍ଟବ୍ୟ)

ଖ୍ୟାତନାମା ଓକିଲ ତଥା ଜଗସମ୍ରାଟ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ତତ୍କାଳୀନ କେତେକ ପଣ୍ଡିତ ଉପହାସିତ କରି "ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ"କୁ, ତାଚ୍ଛଲ୍ୟ କରି "ପାଳକୋଷ" ବୋଲି ଅପ୍ୟାୟିତ କରିବାକୁ ଛାଡି ନଥିଲେ । (ଏ ସମ୍ପର୍କରେ "ସାରଳା ରତ୍ନ ଭଣ୍ଡାର ରସ ସାଗର" ଗ୍ରନ୍ଥର ୧୦ମ ଖଣ୍ଡ "ଗ୍ରନ୍ଥ ପ୍ରବେଶ" ଶୀର୍ଷକ ଦ୍ରଷ୍ଟବ୍ୟ) ।

ଏହିଭଳି ଯୋଗଜନ୍ମା ମହାନ ସାହିତ୍ୟ ସାଧକମାନଙ୍କୁ ଦୋଷାରୋପ କରାଗଲା କାହିଁକି -

ସେ କାଳରେ -

(୧) ଶୁଦ୍ରମୁନି ମହାକବି ସାରଳା ଦାସ କୃଷକ ହୋଇ ପ୍ରାକୃତ ଓଡ଼ିଆ ଭାଷାରେ ମହାଭାରତ ରଚନା କରିବା ତାଙ୍କ ଅଧିକାର ପରିସର ବାହାରେ ଥିଲା ।

(୨) ଜନ୍ମାନ୍ଧ ସନ୍ଥକବି ଭୀମ ଭୋଇ ଜାତିରେ ଅଛୁଆଁ କନ୍ଧ ହୋଇ କାବ୍ୟ କବିତା ରଚନା କରି ସମସ୍ତଙ୍କ ହୃଦୟକୁ ସ୍ପର୍ଶ କରିପାରିଥିଲେ ବୋଲି ।

ଏ କାଳରେ -

ପ୍ରଖ୍ୟାତ ଓକିଲ ଗୋପାଳ ଚନ୍ଦ୍ର ପ୍ରହରାଜ ଓକିଲାତି ବୃତ୍ତିରେ ନିୟୋଜିତ ଥାଇ " ପୂର୍ଣ୍ଣଚନ୍ଦ୍ର ଓଡିଆ ଭାଷାକୋଷ"ପ୍ରଣୟନ କରି ମହାନ ହେଲେ ।

ସେ କାଳର ହେଉ ବା ଏକାଳର ହେଉ, ଯେଉଁମାନେ ଏଭଳି ପ୍ରାତଃ ସ୍ମରଣୀୟ ମହାନ୍ ବ୍ୟକ୍ତିମାନଙ୍କୁ ଏତାଦୃଶ କଟୁ ମନ୍ତବ୍ୟ ଦେଇ ପାରନ୍ତି, ମୋ କ୍ଷୁଦ୍ର ବିଚାରରେ ଏମାନଙ୍କୁ ଜଣେ ଜଣେ ଅବିଦ୍ୟା-ଅରଣ୍ୟର ଜୀବନ୍ତ ମଣିଷ ବୋଲି କୁହା ନଯିବ କାହିଁକି?

ଅଳ୍ପଦିନର କଥା । ମାନ୍ୟବର ବିଚାରପତି ଗୋପାଳ ବଲ୍ଲଭ ପଟ୍ଟନାୟକ ସୁପ୍ରିମକୋର୍ଟର ପ୍ରଧାନ ବିଚାରପତି ଆସନ ଅଳଙ୍କୃତ କରିବାର ମାତ୍ର କେତୋଟି ମାସ ମଧ୍ୟରେ ଅବସର ଗ୍ରହଣ କରିଥିଲେ । ଏହାର କାରଣ ହେଲା, ଓଡିଆଙ୍କର ବ୍ୟକ୍ତିଗତ ଈର୍ଷା ଓ ଦ୍ୱେଷ ଫଳରେ ସେ ଗୋଡ଼ ଟଣାଟଣିର ଶିକାର ହୋଇଥିଲେ ବୋଲି କୁହାଯାଏ । ତା ନହେଲେ ଅନ୍ତତଃ ପକ୍ଷେ ଦେଢ଼ ଦୁଇବର୍ଷ ଅଧିକ ସେ ପ୍ରଧାନ ବିଚାରପତି ପଦରେ ଅଧିଷ୍ଠିତ ହୋଇ ଓଡିଆ ଜାତିର ଟେକ ରଖି ପାରିଥାନ୍ତେ ।

ଆଉ ଜଣେ ଯୋଗଜନ୍ମା ଓଡିଆ ପୁଅ ହେଲେ ଆଇ.ସି.ଏସ୍ ଅନ୍ନଦା ଶଙ୍କର ରାୟ । ତାଙ୍କର ସାହିତ୍ୟ ପ୍ରୀତି ଓ ଅନୁରାଗ ଏଭଳି ଥିଲା ଯେ ସେ ମାତ୍ର ୪୭ ବର୍ଷ ବୟସରେ ଚାକିରିକୁ ଇସ୍ତଫା ଦେଇଥିଲେ । କୌଣସି ପେଶା ବରଣ ନ କରି, ଚବିଶ ଘଣ୍ଟିଆ ସାହିତ୍ୟିକ ହୋଇ ରହିବାର ସିଦ୍ଧାନ୍ତ କରି ସାରସ୍ୱତ ସାଧନାରେ ବ୍ରତୀ ହେଲେ । ଏହି ମହିମାମୟ ବ୍ୟକ୍ତି ଜଣକ କଟକ ରେଭେନ୍ସା କଲେଜରେ ୧୭ ବର୍ଷ ବୟସରେ ପଢ଼ା ଆରମ୍ଭ କରିଥିଲେ । କଲେଜରେ ପଢ଼ିଲା ବେଳେ ତାଙ୍କର

ଲେଖା ନିୟମିତ 'ଉତ୍କଳ ସାହିତ୍ୟ' ଓ 'ସହକାର'ରେ ପ୍ରକାଶ ପାଉଥିଲା । ସେହି ସମୟରେ ଅନ୍ନଦା ଶଙ୍କର ରାୟ ତାଙ୍କର ସହପାଠୀ ବୈକୁଣ୍ଠ ନାଥ ପଟ୍ଟନାୟକ, କାଳନ୍ଦୀ ଚରଣ ପାଣିଗ୍ରାହୀ, ଶରତ ଚନ୍ଦ୍ର ମୁଖାର୍ଜୀ, ହରିହର ମହାପାତ୍ରଙ୍କୁ ନେଇ 'ସବୁଜ ଦଳ' ଗଠନ କରି ଓଡିଆ ସାହିତ୍ୟରେ 'ସବୁଜଯୁଗ' ଉଦ୍‌ଘାଟନ କରିଥିଲେ । ଏହି ପାଞ୍ଚଜଣ ତତ୍‌କାଳୀନ ଓଡିଶାର ୩ୟ 'ପଞ୍ଚସଖା' ନାମରେ ନାମିତ ହୋଇଥିଲେ । (ଓଡିଶାର ୧ମ 'ପଞ୍ଚସଖା' ହେଲେ - ପାଞ୍ଚଜଣ ମହାପୁରୁଷ ଯଥା - ଅତିବଡ଼ି ଜଗନ୍ନାଥ ଦାସ, ମଉ ବଳରାମ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଦାସ ଓ ଶିଶୁ ଅନନ୍ତ ଦାସ । ୨ୟ 'ପଞ୍ଚସଖା' - ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଂଠ ଦାସ, ଆଚାର୍ଯ୍ୟ ହରିହର ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ପଣ୍ଡିତ ବାସୁଦେବ ହୋତା ।)

ଓଡ଼ିଶାର ମାଟିରେ ଓଡ଼ିଆ ସାହିତ୍ୟ ଜଗତରେ ପ୍ରତିଭା ପୁରୁଷ ଅନ୍ନଦା ଶଙ୍କର ରାୟଙ୍କର ପ୍ରତିପତ୍ତି ଓ ଖ୍ୟାତି ଯେତେବେଳେ ମୁଣ୍ଡେକି ଆସୁଥିଲା, ଠିକ୍ ସେତିକିବେଳେ ତାଙ୍କର ଏହି ପ୍ରତିଷ୍ଠାରେ ତାଙ୍କ ନିଜ ଗୋଷ୍ଠୀର ତଥା ସବୁଜ ସଖାମାନେ ଈର୍ଷାନ୍ୱିତ ହେବାକୁ ଲାଗିଲେ । ଅନ୍ନଦା ଶଙ୍କର ସରଳାଦେବୀଙ୍କୁ ଏକାନ୍ତ ଭାବରେ ଭଲ ପାଉଥିଲେ । ତାଙ୍କ ମନ ନେବା ପାଇଁ ସେ ଓଡ଼ିଆ କବିତା ଲେଖୁଥିଲେ ଏବଂ ତାହା 'ଉତ୍କଳ ସାହିତ୍ୟ' ପତ୍ରିକାର ପ୍ରଥମ ପୃଷ୍ଠାରେ ପ୍ରକାଶିତ ହେଉଥିଲା । ଦୀର୍ଘ ତିନିବର୍ଷ ଧରି ସେ ସରଳା ଦେବୀଙ୍କୁ ପ୍ରତିଦିନ ଓଡ଼ିଆ ଓ ବଙ୍ଗଳାରେ ଚିଠି ଦେଇଛନ୍ତି । ଏଇମିତି ଚିଠି ଲେଖି ଲେଖି ତାଙ୍କର ହାତ ପକ୍‌କା ହୋଇଛି ଏବଂ ବଙ୍ଗଳା ସାହିତ୍ୟରେ ତାଙ୍କୁ ପ୍ରତିଷ୍ଠିତ କରିଥିବା 'ପଥେ ପ୍ରବାସେ' ବହିମୂଳରେ ସରଳା ଦେବୀଙ୍କର ଲିଖିତ ଚିଠିପତ୍ର ଥିଲା ବୋଲି ସେ ସ୍ୱୀକାର କରିଛନ୍ତି । ବହିଟିକୁ ସେ ସରଳା ଦେବୀଙ୍କ ନାମରେ ଉତ୍ସର୍ଗ କରିଥିଲେ । ସରଳା ଦେବୀଙ୍କ ସହିତ ମଧୁର ସମ୍ପର୍କ ସମ୍ବନ୍ଧରେ ସେ କହିଥିଲେ - 'ତା' ମଧ୍ୟରେ ସେ ଜଣେ 'ୟାଂଗି ଇୟଙ୍ଗ୍ ଓମେନ୍' ଦେଖିଥିଲେ । ସେତେବେଳେ ଓଡ଼ିଶାରେ 'ଇୟଙ୍ଗ୍ ୟାଂରି ଓମେନ୍' ଗୋଟିଏ ଆବିଷ୍କାର ।

ସରଳାଦେବୀଙ୍କ ସ୍ୱାମୀ ଭାଗୀରଥି ମହାପାତ୍ର କଂଗ୍ରେସ୍ ନେତା ଓ ଜମିଦାର ଥିଲେ । କବି ବୈକୁଣ୍ଠନାଥ ପଟ୍ଟନାୟକ ତାଙ୍କର ନିକଟ ସମ୍ପର୍କୀୟ ବଂଧୁ । ଦିନେ ସରଳାଦେବୀଙ୍କର ଡାକରାରେ ଅନ୍ନଦାଶଂକର ତାଙ୍କ ଘରକୁ ଯାଇଥିଲେ । ତାଙ୍କର ସ୍ୱାମୀଙ୍କୁ ଦେଖିଲେ । ସୁଭଦ୍ର ପୁରୁଷ । ବୟସରେ ସରଳା ଦେବୀଙ୍କ ଠାରୁ ଅନେକ ବଡ଼ । ସରଳା ଦେବୀ ଅନ୍ନଦାଶଙ୍କରଙ୍କୁ ନିଭୃତକୁ ଡାକି ନେଇ ବିଷାଦଭରା ମୁହଁରେ (ବୋଧହୁଏ ଟିକିଏ ଆଗରୁ କାନ୍ଦୁଥିଲେ) ଚୁପ୍‌ଚୁପ୍ କହିଲେ - 'ମୁଁ ମା' ହେବାକୁ ଯାଉଛି । ତା'ପରେ ଅଦ୍ଭୁତ ସ୍ୱରରେ କହିଥିଲେ - 'ସେ ମୋତେ ଧର୍ଷଣ କରିଛନ୍ତି । ମୁଁ ମାନିନେବି ନାହିଁ । ମୁଁ ଏବରଶନ୍ କରିବାକୁ ଚାହେଁ । ସେ ରାଜି ହେଉନାହାନ୍ତି । ତୁମେ କ'ଣ କହୁଛ? କରିବି ନା କରିବି ନାହିଁ? ଅନ୍ନଦା ଶଙ୍କର ଦୃଢ଼ତାର ସହିତ 'ନା' ବୋଲି କହିଥିଲେ । ସରଳା ଦେବୀ କହିଥିଲେ - 'ତୁମକଥାରେ ମୁଁ ଏ ସଂକଳ୍ପ ତ୍ୟାଗ କରୁଛି ।'

ଅନ୍ନଦାଶଙ୍କରଙ୍କର ପଲ୍ଲବିତ ଯୌବନରେ ଏହା ଏକ ମସ୍ତବଡ଼ ଧକ୍‌କା । ଏଥିସହିତ ବଂଧୁମାନଙ୍କର ଅନ୍ତର୍ନିହିତ ବିଦ୍ୱେଷ ପାଇଁ ୧୯୨୬ ମସିହାରୁ ଓଡ଼ିଆରୁ ତାଙ୍କର ଆଗ୍ରହ ହଟିଯାଇଥିଲା । ଓଡ଼ିଆ ରଚନାରେ ଏହିଠୁ ପୂର୍ଣ୍ଣଚ୍ଛେଦ ପଡ଼ିଥିଲା । ତା' ପରବର୍ତ୍ତୀ କାଳରେ ଆଉ

ସ୍ୱତଃସ୍ଫୂର୍ତ୍ତ ଭାବରେ ଓଡ଼ିଆରେ ଲେଖିପାରିଲେ ନାହିଁ। ବହୁବର୍ଷ ପରେ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲାବେଳେ ଥରେ ଶାନ୍ତିନିକେତନକୁ ଆସିଥିଲେ। ପୁଣି ଥରେ ଓଡ଼ିଆରେ ଲେଖିବା ପାଇଁ ସେ ଅନ୍ନଦାଶଙ୍କରଙ୍କୁ ଅନୁରୋଧ କରିଥିଲେ। ବାରମ୍ବାର କହିଥିଲେ। ଅନ୍ନଦାଶଙ୍କର ଉତ୍ତର ଦେଇଥିଲେ- ସେ ପ୍ରେରଣା ଆଉ ନାହିଁ। ସେବର ବନ୍ଧୁ ଆଉ ନାହାନ୍ତି। ସେଇ ଗୋଷ୍ଠୀ ଆଉ ନାହିଁ। ସେବର ପାଠକ ମଧ୍ୟ ନାହାଁନ୍ତି।

ସରଳା ଦେବୀଙ୍କର ଦୂର ସମ୍ପର୍କର ଆତ୍ମୀୟ ନବକୃଷ୍ଣ ଚୌଧୁରୀଙ୍କ ସହିତ ଥରେ ଅନ୍ନଦାଶଙ୍କରଙ୍କର ସାକ୍ଷାତ୍ ହେଲା। ସେ କହିଥିଲେ ସବୁ ଘଟଣା ସେ ଶୁଣିଛନ୍ତି। ସରଳାର ମୁକ୍ତି କେବଳ ସେ ଚାହାଁନ୍ତି। ଅର୍ଥାତ୍ ତାର ବନ୍ଦିନୀ ଦଶାରୁ ମୁକ୍ତି। ଜମିଦାର ଘର ଗୋଟାଏ ସୁନାର ପଞ୍ଜୁରୀ। ସୁଖସ୍ୱାଚ୍ଛନ୍ଦ୍ୟର ଅଭାବ ନାହିଁ କିନ୍ତୁ ଜଣେ 'ରାଗୀ ଯୁବତୀ' ଯାହା ଚାହେଁ, ତାହା ସୁଖସ୍ୱାଚ୍ଛନ୍ଦ୍ୟ ନୁହେଁ, ବନ୍ଧନମୁକ୍ତି। ତେର-ଚୌଦ ବର୍ଷରେ ତାର ଅମତରେ ବାହା କରେଇ ଦିଆ ଯାଇଥିଲା। ସହବାସକୁ ମଧ ତାର ପସନ୍ଦ ନଥିଲା। ମା' ହେବାକୁ ତା'ର ଅନିଚ୍ଛା ଥିଲା। ମା' ହେଲା ଫଳରେ ତାକୁ ଆହୁରି ଅନେକ ଦିନ ପର୍ଯ୍ୟନ୍ତ ବନ୍ଦିନୀ ହୋଇ ରହିବାକୁ ପଡ଼ିବ। 'ବନ୍ଦିନୀ ଦଶାରୁ ମୁକ୍ତି' - ନବ ଚୌଧୁରୀଙ୍କ ଏଇ ପ୍ରଶ୍ନର ଉତ୍ତର ଅନ୍ନଦାଶଙ୍କରଙ୍କୁ ଦୋ'ଘାଇରେ ପକାଇଥିଲା।

ପୂର୍ବରୁ ନବ ଚୌଧୁରୀ ସରଳାଦେବୀଙ୍କୁ ଆଶ୍ୱାସନା ଦେଇଥିଲେ, ଯଦି ସେ ବନ୍ଧନମୁକ୍ତ ହୁଅନ୍ତି, ତାହାହେଲେ କୌଣସି ଆଶ୍ରମରେ ତାଙ୍କର ରହିବାର ବ୍ୟବସ୍ଥା କରିଦେବେ। ସେଇ ପରିସ୍ଥିତିରେ ସେ କିଛି ରାସ୍ତା ଖୋଜି ପାଉନାହାଁନ୍ତି। ଫଳରେ ଅନ୍ନଦାଶଙ୍କରଙ୍କୁ କିଛି ଗୋଟାଏ କିନାରା କରିଦେବାକୁ ସାହାଯ୍ୟ ଚାହିଁଥିଲେ। ଉଭୟଙ୍କ ମଧରେ ଏହିପରି ସିଦ୍ଧାନ୍ତ ହୋଇଥିଲା - ଅନ୍ନଦାଶଙ୍କର ଓ ନବ ଚୌଧୁରୀ ଦୁହେଁ ଚାକିରୀ ଖୋଜିବା ପାଇଁ ବାହାରିବେ। ଦୁହେଁ ଗୋଟିଏ ଜାଗାରେ ଚାକିରୀ କରିବେ। ଦୁଇଜଣ ଗୋଟିଏ ବସା ବାନ୍ଧିବେ। ତା'ପରେ ସରଳା ଦେବୀ ଦିନେ ଆମର ସାଥୀ ହେବେ। ପୁଅ ଜନ୍ମ ହେଲେ ଆମ ପାଖରେ ରହିବ। ସରଳା ଦେବୀଙ୍କୁ ଗୋଟିଏ ସ୍ୱାଧୀନ ଜୀବିକା ପାଇଁ ପ୍ରସ୍ତୁତ କରି ଦିଆଯିବ। ସେ ଭଲ ଲେଖିପାରନ୍ତି। ଲେଖିକା ହିସାବରେ କିଛି ରୋଜଗାର କରି ପାରିବେ। ସରଳାଦେବୀଙ୍କର ଚିଠିରୁ ବୁଝାପଡ଼େ ସେ ଭଲ ବଙ୍ଗଳା ଲେଖିପାରିବେ। ଚେଷ୍ଟା କଲେ ବଙ୍ଗଳାରେ ମଧ ଉପନ୍ୟାସ ଲେଖିପାରିବେ। ଆଉ ଅନ୍ନଦାଶଙ୍କର ଗ୍ରାଜୁଏଟ୍ ହେବା ସଂଗେ ସଂଗେ ସାମ୍ବାଦିକ ହେବେ। ସମ୍ପାଦକ, ପ୍ରକାଶକ ମହଲରେ ତାଙ୍କର ମିଳାମିଶା ରହିଅଛି। ନବ ଚୌଧୁରୀଙ୍କୁ ମଧ କିଛି ଉପାର୍ଜନ କରିବାକୁ ହେବ। ଏହା ଏକ ଆଜୁଅ ଅନ୍ଧାର ଘେରା ସ୍ୱପ୍ନ।

(ପ୍ରଖ୍ୟାତ କବି ଅନ୍ନଦାଶଙ୍କର ରାୟ, ଆଇ.ସି.ଏସ୍.ଙ୍କ ଲିଖିତ 'ପ୍ରଥମ ଯୌବନ' ପ୍ରବନ୍ଧ ଶାରଦୀୟ 'ଆନନ୍ଦ ବଜାର ପତ୍ରିକା' ବଙ୍ଗଳା ୧୪୦୨ ସାଲରେ ପ୍ରକାଶିତ କଥନରୁ ସଂଗୃହୀତ।)

ଏଇ ହେଲା ଆମ ଓଡ଼ିଆଙ୍କର ରଗଡ଼ଝଗଡ଼।

ଜ୍ଞାନଗୁରୁ, ପ୍ରଜ୍ଞାପୁରୁଷ, ସମାଲୋଚକ, ପ୍ରଫେସର ଡକ୍ଟର ବୈଷ୍ଣବ ଚରଣ ସାମଲ ମୋର ଅନୁରୋଧ ରକ୍ଷା କରି, ଅତି ଆଦର ସହକାରେ 'ଶୁଆ କଥା ଶୁଆ କହିବ' ଶୀର୍ଷକରେ

ଏହି ଗ୍ରନ୍ଥର ଦୀର୍ଘ ଆଭିମୁଖ୍ୟ ଲେଖି ମୋତେ ଅନୁଗୃହୀତ କରିଛନ୍ତି । ତାଙ୍କର ଏହି ଅକୁଣ୍ଠ ଶ୍ରଦ୍ଧା, ଅନୁରାଗ ଓ ଦିଗ୍‌ଦର୍ଶନ ମୋର ସାଧନାପଥରେ ସଦା ସହାୟକ ହୋଇ ରହିବ । ତାଙ୍କ ଭଳି ଜଣେ ଗୁଣୀ, ଗୁଣଗ୍ରାହୀ, ସହୃଦୟ ବ୍ୟକ୍ତିଙ୍କ ସାନ୍ନିଧ ମୋତେ ଲୋକସାହିତ୍ୟ ସଂଗ୍ରହ ଓ ଗବେଷଣା କ୍ଷେତ୍ରରେ ଆହୁରି ଅନୁପ୍ରାଣିତ କରିବ । ଏଥିପାଇଁ ମୁଁ ତାଙ୍କ ପାଖରେ ବାରବାର କୃତଜ୍ଞତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କଠାରେ ଚିରଋଣୀ ରହିଲି । ଗ୍ରନ୍ଥଟିର ପ୍ରଣୟନରେ ଓଡିଶାର ସାମ୍ବାଦିକ ଗୌରବ ପୁରସ୍କାର ପ୍ରାପ୍ତ ଶ୍ରୀ ମହେଶ୍ୱର ମୁଳିଆ ଏବଂ ପୂର୍ବତନ ମୁଖ୍ୟ ଆୟକର କମିଶନର ଶ୍ରୀ ଗୋପାଳ ପ୍ରସାଦ ନନ୍ଦ ବହୁ ତଥ୍ୟ ସରବରାହ କରି ଅପରିଶୋଧନୀୟ ଋଣରେ ମୋତେ ଆବଦ୍ଧ କରିଛନ୍ତି । ମୁଁ ଉଭୟଙ୍କୁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ଏହି ଗ୍ରନ୍ଥର ସହ-ସଂପାଦକ, ସାରସ୍ୱତ ସାଧକ, ମୋର ବାଲ୍ୟବନ୍ଧୁ ଶ୍ରୀ ଜାନକୀଲାଲ୍ ଆଦିତ୍ୟ ପରିଣତ ବୟସରେ ସ୍ତ୍ରୀ ଓ ପିଲାମାନଙ୍କଠାରୁ ଦୂରରେ ରହି ମୋ ପାଇଁ ଯେଉଁ ଅକ୍ଳାନ୍ତ ପରିଶ୍ରମ ଓ ସାହଚର୍ଯ୍ୟ ପ୍ରଦାନ କରିଛନ୍ତି ତାହାର ପଟାନ୍ତର ନାହିଁ । ମା' ସାରଳା ତାଙ୍କୁ ଦୀର୍ଘଜୀବନ ଦେଇ ସହାୟ ହୁଅନ୍ତୁ । ଏହାଛଡା ଅନ୍ୟାନ୍ୟ ଅଂଶଦାୟୀମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ ପ୍ରକାଶକ ଶ୍ରୀ ସୁନୀଲ ଦତ୍ତଙ୍କ ସମର୍ପିତ କର୍ମ ଓ ସୁପରିଚାଳନାରୁ ଗ୍ରନ୍ଥଟି ସୁରୁଖୁରୁରେ ପ୍ରକାଶିତ ହୋଇଥିବାରୁ ତାଙ୍କୁ ଆଶୀର୍ବାଦ କରୁଛି ।

ଏକାଦଶ ଖଣ୍ଡ ସଂକଳନ ପାଇଁ ବହୁ ଶ୍ରମ ସ୍ୱୀକାର କରି ଡି.ଟି.ପି. କରିଥିବା ଶ୍ରୀ ଚନ୍ଦ୍ରଶେଖର ପାତ୍ର, ଉପାଦାନ ସଂଗ୍ରାହିକା ମୋର ପତ୍ନୀ ଶ୍ରୀମତୀ ଝରଣାରାଣୀ ଦାସ, ଆଡ୍‌ଭୋକେଟ୍, ପରାମର୍ଶଦାତା ଓ ସାହାଯ୍ୟକାରୀ ବନ୍ଧୁ ଶ୍ରୀ ଦ୍ରୁପଦ ଚନ୍ଦ୍ର ଡଗରାଙ୍କ ନିଷ୍ଠା ଓ ସହଯୋଗ ପାଇଁ ଆମ୍ଭେ ଏ ସମସ୍ତଙ୍କ ପାଖରେ ଚିର ଋଣୀ ରହିଲୁ ।

ଏହି ଗ୍ରନ୍ଥ ଏଗାର ଖଣ୍ଡ ବୋଲି
ସାରଳା କୃପାରୁ ସମ୍ପୂର୍ଣ୍ଣ କଲି ।
ରତ୍ନରୂପକୃତ ରସସାଗର କରି ପାନ
ଉଚ୍ଚାଟ ହେଉ ହେ ସବୁ ପାଠକଙ୍କ ମନ ।

'ଗ୍ରନ୍ଥପ୍ରବେଶ' ସମାପ୍ତ କରି ବିଜ୍ଞ ପାଠକପାଠିକାମାନଙ୍କୁ ନମ୍ରତାର ସହିତ ପ୍ରଣାମ ଜଣାଉଛି ।

**ବିନୋଦ ବିହାରୀ ଦାସ**
ଆଡ୍‌ଭୋକେଟ
ବାଲେଶ୍ୱର ଠିକଣା - ପ୍ରୁଫ୍ ରୋଡ୍, ପୋ.ଅ. - ବାଲେଶ୍ୱର- ୭୫୬୦୦୧,
ଫୋନ୍ - ୨୬୨୩୭୨
ବାରିପଦା ଠିକଣା - ଗାନ୍ଧୀ ପାର୍କ ଗେଟ୍, ପୋ.ଅ. - ବାରିପଦା - ୭୫୭୦୦୧
ଫୋନ୍ - ୨୫୨୬୮୫



# ଅବତରଣିକା

## ରୂଢ଼ି-ପ୍ରତ୍ୟୟ

ପ୍ରକୃତି ପ୍ରତ୍ୟୟଗତ ଅର୍ଥ ଛଡ଼ା ଅନ୍ୟ ଅର୍ଥ ବୁଝାଇବାର ବାକ୍ୟାଂଶ କୁ 'ରୂଢ଼ି' ଏବଂ ତଦ୍ଭବ ସାଧାରଣତଃ ଗୃହୀତ ଅର୍ଥ ବୁଝାଉଥିବା ଗଠନକୁ 'ରୂଢ଼ିପ୍ରତ୍ୟୟ' କୁହାଯାଏ । ବିଭିନ୍ନ ଭାଷାରେ ଏହା ବିଭିନ୍ନ ପ୍ରକାରରେ ନାମିତ ହୋଇଛି । ବଙ୍ଗଳାରେ 'ବାଗ୍‌ଧାରା', ସଂସ୍କୃତ ତଥା ହିନ୍ଦୀରେ ଏହି ଶବ୍ଦର ଯଥାର୍ଥ ଅର୍ଥବୋଧକ କୌଣସି ଶବ୍ଦ ନାହିଁ । 'ପ୍ରୟୋଗ ବିଧି', 'ବାଗ୍‌ରୀତି', 'ବାଗ୍‌ଧାରା' ଓ 'ଭାଷା ସମ୍ପ୍ରଦାୟ' ଆଦି ଶବ୍ଦକୁ 'ରୂଢ଼ି' ଅର୍ଥରେ ବ୍ୟବହୃତ ହେବାର ଦେଖାଯାଏ । ଏହାର ଲେଖନ ଶୈଳୀକୁ ହିନ୍ଦୀ ପଣ୍ଡିତ ଓ ଲେଖକଗଣ ଭିନ୍ନ ଭିନ୍ନ ଭାବରେ ନାମିତ କରିଛନ୍ତି । ଯଥା - 'ମହାବିରା', 'ମହାବରା', 'ମହାବ୍‌ବରା' ଇତ୍ୟାଦି । ଏହାକୁ ଉର୍ଦ୍ଦୁରେ 'ତର୍ଜେ-କଲାମ୍', 'ଇସ୍ତେଲାହ୍' ଓ 'ରୋଜମର୍‌ରା' ମଧ୍ୟ କୁହାଯାଏ । ଇଂରାଜୀରେ ଏହାକୁ 'ଇଡ଼ିୟମ୍' (IDIOM) ଓ 'ସେଇଂସ୍' (SAYINGS) କହନ୍ତି । କେତେକ ହିନ୍ଦୀ ଭାଷାବିଦ୍ 'ସଠିକ୍ ଲେଖାର ଶୈଳୀ ଓ କହିବା ଢଙ୍ଗ'କୁ 'ମୁହାବରା' ବୋଲି ସ୍ୱୀକାର କରନ୍ତି । କେହି କେହି ବିଲକ୍ଷଣ ଅର୍ଥ ପ୍ରକାଶ କରୁଥିବା ବାକ୍ୟକୁ ମଧ ମୁହାବରା କହିଥାଚି । ପୁଣି କେହି କେହି 'ଚାତୁରୀ ଓ ଛଟକପୂର୍ଣ୍ଣ ଅର୍ଥପ୍ରକାଶନର ଢଙ୍ଗକୁ 'ମୁହାବରା' ବୋଲି ସ୍ୱୀକାର କରିଥାଆନ୍ତି । କିଛି ବୈୟାକରଣିକ ଶବ୍ଦ ବା ବାକ୍ୟକୁ ଭିନ୍ନାର୍ଥବୋଧକ ହୋଇଥିଲେ ତାକୁ 'ମୁହାବରା' କହିଥାଆନ୍ତି । ଏହିପରି 'ବିଭିନ୍ନ ରୂପରେ ଅର୍ଥ ପ୍ରକଟ କରୁଥିବା ବାକ୍ୟ', 'ଆଲଙ୍କାରିକ ଭାଷା', 'ବିଶିଷ୍ଟ ଓ ମୁଖ୍ୟ ଅର୍ଥବୋଧକ ବାକ୍ୟ', 'ଏକାର୍ଥବଦ୍ଧ କ୍ରିୟା', 'ପ୍ରଚଳିତ ଶବ୍ଦ ପ୍ରୟୋଗ ବିଶିଷ୍ଟ ବାକ୍ୟ'କୁ ମଧ 'ରୂଢ଼ିପ୍ରତ୍ୟୟ' ବା 'ମୁହାବରା' କୁହାଯାଇଥାଏ । 'ରୂଢ଼ିପ୍ରତ୍ୟୟ' ସାଧାରଣତଃ ଲିଖିତ, ପଠିତ ଓ କଥିତ ଶୈଳୀ ।

ତୁମ୍ଭକ ଦୃଷ୍ଟାନ୍ତ ଯଥା - ଷଡ଼ଯନ୍ତ୍ର, ଛକାପଞ୍ଝା ଖେଳିବା, ତୀର୍ଥକାକ ଇତ୍ୟାଦି । ବିଶଦ ଉଦାହରଣ ପରବର୍ତ୍ତୀ ଅନୁଚ୍ଛେଦମାନଙ୍କରେ ସନ୍ନିବେଶିତ ହୋଇଛି ।

ରୂଢ଼ିପ୍ରତ୍ୟୟରେ ଅଳଙ୍କାରର ବହୁଳ ବ୍ୟବହାର ଦେଖିବାକୁ ମିଳିଥାଏ । ସେଥିରେ ଉତ୍ପ୍ରେକ୍ଷା, ଉପମା, ରୂପକ, ଅତିଶୟୋକ୍ତି, ଲୋକୋକ୍ତିର ଉଲ୍ଲେଖ ଦେଖାଯାଏ । ଯଥା - 'ମାଟିରେ ଗୋଡ଼ ଲାଗୁନି', 'ନାଗଭଳି ଫଁ ଫଁ ହେବା', 'ଏଇ କଥାକୁ ନାଆ ଫେଲିଦେଲି କଲିକତାକୁ', 'ସ୍ୱର୍ଗମର୍ତ୍ତ୍ୟ' (ବା ଆକାଶ ପାତାଳ) ଏକା କରିଦେବା, 'ଏ ହାତକୁ ସେ

ହାତ ଚିହ୍ନେ' ଇତ୍ୟାଦି । ଅର୍ଥାଳଙ୍କାର ଭଳି ଶବ୍ଦାଳଙ୍କାର ମଧ୍ୟ ରୂଢ଼ିପ୍ରତ୍ୟୟରେ ବିସ୍ତର ଦେଖାଯାଏ । ଯଥା :- 'ତନୁକ୍ଷୀଣ', 'ମନ ମଳିନ', ଦୀନହୀନ' ଅବସ୍ଥା ହେବା ।

'ରୂଢ଼ି ପ୍ରତ୍ୟୟ' ଏକ ଖଣ୍ଡବାକ୍ୟ, ଯାହା ଶାବ୍ଦିକ ରୂପରେ ନୁହେଁ, ରୂଢ଼ି ଲକ୍ଷଣ ବା ବ୍ୟଞ୍ଜନା ରୂପରେ ସ୍ୱଅର୍ଥ ପ୍ରକାଶ କରେ । ଦୁଇ ବା ଅଧିକ ଶବ୍ଦ ହେବା ଆବଶ୍ୟକ, କିନ୍ତୁ ଏହା ଅନିବାର୍ଯ୍ୟ ନୁହେଁ । ଗୋଟିଏ ଶବ୍ଦ ବାରମ୍ବାର ବ୍ୟବହାର କରି ବିଭିନ୍ନ ଅର୍ଥ ସୂଚିତ ହେଲେ ତାହା ମଧ୍ୟ ରୂଢ଼ି ପଦବାଚ୍ୟ ହେବ ।

ଭାଷାରେ ରୂଢ଼ି ପ୍ରୟୋଗର ଯଥେଷ୍ଟ ମହତ୍ତ୍ୱ ଅଛି । ରୂଢ଼ି ପ୍ରୟୋଗ ଦ୍ୱାରା ଭାଷାର ସୌନ୍ଦର୍ଯ୍ୟ ବଢ଼େ, ଅଧିକ ଆକର୍ଷଣୀୟ ହୋଇଥାଏ । ଅଳ୍ପ ଶବ୍ଦ ସଂଯୋଜନାରେ ରୂଢ଼ିପ୍ରତ୍ୟୟ ଅର୍ଥପୂର୍ଣ୍ଣ ହୁଏ । ଏଣୁ ଭାଷାକୁ ଉଚ୍ଚକୋଟୀର କରିବାକୁ ହେଲେ ରୂଢ଼ିପ୍ରତ୍ୟୟର ଆବଶ୍ୟକତା ରହିଛି । ଲୋକଭାଷା ଓ କଥିତ ବୋଲିରେ ରୂଢ଼ି ପ୍ରତ୍ୟୟ ପ୍ରବେଶ କରି ବାକ୍ୟଶୈଳୀରେ କେବଳ ଯେ ପ୍ରଭେଦ ସୃଷ୍ଟି କରିଥାଏ ତାହା ନୁହେଁ, କଥନକୁ ଅଧିକ ରଙ୍ଗିମନ୍ତ ଓ ସୁଭାଷିତ କରିଥାଏ ।

ସଂସ୍କୃତ, ପାଲି ଭାଷାମାନଙ୍କର ଅପଭ୍ରଂଶରୁ ଆମେ ରୂଢ଼ି ବା 'ବାଗ୍‌ରୀତି' ଗ୍ରହଣ କରିଛୁ । ବୈଦେଶିକ ଭାଷା ତୁର୍କୀ, ପାରସୀ, ଇଂରାଜୀ ଭାଷାରୁ ମଧ୍ୟ 'ରୂଢ଼ିପ୍ରତ୍ୟୟ' ଗ୍ରହଣ କରାଯାଇଛି ।

କେବଳ ଦୈନିକ କ୍ରିୟାକଳାପରେ ନୁହେଁ, ପୌରାଣିକ, ଐତିହାସିକ, ସାମାଜିକ, ରାଜନୈତିକ, ଭୌଗୋଳିକ, ଋତୁ-ଜଳବାୟୁ-ପାଗ ସଂକ୍ରାନ୍ତୀୟ, ଗାଣିତିକ, ଜ୍ୟୋତିଷ-ରୋଗବ୍ୟାଧି ସମ୍ବନ୍ଧୀୟ, ଧାର୍ମିକ, ଜନ୍ମମରଣ, ଗର୍ଭାଧାନ, ଯୁଦ୍ଧ, ଶାନ୍ତି, କ୍ରୀଡ଼ା ସମ୍ବନ୍ଧୀୟ କ୍ଷେତ୍ରରେ ଭାଷାର ଆଦାନପ୍ରଦାନ ସହିତ ରୂଢ଼ିପ୍ରତ୍ୟୟର ସୀମା ମଧ୍ୟ ବଢ଼ୁଛି ଏବଂ ବଢ଼ିଚାଲିଥିବ । ଏହାର ଦୃଷ୍ଟାନ୍ତ ସ୍ଥାନାନ୍ତରେ ସନ୍ନିବେଶିତ ହୋଇଛି । ରୂଢ଼ିର ସ୍ୱତନ୍ତ୍ର ଅସ୍ତିତ୍ୱ ନାହିଁ । କଥାବାର୍ତ୍ତା ବା ବୋଲିରେ ବାକ୍ୟଖଣ୍ଡ ରୂପରେ କେବଳ ବ୍ୟବହୃତ ହୁଏ । ଏହାର ସଂପୂର୍ଣ୍ଣ, ସ୍ୱତନ୍ତ୍ର ବାକ୍ୟଗତ ପ୍ରୟୋଗ ହୋଇ ଆସୁଛି । କାଳ, ଲିଙ୍ଗ, ବଚନ ରୂଢ଼ିପ୍ରତ୍ୟୟକୁ ପ୍ରଭାବିତ କରିପାରେ ନାହିଁ ।

'ବେଦ', 'ଉପନିଷଦ', 'ଗୀତା' ଓ 'ରାମାୟଣ' ପ୍ରଭୃତି ସଂସ୍କୃତ ଗ୍ରନ୍ଥରୁ ଏହାର କେତେକ ଦୃଷ୍ଟାନ୍ତ ପରିଲକ୍ଷିତ ହୋଇଥାଏ ।

'ବେଦରେ' ଯେପରି -

ଦିନ ପରେ ଦିନ, ଆଖି ଖୋଲିଯିବା, ଆଖି ଦେଖା, ନିଆଁରେ ଘିଅ ଢାଳିବା, ଅଣ୍ଡା ଭାଙ୍ଗି ଦେବା, ଗଗନ ସ୍ପର୍ଶୀ, ଘର ଘର, ଛାତି ଫାଟିବା, ଚେର କାଟିବା, ମୂଳରୁ କାଟିବା,

ଠିକ ଠିକ, ଦିନ ପରି ସ୍ପଷ୍ଟ, ଦିନରାତି, ଦୁଧିଆଳି ଖାଇ, ଦୁଇ ହାତରେ, ନଈ ନୌକା ସଂଯୋଗ, ନିଷଣ୍ଟକ, ରାସ୍ତା ଦେଖାଇବା, କୂଳ ନ ପାଇବା, ପାଦରେ ଦଳି ଦେବା, ଲଗାମଛଡ଼ା ଘୋଡ଼ା, ମୁହଁ ଫୁଲେଇବା ।

'ଉପନିଷଦ'ରେ ଯେପରି -

ଆକାଶ କୁସୁମ - ସମୂଳେ ବିନାଶ,ବାଁ ଡାହାଣ, ନଜରରେ ନ ରହିବା, ନଜର ପଡ଼ିବା, ଉପର ତଳ, ଭିତର ବାହାର, ଶେଷ ନିଶ୍ୱାସ ପର୍ଯ୍ୟନ୍ତ, ବାନ୍ଧ ପୁଅ, ସାପ ପରି କାଟି ଛାଡ଼ିବା ।

'ଗୀତା'ରେ ଯେପରି-

ଅନ୍ତିମ ସମୟ, ଅଜ୍ଞାନାନ୍ଧକାର, ଲୋମଟାଙ୍କୁରି ଉଠିବା ।

ରାମାୟଣରେ- ଅରଣ୍ୟରୋଦନ, ଆଖି ପୋଡ଼ିବା, ଆଖି ମିଟିମିଟି କରିବା, କାନ କାଟିବା, କ୍ରୋଧରେ ପାଗଳ, କୁଣ୍ଡାକୁଣ୍ଡି ହେବା, ଜଳାଞ୍ଜଳି ଦେବା, ତେଢ଼େଇ ଦେଖିବା, କଥା କାଣ୍ଡ ବିନ୍ଧାପରି ଲାଗିବା, ଭ୍ରୂକୁଞ୍ଚନ, ବିସ୍ମୟାବଲୋକନ, ମୁହଁ ଲୁଚେଇବା, ଶୁଷ୍କବଚନ ।

'ରୂଢ଼ିପ୍ରତ୍ୟୟ' ଭଳି ଅର୍ଥବୋଧକ ଶବ୍ଦ ଓଡ଼ିଆ ବ୍ୟତୀତ ଅନ୍ୟ କୌଣସି ଭାଷାରେ ନାହିଁ। 'ପ୍ରଯୁକ୍ତତା', 'ବାଗରୀତି', 'ବାଗଧାରା' ଓ 'ଭାଷା ସମ୍ପ୍ରଦାୟ' ଆଦି ଶବ୍ଦକୁ ଏହାର ପ୍ରତିଶବ୍ଦ କୁହା ଯାଇପାରେ । ହିନ୍ଦିରେ 'ମୁହାବରା' ବଦଳରେ ବିଶେଷ ଭାବରେ 'ବାଗଧାରା' ଶବ୍ଦରହିଁ ବ୍ୟବହାର ଦେଖାଯାଏ । କିନ୍ତୁ 'ମୁହାବରା' ଶବ୍ଦ ବଦଳରେ 'ଭାଷା ସମ୍ପ୍ରଦାୟ' ଶବ୍ଦ ଲେଖିବା ପ୍ରକୃଷ୍ଟ । କାରଣ 'ବାଗରୀତି', 'ବାଗଧାରା', 'ପ୍ରଯୁକ୍ତତା' ଏହି ତିନିଶବ୍ଦର ଅର୍ଥ ଏଥିରୁ ଠିକ୍ ଭାବରେ ସୂଚିତ ହେଉଛି ଏବଂ 'ଭାଷାଗତ' ଅନ୍ୟ ବିଷୟର ଆଭାସ ମଧ୍ୟ ମିଳୁଛି ।

ଯେଉଁ ରୂଢ଼ିପ୍ରତ୍ୟୟ ବା ପ୍ରବାଦବାକ୍ୟ ପ୍ରଭୃତି ଉଲ୍ଲେଖ କରାଗଲା, ସେଗୁଡ଼ିକ ଆଜି ବି ଆମ ଭାଷାରେ ପ୍ରଚଳିତ । ଏହାଛଡ଼ା ଆହୁରି ଅନେକ ପ୍ରତ୍ୟୟ ତଥା ପ୍ରୟୋଗ ମଧ୍ୟ ରହିଛି, ଯାହା ଆଜି ଠିକ୍ ସେହି ରୂପରେ ଦେଖିବାକୁ ମିଳେନାହିଁ । ତଥାପି ସେଗୁଡ଼ିକ ପ୍ରବାଦ ବାକ୍ୟ ହିସାବରେ ଗଣ୍ୟ । ଉଦାହରଣ ସ୍ୱରୂପ - 'ଆକାଶ ପାତାଳ ଦୋହଲାଇବା', 'ଶୂନ୍ୟ ମାଠିଆପରି', 'ଭୋକିଲା ସିଂହ ପରି', 'ପର୍ବତର ଶୃଙ୍ଗ ପରି' ଏ ପ୍ରକାର ଅଭିବ୍ୟକ୍ତି ସମୂହ ବସ୍ତୁତଃ ଅଳଙ୍କାର ରୂପେ ଗୃହୀତ ହୋଇଛି । ପ୍ରବାଦ ବା ପ୍ରତ୍ୟୟଗୁଡ଼ିକ ଲୋକସ୍ୱୀକୃତି ପାଇବା ଅନିବାର୍ଯ୍ୟ । କିନ୍ତୁ ସଂସ୍କୃତ ସର୍ବଦା ଅଭିଜାତ ଓ ପଣ୍ଡିତମାନଙ୍କର ଭାଷା ହୋଇଥିବାରୁ ତହିଁରେ ବ୍ୟକ୍ତ ହୋଇଥିବା ଅଧିକାଂଶ ଭାବ ଓ ବିଚାର ତଥା ଅଭିବ୍ୟକ୍ତି ଶୈଳୀର ସମ୍ପର୍କ ଅଭିଜାତ ସମ୍ପ୍ରଦାୟ ସହିତ ରହିଛି । ଦ୍ୱିତୀୟତଃ ସଂସ୍କୃତ କବି ଓ ଲେଖକମାନଙ୍କ ମଧ୍ୟରେ

ଆପଣା ଭାଷାକୁ ଏକ ନୂଆ ଢଙ୍ଗରେ ପ୍ରକାଶ କରିବାର ଅନାଗ୍ରହ ନିହିତ । ଅନ୍ୟଦ୍ୱାରା ପ୍ରଯୁକ୍ତ ଭାବ ବା ଶବ୍ଦାବଳୀର ପୁନରାବୃତ୍ତି ସେମାନେ ଚାହାଁନ୍ତି ନାହିଁ । ସଂସ୍କୃତ କବି ଓ ଲେଖକମାନଙ୍କର ଏତାଦୃଶ ପ୍ରଚେଷ୍ଟା ପ୍ରବାଦ ବାକ୍ୟ ପ୍ରୟୋଗର ଅନିବାର୍ଯ୍ୟତାର ବିପରୀତମୁଖୀ । କୌଣସି 'ଉକ୍ତି' ଲୋକସ୍ୱୀକୃତ ଏବଂ ଲୋକପ୍ରଚଳିତ ହେବା ଉଚିତ୍ । ସଂସ୍କୃତ ପଣ୍ଡିତମାନେ ଆପଣାର ଉର୍ବର କଳ୍ପନା ଶକ୍ତିର ସାହାଯ୍ୟରେ ନିତ୍ୟ ନୂଆ ନୂଆ 'ଉକ୍ତି' ସୃଜନ କରିଥାଆନ୍ତି । କିନ୍ତୁ ସେମାନେ ଏହି ଉକ୍ତିଗୁଡ଼ିକୁ ଜନସାଧାରଣଙ୍କର ସମ୍ପତ୍ତି କରିବା ପାଇଁ ଯତ୍ନ କରିନାହାଁନ୍ତି ।

'ଢଗଢମାଳୀ'ର ନାମ ସଂସ୍କୃତରେ ଓ ହିନ୍ଦୀରେ ଲୋକୋକ୍ତି, ପ୍ରବାଦ ଏବଂ ସୂକ୍ତି । ଉର୍ଦ୍ଦୁରେ 'ସମଲ' ଏବଂ ଇଂରାଜୀରେ 'Proverb' କହନ୍ତି । ଏହା ଖଣ୍ଡବାକ୍ୟ ବା ରୂଢ଼ି ପ୍ରତ୍ୟୟ ଠାରୁ ଭିନ୍ନ ଅଟେ । ଏହି ଦୁଇଟିର ପ୍ରଭେଦ ସେମାନଙ୍କର ନାମରୁ ପ୍ରକଟିତ ହେଉଛି । ଖଣ୍ଡବାକ୍ୟ ବା ରୂଢ଼ି ପ୍ରତ୍ୟୟର ବ୍ୟବହାର ଗୋଟିଏ ବାକ୍ୟରେ ସମ୍ଭବ ନୁହେଁ । ଏଥିପାଇଁ ବିଶେଷ ବାକ୍ୟର ଆବଶ୍ୟକତା ଅଛି । ଏପରି ନହେଲେ ଏହାର ଅର୍ଥ ସ୍ପଷ୍ଟ ଭାବରେ ପରିସ୍ଫୁଟ ହୋଇପାରେ ନାହିଁ ।

'ଲୋକୋକ୍ତି'ର ଅର୍ଥ ହେଉଛି - ଲୋକମାନଙ୍କ ଦ୍ୱାରା ବା ସମାଜରେ ପ୍ରଚଳିତ ଉକ୍ତି । ଇଂରାଜୀରେ ଏହାକୁ 'Proverb' କୁହାଯାଏ । ବିଦ୍ୱାନ ଓ ପଣ୍ଡିତମାନେ ଲୋକୋକ୍ତିର ପରିଭାଷା ଭିନ୍ନ ଭିନ୍ନ ଶବ୍ଦରେ ପ୍ରକାଶ କରିଛନ୍ତି । ଯଥା - 'ବେକନ୍'ଙ୍କ ଅନୁସାରେ ଭାଷାର ଏହି ତୀବ୍ର ପ୍ରୟୋଗ ସାଂସାରିକ ଅନୁଶୀଳନ ଓ ବ୍ୟବହାରର ଗୂଢ଼ତତ୍ତ୍ୱକୁ ଭେଦ କରି ମୂଳରେ ପହଞ୍ଚି 'ଲୋକୋକ୍ତି' ବୋଲାଏ । 'ଡକ୍ଟର ଜନ୍‌ସନ୍' କହନ୍ତି, ଏହି ସଂକ୍ଷିପ୍ତ ବାକ୍ୟ ଯାହାକୁ ଲୋକେ ଦୋହରାଇ ଥାଆନ୍ତି, ତାକୁ 'ଲୋକୋକ୍ତି' କୁହାଯାଏ । ''ଇରେସ୍ମସ''ଙ୍କ କଥନ ହେଲା - ଏହି ଲୋକ ପ୍ରସିଦ୍ଧି ଏବଂ ଲୋକ ପ୍ରଚଳିତ ଉକ୍ତିଗୁଡ଼ିକ, ଯାହାର ଏକ ବିଲକ୍ଷଣ ଢଙ୍ଗରେ ରଚନା ହୋଇଅଛି, ତାକୁ ପ୍ରବାଦ, ଆପ୍ତବାକ୍ୟ, ବଚନ ବୋଲି କହନ୍ତି । 'ଅକ୍ସଫୋର୍ଡ଼ କନସାଇଜ୍ ଡିକ୍ସନାରୀରେ ଏହାର ଅର୍ଥ ହେଉଛି - ସାମାନ୍ୟ ବ୍ୟବହାରରେ ପ୍ରଯୁକ୍ତ ସଂକ୍ଷିପ୍ତ ଏବଂ ସାରପୂର୍ଣ୍ଣ ଉକ୍ତିକୁ ପ୍ରବାଦ, ଆପ୍ତବାକ୍ୟ, ବଚନ, ପ୍ରବଚନ କହନ୍ତି । 'ଚେମ୍ବର୍ସ ଡିକ୍ସନାରୀ ଅନୁସାରେ ଲୋକୋକ୍ତି ହେଉଛି - ସଂକ୍ଷିପ୍ତ ଏବଂ ଲୋକପ୍ରିୟ ବାକ୍ୟ ଯାହା ଗୋଟିଏ କଳ୍ପିତ ସତ୍ୟ କିମ୍ବା ନୈତିକ ଶିକ୍ଷା ଅଭିବ୍ୟକ୍ତ କରିଥାଏ । 'ଏଗ୍ରିକୋଲୋ' କହନ୍ତି - ଲୋକୋକ୍ତି ଏପରି ସଂକ୍ଷିପ୍ତ ବାକ୍ୟ ଅଟେ ଯେଉଁଥିରେ ଆଦିପୁରୁଷମାନେ ସୂତ୍ର (formula) ପରି ଆପଣା ଆପଣା ଅନୁଭୂତିଗୁଡ଼ିକୁ ବ୍ୟକ୍ତ କରିଦେଇଯାଇଛନ୍ତି । 'ସର୍ବେଣ୍ଟୀଜ'ଙ୍କ ମତରେ - 'ଲୋକୋକ୍ତି' ଏପରି ଛୋଟ ଛୋଟ ବାକ୍ୟ ଅଟେ, ଯେଉଁଥିରେ

ମନୁଷ୍ୟର ଦୀର୍ଘ ଅନୁଭୂତିର ସାର କଥାମାନ ନିହିତ । 'ଫ୍ଲେମିଙ୍ଗ୍' କହିଛନ୍ତି - ଲୋକୋକ୍ତିମାନଙ୍କରେ କୌଣସି ଯୁଗ ଅଥବା ରାଷ୍ଟ୍ରର ପ୍ରଚଳିତ ଏବଂ ବ୍ୟବହାରିକ ଜ୍ଞାନ ନିହିତ । ଯେତେବେଳେ ଆମ୍ଭେମାନେ ଉପଯୁକ୍ତ ତର୍ଜମା ତଥା ଲୋକୋକ୍ତିଗୁଡ଼ିକର ବିନ୍ୟାସ ତଥା ପ୍ରକୃତି ଉପରେ ବିଚାର କରୁ, ସେତେବେଳେ ଆମ୍ଭେମାନେ ଏହି ନିଷ୍କର୍ଷରେ ଉପନୀତ ହୋଇଥାଉଁ ଯେ ଏହି ଲୋକୋକ୍ତିରୁ ଉତ୍ପନ୍ନ ହେଉଥିବା ଚମତ୍କାରି କଥାରେ କିଛି ଅନୁଭବ ବା ତଥ୍ୟ ନିହିତ ରହିଛି । ଅଥବା ଉପଦେଶ କିମ୍ବା ନୈତିକ ଶିକ୍ଷା ପ୍ରଦାନ କରାଯାଇଛି । ଆଉ କେଉଁଥିରେ ଲକ୍ଷଣାକ୍ରାନ୍ତ ବ୍ୟଞ୍ଜନା ପ୍ରୟୋଗ କରାଯାଇଛି, ଯେପରି ଅନ୍ଧର ନାମ ପଦ୍ମଲୋଚନ ଓ ଅନ୍ଧୁଣୀର ନାମ ସୁନୟନା ।''

## ରୂଢ଼ିପ୍ରତ୍ୟୟର ପରିଚୟ

ରୂଢ଼ି ପ୍ରତ୍ୟୟ ପ୍ରୟୋଗର କୌଣସି ସୀମା ନାହିଁ । ପୃଥିବୀ, ଆକାଶ, ବାୟୁ, ଜଳ ଏବଂ ଅଗ୍ନି ଆଦି ପଞ୍ଚଭୂତ ଏବଂ ଗ୍ରହନକ୍ଷତ୍ର ତଥା ଅନ୍ୟାନ୍ୟ ପ୍ରାକୃତିକ ଉପାଦାନକୁ ଆରମ୍ଭ କରି, ଧର୍ମ ସାଧନା ଜନ୍ମ-ଜୀବନ-ମୃତ୍ୟୁ ପ୍ରଭୃତିର ଚର୍ଚ୍ଚା ଏକ ପଟେ ଅଛି ତ ମାନବଶରୀର ଏବଂ ସ୍ୱଭାବ, ଜୀବଜନ୍ତୁ, ଖାଦ୍ୟପେୟ, ଧନଦୌଲତ, ରୋଗବ୍ୟାଧିର ଚର୍ଚ୍ଚା ଅନ୍ୟପଟେ ଅଛି । ଏହା ବ୍ୟତୀତ ସାହିତ୍ୟ, କଳା, ରାଜନୀତି, ସମାଜ ତଥା ଦୈନନ୍ଦିନ ଜୀବନରେ ଆସୁଥିବା ଅଗଣିତ ବସ୍ତୁ ଓ ସ୍ଥିତି ଉପରେ ଟିକାଟିପ୍ପଣୀ କରାଯାଇଅଛି । ରୂଢ଼ିପ୍ରତ୍ୟୟରେ କେଉଁଠାରେ ଜୀବନର ଗହନତମ ଅନୁଭୂତି ଏବଂ ମହତ୍ୱପୂର୍ଣ୍ଣ ଉପଲବ୍ଧିର ପରିଚୟ ପ୍ରାପ୍ତ ହୁଏ ତ କେଉଁଠାରେ ସତ୍ୟର ଉଦ୍‌ଘାଟନ ହୋଇଥାଏ, ପୁଣି କେଉଁଠାରେ ଜୀବନର ସାଧାରଣ ଘଟଣାବଳୀ ଏବଂ ଚତୁଃପାର୍ଶ୍ୱର ଚିତ୍ର ଉପସ୍ଥାପିତ ହୋଇଥାଏ । କେଉଁଠାରେ ପାହାଡ଼ ବା ସମୁଦ୍ର, ସମତା ବା ବିସମତା ପ୍ରଦର୍ଶିତ କରିବା ପାଇଁ ଏହାକୁ ଆଧାର କରାଯାଇଛି ତ କେଉଁଠି ପିମ୍ପୁଡ଼ି ବା କୀଟପତଙ୍ଗ, କେଉଁଠି ସାହିତ୍ୟ କଳା ସଙ୍ଗୀତ, ଅଭିବ୍ୟକ୍ତିକୁ ମୁଖର କରିବା ପାଇଁ ସେମାନେ ସହାୟକ ହୁଅନ୍ତି । କେଉଁଠି ତେଲ, ଲୁଣ, ଘରକରଣା ଏହିପରି ବିଶଦ ଓ ବିବିଧ ବିଷୟର ବିବେଚନ ପାଇଁ ବିଶ୍ଳେଷଣର ସାହାଯ୍ୟ ନେବାକୁ ପଡ଼ିଥାଏ ।

ହଜାର ହଜାର ସଂଖ୍ୟାର ରୂଢ଼ି ପ୍ରତ୍ୟୟ ମଧ୍ୟରୁ କେତେକ 'ରୂଢ଼ି' ଏହି ବିବେଚନାରେ ନିମ୍ନଲିଖିତ ଶୀର୍ଷକ ଅନ୍ତର୍ଗତ ହୋଇ ସନ୍ନିବେଶିତ ହୋଇଛି ଯଥା - (୧) ପୁରାଣ ଓ ଇତିହାସ, (୨) ପଞ୍ଚଭୂତ, (୩) ଗ୍ରହନକ୍ଷତ୍ର, (୪) ପ୍ରାକୃତିକ ଉପାଦାନ, (୫) ଈଶ୍ୱର, (୬) ସାଧନା ଏବଂ ଧର୍ମ, (୭) ଜନ୍ମ, (୮) ଜୀବନ ଏବଂ ମୃତ୍ୟୁ, (୯) ମନୋଭାବ, (୧୦) ସଙ୍ଗୀତ, (୧୧) ନୃତ୍ୟ, (୧୨) ଚିତ୍ରକଳା ଏବଂ ଅଭିନୟ,

(୧୩) ଶରୀରାବୟବ, (୧୪) ସଂଖ୍ୟା, (୧୫) ରଙ୍ଗ, (୧୬) ଅସ୍ତ୍ର-ଶସ୍ତ୍ର ଏବଂ ଶିଳ୍ପ (୧୭) ରାଜ୍ୟ ଶାସନ ଓ ଆଇନ୍ (୧୮) ସାମାଜିକ ଜୀବନ ।

### ୧) ପୁରାଣ ଓ ଇତିହାସ

କାଳକ୍ରମ ଦୃଷ୍ଟିରୁ ପ୍ରାକ୍‌ଐତିହାସିକ ଯୁଗର ଘଟଣା ବିଷୟକ ଗ୍ରନ୍ଥକୁ ପୁରାଣ ଏବଂ ତା'ର ପରବର୍ତ୍ତୀକାଳରୁ ବର୍ତ୍ତମାନ ପର୍ଯ୍ୟନ୍ତ ଘଟଣାବଳୀର ପରିଚୟ ଦେଉଥିବା ଗ୍ରନ୍ଥକୁ ଐତିହାସିକ କୁହାଯାଏ । ଭାରତୀୟ ପୁରାଣ କେବଳ ପ୍ରାଚୀନ ଇତିହାସ ନୁହେଁ, ମାନବଜୀବନର ବ୍ୟାଖ୍ୟାନ ରୂପରେ ମଧ ଏହାର ମହତ୍ତ୍ୱ ସନ୍ନିବିଷ୍ଟ । ଯୀଶୁଖ୍ରୀଷ୍ଟଙ୍କ ଆବିର୍ଭାବର ବହୁପୂର୍ବରୁ ଆମର ପୌରାଣିକ ଗ୍ରନ୍ଥ ରଚିତ ହୋଇଥିବା ଅନୁମାନସିଦ୍ଧ । ଆମେ ପୁରାଣବର୍ଣ୍ଣିତ ରୂଢ଼ିପ୍ରତ୍ୟୟ ବିଷୟରେ ଆଲୋଚନା ନକଲେ ମଧ, ପୌରାଣିକ ପାତ୍ରପାତ୍ରୀ ଏବଂ ତତ୍‌ବର୍ଣ୍ଣିତ ଘଟଣାବଳୀକୁ ସମ୍ପୂର୍ଣ୍ଣ ଏଡ଼ିଦେଇ ପାରିବୁ ନାହିଁ । କାରଣ ସେ ସମସ୍ତ ଭାରତୀୟ ଜୀବନ ଏବଂ ଚିନ୍ତନ-ପଦ୍ଧତି ସହିତ ଅଭିନ୍ନରୂପରେ ଜଡ଼ିତ ଓ ଆମ ଜୀବନର ଛୋଟବଡ଼ ଘଟଣା ସମୟରେ ସେମାନେ ଆମ ମାନସପଟରେ ଆବିର୍ଭୂତ ହୋଇ ଆମକୁ ପ୍ରଭାବିତ ମଧ କରିଥାଆନ୍ତି । ଏହାକୁ କେନ୍ଦ୍ରକରି ଲିଖିତ ଗ୍ରନ୍ଥମାନଙ୍କରେ ଯେଉଁ ରୂଢ଼ିପ୍ରତ୍ୟୟ ଦେଖିବାକୁ ମିଳିଥାଏ, ତାହା ପୁରାଣ ଯୁଗର ଅବଦାନ ନହୋଇପାରେ କିନ୍ତୁ ପୁରାଣର ଅବଦାନ ସ୍ୱୀକୃତ । ଅନ୍ନର ଦେବୀ 'ଅନ୍ନପୂର୍ଣ୍ଣା', ଧନର ଦେବୀ 'ଲକ୍ଷ୍ମୀ', ଉତ୍ତରଦିଗର ଅଧିଷ୍ଠାତା ଧନାଧିପ 'କୁବେର', ଅହିତକାରକ 'ଶନି', ବିଘ୍ନବିନାୟକ 'ଗଣେଶ', ସତ୍ୟବାଦୀ 'ହରିଶ୍ଚନ୍ଦ୍ର', ଆଜନ୍ମ କୌମାର୍ଯ୍ୟବ୍ରତ ଧାରଣର ପ୍ରତିଜ୍ଞାକାରୀ 'ଭୀଷ୍ମ', ଅସୁର ବିନାଶାର୍ଥେ ସ୍ୱଅସ୍ଥି ଇନ୍ଦ୍ରଙ୍କୁ ଦାନକାରୀ 'ଦଧୀଚି', ପରମଦାନୀ ଓ ଧର୍ମାତ୍ମା 'ଯୁଧିଷ୍ଠିର', ଗୃହଭେଦୀ 'ବିଭୀଷଣ', ନାରୀତ୍ୱ ଓ ସତୀତ୍ୱର ଆଦର୍ଶ 'ସୀତା', 'ସତୀ' ଓ 'ପାର୍ବତୀ', କଳହ ସୃଷ୍ଟିକାରୀ 'ନାରଦ' ଆଦି ନିଜର ବିଶିଷ୍ଟ ଗୁଣ ପାଇଁ ସ୍ମରଣୀୟ । ଅତଏବ 'ଅନ୍ନପୂର୍ଣ୍ଣା ହେବା', 'ଆସିବା ଲକ୍ଷ୍ମୀକୁ ହତାଦର କରିବା', 'ଲକ୍ଷ୍ମୀ ହେବା' (ଭାଗ୍ୟବତୀ ହେବା), 'ଭାଗ୍ୟଲକ୍ଷ୍ମୀ' (ସୌଭାଗ୍ୟ), 'ଲକ୍ଷ୍ମୀ ପ୍ରସନ୍ନ ହେବା', 'କୁବେରର ଧନ' (ଅମାପ ଐଶ୍ୱର୍ଯ୍ୟ), 'ଶନିଶ୍ଚର', 'ଶନିଦୃଷ୍ଟି ପଡ଼ିବା', 'ଗଣେଶ ଥାପନା', (ଶୁଭକାମ ଆରମ୍ଭରେ ଗଣେଶ ପୂଜା), 'ଦାତା ହରିଶ୍ଚନ୍ଦ୍ର ହେବା' (ସତ୍ୟବାଦୀ ହେବା), 'ଭୀଷ୍ମ-ପ୍ରତିଜ୍ଞା କରିବା', 'ଦଧୀଚିର ଅସ୍ଥି ବନିଯିବା', 'ଧର୍ମରାଜ ଯୁଧିଷ୍ଠିର ହେବା', 'ସୀତା ସତୀ ପାର୍ବତୀ ହେବା', 'ନାରଦ ହେବା' ପ୍ରଭୃତି ରୂଢ଼ି ବହୁଭାବେ ପ୍ରଚଳିତ । ଗଣେଶ ବିଷୟକ ରୂଢ଼ିପ୍ରତ୍ୟୟରେ 'ଗୋବର ଗଣେଶ' ବିଶେଷ ଉଲ୍ଲେଖଯୋଗ୍ୟ । ଗଣେଶ ପରମ ବୁଦ୍ଧିମାନ ଓ ବୁଦ୍ଧିଦାତା ହିସାବରେ ମାନ୍ୟ ହେଲେ ସୁଦ୍ଧା, ପରମ ମୂର୍ଖକୁ 'ଗୋବର ଗଣେଶ' ରୂଢ଼ି ସୃଷ୍ଟି ହେବାରେ

ଏ ଇଙ୍ଗିତ ଥିବାର ଅନୁମିତ ହୁଏ । ଏହିପରି 'ଭୀମକାୟ', 'ସୁଦାମାର ତଣ୍ଡୁଳ', 'ଚଣ୍ଡୀ ହେବା', 'ଶାଳଗ୍ରାମ ପରି ପଡ଼ିବା', 'କୁମ୍ଭକର୍ଣ୍ଣ ନିଦ୍ରା', 'ମାନୀ ଦୁର୍ଯ୍ୟୋଧନ', 'ବିଦୁରର ଶାଗଭାତ', 'ଶବରୀର କୋଳି' ପ୍ରଭୃତି ରୂଢ଼ି ପ୍ରତ୍ୟୟ ଅନାୟାସରେ ଗୃହୀତ ଓ ବ୍ୟବହୃତ । 'ଦ୍ରୌପଦୀ ବସ୍ତ୍ରହରଣ' (ଅତ୍ୟାଚାରୀ), 'ଶିଖଣ୍ଡୀ' (କାହାରି ଆଡ଼ରେ ଦୁଷ୍କର୍ମ କରିବା), 'ଇନ୍ଦ୍ରସଭା' ଆଦି ମଧ୍ୟ କମ୍ ମହତ୍ତ୍ୱପୂର୍ଣ୍ଣ ନୁହେଁ । 'ବ୍ରହ୍ମାଙ୍କ ଦିନ', 'ବ୍ରହ୍ମା ବିଳିବିଳେଇଲେ ବେଦ', 'ନା ଶ୍ରୀ ନା କୃଷ୍ଣ', 'ଦେଲାବାଲା ମୁରଲୀମନୋହର', 'ଲକ୍ଷ୍ମୀନାରାୟଣ ସାଜିବା', 'ରାମ ରାମ କରିବା', 'ରାମଙ୍କ ନାମ ନେଇ', 'ରାମ ଭରସା', 'ରାମ ରାଜ୍ୟ', 'ରାମ ନାମ ସତ୍ୟ', 'ରାମବାଣ', 'ରାମାୟଣ' (ଲମ୍ୱାଚୌଡ଼ା ଲେଖା), 'ବମ୍ ଭୋଳାନାଥ', 'ଜିଭରେ ସରସ୍ୱତୀ ବିରାଜୁ', 'ସହସ୍ର ବାହୁ' (ପରମବୀର, 'ନରସିଂହ ଭଳି ବିଦାରିବା', 'ଭଗୀରଥ ପ୍ରୟାସ', 'ଭୀଷ୍ମ ପ୍ରତିଜ୍ଞା କରିବା', 'ଚତୁର୍ଦ୍ଦଶୀ ବା ଚଉଠୀ ଚାନ୍ଦ', 'ରାହୁ ଗିଳା', 'ଲଙ୍କାକାଣ୍ଡ କରିବା', 'ମହାଭାରତ ସୃଷ୍ଟି କରିବା', 'ମହାଭାରତ ଜିତିବା' ପ୍ରଭୃତି ରୂଢ଼ିପ୍ରତ୍ୟୟ ବିଶିଷ୍ଟ ଭାବର ବ୍ୟଞ୍ଜନା କରେ । ସେହିପରି 'ଶୂନ୍ୟ ଅଯୋଧ୍ୟା', 'ତିନିଲୋକ ମଧ୍ୟରେ ମଥୁରା ବସେଇବା', 'ଲଙ୍କାର ବିଭୀଷଣ' ପ୍ରଭୃତି ବ୍ୟଞ୍ଜନା ମଧ୍ୟ ରୂଢ଼ି ପ୍ରତ୍ୟୟରେ ସାହିତ୍ୟକୁ ବୈଭବପୂର୍ଣ୍ଣ କରିଛି ।

ପୌରାଣିକ ଯୁଗର ସମାପ୍ତି ପରେ, ଐତିହାସିକ ଘଟଣା ଖ୍ରୀଷ୍ଟ ଜନ୍ମର ପ୍ରାୟ ୫୦୦ ବର୍ଷ ପୂର୍ବରୁ ଆମେ ପ୍ରାପ୍ତ ହୋଇଥାଉଁ । ପୌରାଣିକ ପାତ୍ର ଭଳି ଐତିହାସିକ ପାତ୍ରପାତ୍ରୀ ବା ଘଟଣା ଆମ ସାମାଜିକ ଜୀବନରେ ତତ୍ତୁଲ୍ୟ ପ୍ରଭାବ ପକାଇ ପାରିନାହିଁ । 'ଆକବରୀ ଗୁଡ଼ାଖୁ', 'ଗାନ୍ଧୀବନିବା', 'ନାଦିରଶାହୀ ଶାସନ', 'ବୀରବଲର ଖେଚିଡ଼ୀ' (ବିଳମ୍ୱରେ ହେବା କାମ), 'ମରହଟ୍ଟୀ ବିଚାର', 'ଏବେ ଦିଲ୍ଲୀ ଦୂରରେ', 'ଗାନ୍ଧୀବାଦୀ', 'ନେହେରୁକୋଟ', 'ମହତାବ୍ ଜ୍ୟାକେଟ୍' ପ୍ରଚଳିତ କିଛି ଐତିହାସିକ ରୂଢ଼ି ମିଳିଥାଏ । କିଛି ରୂଢ଼ିପ୍ରତ୍ୟୟ ଯଥା-'ଗୋପବନ୍ଧୁ ସ୍ୱଭାବ', 'ରାଧାନାଥ ଯୁଗ', 'ସଚ୍ଚିରାଉତ କବିତା', 'ରବୀନ୍ଦ୍ର ଯୁଗ', 'ଆର୍.ଡି. ବର୍ମନ୍ ଅମଳ ସଂଗୀତ' ପ୍ରଭୃତି ପ୍ରଚଳିତ ହୋଇଆସୁଛି ।

## ୨) ପଞ୍ଚଭୂତ

ଭାରତୀୟ ଦର୍ଶନରେ ଆକାଶ, ପୃଥିବୀ, ଜଳ, ବାୟୁ ଓ ଅଗ୍ନି ଏହି ପଞ୍ଚଭୂତରୁ ସମସ୍ତ ସୃଷ୍ଟିର ସର୍ଜନା ହୋଇଛି ଏବଂ ଜୀବନର ଅବସାନ ଓ ବସ୍ତୁର ବିଲୟ ପରେ ଏ ସମସ୍ତ ଏହି ପଞ୍ଚଭୂତରେ ବିଲୀନ ହୋଇଯିବେ । ଏଣୁ ଆମ୍ଭ ଜୀବନ ଏବଂ ଅଭିବ୍ୟକ୍ତି ସହିତ ଏହାର ସ୍ଥାନ ନିର୍ଦ୍ଧାରିତ । ମନୁଷ୍ୟ ଜୀବନ ସହିତ ଓତପ୍ରୋତ ଜଡ଼ିତ ଥିବାରୁ ଏହି ପଞ୍ଚଭୂତ ତତ୍ତ୍ୱକୁ ମହତ୍ତ୍ୱ ଦିଆଯାଇଛି । ପୃଥିବୀରେ ଜନ୍ମରୁ ମୃତ୍ୟୁ ଯାଏଁ ଆମର ସ୍ଥିତି । ମୁଣ୍ଡ ଉପରେ ଆକାଶର

ଚାହୁଁଥା କ୍ଷଣେ ସୁଦ୍ଧା ଆମଠାରୁ ଭିନ୍ନ ନୁହଁନ୍ତି । ବାୟୁ ଓ ଜଳ ଆମର ଅସ୍ତିତ୍ୱ ବା ସୃଷ୍ଟିକୁ ଛାଡ଼ିଦେଲେ ସୁଦ୍ଧା ଜୀବନଧାରଣ ପାଇଁ ଅତୀବ ମହତ୍ୱପୂର୍ଣ୍ଣ । ଅଗ୍ନିର ଉଷ୍ଣତା ଆମକୁ ବଞ୍ଚିବା ପାଇଁ, ଦୈନନ୍ଦିନ ଭୋଜନ, ଆଚ୍ଛାଦନ ପାଇଁ ନିରନ୍ତର ତେଜ ଯୋଗାଉଛି ।

ଏହି ତତ୍ତ୍ୱରେ ପ୍ରଥମ ସତ୍ତା ପୃଥିବୀ । ପୃଥିବୀରେ ବ୍ୟକ୍ତି ବିଶେଷ ଛିଡ଼ା ହୁଏ । ପରାଜିତ ବା ଲଜ୍ଜିତ ହୋଇ କହେ, 'ଧରିତ୍ରୀ ମାତା, ମୋତେ ତୋ କୋଳକୁ ନେଇଯାଆ ।' ଆଦରରେ 'ମାଟିକୁ ଚୁମ୍ବନ ଦେଇ ମୁଣ୍ଡରେ ଲଗାଏ ।' ଅହଙ୍କାର ସୀମା ଲଙ୍ଘନ କଲେ-'ଗୋଡ଼ ପୃଥିବୀରେ ଲାଗେନାହିଁ', କେତେବେଳେ 'ଜମୀନ୍-ଆସମାନ ଏକା କରିଦିଏ' (ଖୁସିରେ) । କେତେବେଳେ 'ସ୍ୱର୍ଗ ମର୍ତ୍ତ୍ୟକୁ ନିଜ ବୁକୁ ଭିତରେ ଚାକି ରଖେ' (କଳ୍ପନାରେ) । କେତେବେଳେ 'ମେଦିନି କମ୍ପାଇ ଦିଏ' (ଚିତ୍କାର କରି କ୍ରୋଧରେ) । କେତେବେଳେ 'ମାଟି ଖୋଳେ' (ପରିଶ୍ରମ କରେ) । 'ପୃଥିବୀରେ ଆଉ ଦ୍ୱିତୀୟ ନାହିଁ' (ସମକକ୍ଷ ବ୍ୟକ୍ତି ନ ମିଳିଲେ) କହି ଆଦରଣୀୟ ବ୍ୟକ୍ତି ବା ବସ୍ତୁର ଡେଙ୍ଗୁରା ପିଟେ ।

ବ୍ୟକ୍ତି 'ପୃଥିବୀକୁ ଆସେ' (ଜନ୍ମ ନିଏ) ଆଉ ଦିନେ 'ପୃଥିବୀରୁ ବିଦାୟ ନିଏ' (ମୃତ୍ୟୁ) । 'ମାଟିରେ ଗାଡ଼ି ବସେ' (ଆସ୍ଥାନ ଜମାଏ ବା ଚେର ମାଟି ଧରେ), 'ମାଟିରୁ ଅଲଗା ହୁଏ' (ଚେର ଉପୁଡ଼ିବା କିମ୍ବା ମରିବା) । ପଞ୍ଚଭୂତ ମଧ୍ୟରେ ପୃଥିବୀ ସ୍ଥୂଳ ଓ ତାର ମୂଳ ଆଧାର ମାଟି । ସେଥିପାଇଁ ଆମେ 'ମାଟି ମାଆ' କହିଥାଉଁ । 'ମାଟିର ପିତୁଳା', 'ମାଟି ତ ନୁହେଁ ସୁନା', 'ମାଟିର ମୂଲ', 'ମାଟିର ମଣିଷ' ଏହିପରି ପର୍ଯ୍ୟାପ୍ତ ରୂଢ଼ି ପ୍ରତ୍ୟୟ ମାଟି, ଧରିତ୍ରୀ, ଓ ପୃଥିବୀକୁ ନେଇ ବ୍ୟବହାର କରିଥାଉଁ ।

'ଜଳ'ର ରୂଢ଼ିପ୍ରତ୍ୟୟ 'ଜଳ', 'ଅଶ୍ରୁ', 'ବର୍ଷା', 'ପାଣି' ପ୍ରଭୃତି ଶବ୍ଦରେ ହୋଇଥାଏ । 'ଶୁଖିଲା କ୍ଷେତରେ ପାଣି ବରଷିବା', 'ମୁହଁରେ ପାଣି', 'କ୍ଷୀରରେ ପାଣି ମିଶାଇବା', 'ସବୁ ଆୟୋଜନ ପାଣିରେ ଗଲା', 'ଦାନା ପାଣି ମିଳିବା', 'ଜଳବାୟୁ ଦୂଷିତ', 'ତୁଳସୀ ଗଙ୍ଗାଜଳ ଦେବା', 'ପାଣିରେ ରହି କୁମ୍ଭୀର ସହ କଳି', 'ପିଉଛୁ ପାଣି ପଚାରୁ ଜାତି', 'ପାଣି ପିଏଇ ଦେବା', 'କ୍ଷୀରନୀର ଏକା ହେବା', 'କଳାପାଣି ଭୋଗିବା' ଭଳି ଅଜସ୍ର ରୂଢ଼ି ଆମର ଦୈନନ୍ଦିନ ଜୀବନରୁ ଆରମ୍ଭ ହୋଇ ସାହିତ୍ୟିକ କୃତିରେ ବିସ୍ତୃତି ଲାଭ କରିଛି । 'ଲହୁଲୁହ ଏକା କରିବା', 'ଅଶ୍ରୁଝରା', 'ଲୁହ ଗଡ଼ିବା', 'ଲୁହ ନକାନ୍ଦି ରକ୍ତ କାନ୍ଦିବା' ଏହିପରି ରୂଢ଼ି ଏବଂ ବର୍ଷାକୁ ନେଇ 'ବର୍ଷଣ ମୁଖରିତ ସନ୍ଧ୍ୟା', 'ବରଷା ରାତି', 'ବାଦଲଭିଜା', 'ଲୁହର ବନ୍ୟା', 'ବର୍ଷାଗମ', 'ବର୍ଷାଘନ', 'ବର୍ଷାଯୋଗ','ବର୍ଷାପ୍ରିୟ', 'ବର୍ଷାବର୍ଷି', 'ବର୍ଷାଭାବ', 'ବର୍ଷା ମଦ', 'ବର୍ଷୁକ ମେଘ' (ବର୍ଷଣକାରୀ) ପ୍ରଭୃତି ନିତ୍ୟବ୍ୟବହାର୍ଯ୍ୟ ରୂଢ଼ିପ୍ରତ୍ୟୟ ସମ୍ଭାର ଭାଷାକୁ ଋଦ୍ଧିମନ୍ତ କରିଛି ।

ଆକାଶ ଭୂପୃଷ୍ଠକୁ ଅତିକ୍ରମ କରି ବିଶ୍ୱବ୍ରହ୍ମାଣ୍ଡରେ ପରିବ୍ୟାପ୍ତ । ଆକାଶ ବା ନଭ ପଞ୍ଚଭୂତ ମଧ୍ୟରେ ସର୍ବାଧିକ ସୂକ୍ଷ୍ମ । ରୂଢ଼ିପ୍ରତ୍ୟୟରେ ଏହା ଅଧିକତର ଉଚ୍ଚ ଓ ଗର୍ବର ଅଭିବ୍ୟକ୍ତି ପାଇଁ ବ୍ୟବହୃତ ହୋଇଥାଏ । 'ଆକାଶ ଛୁଇଁବା', 'ଆକାଶରୁ ଉଣ୍ଢା', 'ଆକାଶରୁ ପାତାଳକୁ ଖସିବା', 'ଆକାଶକୁ ନିଶୁଣୀ', 'ମାଟିକୁ ନ ଚାହିଁ ଆକାଶକୁ ଚାହିଁବା', 'ଆକାଶ ପୃଥିବୀ ଯେଉଁଠି ମିଶିଛି', 'ଆକାଶ ତଳକୁ ଚାହିଁଛି', 'ମୁଣ୍ଡ ଉପରେ ଆକାଶ ଭାଙ୍ଗିପଡ଼ିବା', 'ମୁଣ୍ଡ ଆକାଶକୁ ଛୁଇଁବା' ପ୍ରଭୃତି ନାନା ପ୍ରକାର ଅଭିବ୍ୟକ୍ତିରେ ତାର ପ୍ରମାଣ ମିଳେ । ଲୋକ ଯେତେବେଳେ ବଡ଼ବଡ଼ କଳ୍ପନା କରେ, ସେତେବେଳେ 'ଆକାଶ କୁସୁମ', 'ଆକାଶଗଙ୍ଗାରେ ସ୍ନାନ କରିବା', 'ଆକାଶ ପାତାଳ ଏକ କରିବା', 'ଆକାଶ କୟାଁ ଚିଲିକା ମାଛ' (ଅନିଶ୍ଚିତ), 'ଆକାଶ ଗଙ୍ଗା', 'ଆକାଶକକ୍ଷା', 'ଆକାଶକୁ ଉଠାଇବା' (ଅଯଥା ପ୍ରଶଂସା), 'ଆକାଶଗ' (ପକ୍ଷୀ), ଆକାଶ ଚମ୍ପା', 'ଆକାଶଚର', 'ଆକାଶଚରୀ', ଆକାଶଚାରୀ, 'ଆକାଶ ଜନନୀ' (ଦୁର୍ଗରେ ଛିଦ୍ର), 'ଆକାଶ ଡୁବି' (ପୋକ), 'ଆକାଶଦୀପ', 'ଆକାଶ ଦୁହିତା', 'ଆକାଶ ଫଟା' (ଶବ୍ଦ), 'ଆକାଶବଳୀ', 'ଆକାଶବାଣୀ', 'ଆକାଶରେ ଘର ତୋଳିବା', 'ଆକାଶ ଲତା' ଏହିପରି ଆକାଶକୁ ନେଇ ବହୁ ରୂଢ଼ି ପ୍ରତ୍ୟୟ ଓଡ଼ିଆ ଭାଷାକୋଷ ଭଣ୍ଡାର ବଢ଼ାଇଛି ତଥା ଓଡ଼ିଆ ସାହିତ୍ୟର ଶ୍ରୀ ବୃଦ୍ଧି କରିଛି ।

ବାୟୁର ମୂଳ ଅର୍ଥରେ ପ୍ରଯୁକ୍ତ ରୂଢ଼ିପ୍ରତ୍ୟୟ ଅପେକ୍ଷାକୃତ ସୀମିତ । ଅଧିକାଂଶ ରୂଢ଼ିରେ ବାୟୁର ଗତି ଓ ପ୍ରଭାବର ବ୍ୟଞ୍ଜନା ହୋଇଥାଏ । 'ପବନ ବେଗରେ', 'ବାୟୁ ବା ବାତ୍ୟାରେ ତୃଣ ସମ' 'ହାଓଆ ମହଲ' ପ୍ରଭୃତି ରୂଢ଼ିରେ ପବନ ମୂଳ ରୂପରେ ପ୍ରଯୁକ୍ତ । 'ହାଉଆରେ କଥା ଉଡ଼ିବା', 'ହାଉଆ କଥା', 'ହାଉଆ ଗାଡ଼ି', 'ହାଉଆ ଚକି', 'ହାଉଆ ନିଲାମ' (ବନ୍ଧକ ନଥିବା ଜମି ଅଦାଲତରେ ନିଲାମ), 'ବାୟୁକେତୁ' (ଧୂଳି), 'ବାୟୁ କୋଣ', 'ବାୟୁ କୋଷ' (ଫୁସଫୁସ), 'ବାୟୁ ଗଣ୍ଡ' (ପେଟଫମ୍ପା), 'ବାୟୁଗତି', 'ବାୟୁଗୁଳ୍ମ' (ତୋଫାନ, ପେଟରୋଗ), 'ବାୟୁଗ୍ରସ୍ତ' (ପାଗଳ, ବାତରୋଗ), 'ବାୟୁଚକ୍ର' (ପବନଚକି), 'ବାୟୁ ନିଷ୍କାସନ ଯନ୍ତ୍ର', 'ପବନପୁତ୍ର', 'ବାୟୁ ପୁରାଣ', 'ବାୟୁଫଳ' (କୁଆପଥର, ଇନ୍ଦ୍ରଧନୁ), 'ବାୟୁବାହ' (ମେଘ), 'ବାୟୁଭୁକ୍' (ସାପ), 'ବାୟୁମଣ୍ଡଳ', 'ବାୟୁସଖ' ଏବଂ ପବନକୁ ରୂଢ଼ିପ୍ରତ୍ୟୟରେ 'ପବନବହ' (ନାକ), 'ପବନବାହନ' (ଅଗ୍ନି), 'ପବନବ୍ୟାଧି' (ବାତ), 'ପବନାଶନ', 'ପବନାଶନାଶ' (ମୟୂର, ଗରୁଡ଼), ସେହିପରି ମରୁତ୍ (ପବନ)ରୁ 'ମରୁତ୍ କ୍ରିୟା' (ଅଧୋବାୟୁ ତ୍ୟାଗ), 'ମରୁତ୍ପତି' (ବିଷ୍ଣୁ, ଇନ୍ଦ୍ର), 'ମରୁତ ଛନ୍ଦ' (ପ୍ରାଣାୟାମ) ଇତ୍ୟାଦି ପ୍ରଣିଧାନଯୋଗ୍ୟ । ପବନ ସମ୍ବନ୍ଧୀୟ

ରୂଢ଼ିପ୍ରତ୍ୟୟ ବିଶେଷ ତୀକ୍ଷ୍ଣଧାର ଓ ବ୍ୟଙ୍ଗୋକ୍ତିମୟ ନହେଲେ ସୁଦ୍ଧା ଅନେକ ଉକ୍ତି ଭିନ୍ନ ଅର୍ଥରେ ପ୍ରଯୁକ୍ତ ହେବାର ପରିଲକ୍ଷିତ ହୁଏ ।

ଅଗ୍ନି ସାଧାରଣତଃ କ୍ରୋଧ, କଟୁବଚନ, ଉତ୍ତେଜନା ବା ବିଦ୍ରୋହ ଭାବ ବ୍ୟକ୍ତ କରିଥାଏ । 'ନିଆଁ ଫୁଙ୍କିବା' , 'ନିଆଁଲାଗିବା', 'ରାଗି ନିଆଁ ହେବା', 'ନିଆଁଭଳି ବ୍ୟାପିବା', 'ନିଆଁକୁ ଡେଇଁବା ବା କୁଦିବା', 'ନିଆଁ ଲାଗିଲେ କୁଅ ଖୋଳିବା', 'ଅଗ୍ନି ସଂସ୍କାର କରିବା' ଏବଂ ଅଗ୍ନିକୁ ପବିତ୍ରତା ଭାବଯୁକ୍ତ ବ୍ୟଞ୍ଜନା ସହିତ -'ଅଗ୍ନିକୁ ସାକ୍ଷୀ ରଖିବା', 'ଅଗ୍ନିପରୀକ୍ଷା', 'ଅଗ୍ନିରେ ଘୃତାହୁତି' ଇତ୍ୟାଦି ଏବଂ ଅନ୍ୟ ଅର୍ଥ ବୁଝାଉଥିବା ଯଥା - 'ଅଗ୍ନିକଣ' (ନିଆଁଝୁଲ), 'ଅଗ୍ନିକରଣ' (ନିଆଁ ଲଗେଇବା), 'ଅଗ୍ନିକଳା' (ଅଗ୍ନିଙ୍କ ଦଶ କଳା), 'ଅଗ୍ନିକଣ୍ଠ', 'ଅଗ୍ନିତୁଲ୍ୟ', 'ଅଗ୍ନିକାଣ୍ଡ', 'ଅଗ୍ନିକାରିକା' (ବେଦୋକ୍ତ ବିଧିରେ ଅଗ୍ନିସ୍ଥାପନ), 'ଅଗ୍ନିକୁଢ଼' (ନିଆଁଗଦା), 'ଅଗ୍ନିକୁଣ୍ଡ' (ହୋମକୁଣ୍ଡ), 'ଅଗ୍ନିବଲ୍ଲଭ' (ଶାଳଗଛ), 'ଅଗ୍ନିଧ୍ୱଜ' (ଧୂଆଁ), 'ଅଗ୍ନିସ୍ୱାର' (ଅଗ୍ନିରେ ପ୍ରଦତ୍ତ ଆହୁତି ଗ୍ରହଣ କରୁଥିବା ପିତୃଲୋକଗଣ), 'ଅଗ୍ନିମାନ୍ଦ୍ୟ' (ଅଜୀର୍ଣ୍ଣ ରୋଗ), 'ଅଗ୍ନିସୂତ୍ର' (କୁଶମେଖଳା), 'ଅଗ୍ନି ହୋତ୍ର' (ଘିଅ), 'ଅଗ୍ନ୍ୟୁଦ୍‌ଗାର', 'ଅଗ୍ନ୍ୟୁତ୍ପାତ' - ଏହିପରି ବହୁ ରୂଢ଼ିପ୍ରୟୋଗ ପୁରାଣ ଓ ସାହିତ୍ୟରେ ବ୍ୟବହୃତ ହୋଇଥିବାର ଦେଖାଯାଏ ।

### ୩) ଗ୍ରହ ନକ୍ଷତ୍ର

ପଞ୍ଚଭୂତ ଭଳି ଗ୍ରହ ନକ୍ଷତ୍ର ଏବଂ ଅନ୍ୟାନ୍ୟ ପ୍ରାକୃତିକ ଉପାଦାନମାନଙ୍କର ସ୍ଥିତି ମଧ ଅନିବାର୍ଯ୍ୟ ରୂପରେ ଆମକୁ ବିସ୍ମୟାଭୂତ କରିଥାଏ । ଜ୍ୟୋତିଷ ମଣ୍ଡଳ ନାନା ରୂପରେ ଆମ ଜୀବନକୁ ପ୍ରଭାବିତ କରିଥାଆନ୍ତି । ଗ୍ରହ ନକ୍ଷତ୍ର ମଧ୍ୟରେ ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହାଦିର ଉଲ୍ଲେଖ ଆମ ସାହିତ୍ୟର ରୂଢ଼ିପ୍ରତ୍ୟୟରେ ସୀମିତ ରୂପରେ ଦେଖିବାକୁ ମିଳେ । ସୂର୍ଯ୍ୟ ଏକ ତେଜିୟାନ୍ ଗ୍ରହ ହୋଇଥିବାରୁ ରୂଢ଼ିପ୍ରତ୍ୟୟରେ ସେହିପରି ଭାବଯୁକ୍ତ ହୋଇଅଛି । 'ସୂର୍ଯ୍ୟପରି ତେଜସ୍ୱୀ ହୁଅ', 'ସୂର୍ଯ୍ୟକୁ ଦୀପ ଦେଖାଇବା' 'ସୂର୍ଯ୍ୟ କାଳାନଳ ଚକ୍ର' ପ୍ରଭୃତିରେ ସୂର୍ଯ୍ୟଙ୍କର ତେଜକୁ ଇଙ୍ଗିତ କରାଯାଇଛି । ସୂର୍ଯ୍ୟଙ୍କର ଅନ୍ୟନାମ ରବି । 'ରବି ଅନ୍ତର' (ସୂର୍ଯ୍ୟଙ୍କର ଯୋଗକାଳୀନ ଅନ୍ତର୍ଦ୍ଦଶା), 'ରବିକର' (ସୂର୍ଯ୍ୟକିରଣ), 'ରବିକାନ୍ତ' (ସୂର୍ଯ୍ୟକାନ୍ତ ମଣି) 'ରବିକାନ୍ତା ପ୍ରଦେଶ' (ଗ୍ରୀଷ୍ମ କଟୀବନ୍ଧସ୍ଥ ସ୍ଥାନ), 'ରବିଗୋଚର' (ରବି ଗ୍ରହ.ଅବସ୍ଥାନ ଅବସ୍ଥା), 'ରବିଚକ୍ର'(ସୌର ଗ୍ରହର ଫଳ), 'ରବିଦଶା', 'ରବି ସଂକ୍ରମଣ' (ସଂକ୍ରାନ୍ତି), 'ରବିମାର୍ଗ ଭଙ୍ଗ' (ଅତ୍ୟୁଚ୍ଚ), 'ରବି ଫସଲ' ଏବଂ ଏହିପରି ଅନେକ । ସୂର୍ଯ୍ୟ ରୂପକ ଶବ୍ଦ, ଯଥା- 'ସୂର୍ଯ୍ୟଉଠିବା', 'ସୂର୍ଯ୍ୟକମଳ', 'ସୂର୍ଯ୍ୟକର', 'ସୂର୍ଯ୍ୟନାଡ଼ୀ', 'ସୂର୍ଯ୍ୟାବର୍ତ୍ତ' (ଅଧକପାଳି ବ୍ୟଥା), 'ସୂର୍ଯ୍ୟାୟଣ ବାର', 'ସୂର୍ଯ୍ୟୋପସ୍ଥାନ',

'ସୂର୍ଯ୍ୟସିଦ୍ଧାନ୍ତ' (ହିନ୍ଦୁ ଜ୍ୟୋତିଷ ଗ୍ରନ୍ଥ), 'ସୂର୍ଯ୍ୟୋତ୍ସବ ରାଜ' (ସୂର୍ଯ୍ୟୋଦେବଙ୍କର ସ୍ତୋତ୍ର) ଇତ୍ୟାଦି ଶାସ୍ତ୍ରୋକ୍ତ ଏବଂ ପ୍ରଚଳିତ ରୂଢ଼ିପ୍ରତ୍ୟୟ ଭାଷାରେ ପ୍ରୟୋଗ ହୋଇଛି ।

ଚନ୍ଦ୍ରଙ୍କର ତେଜ ନାହିଁ, ଅଛି ସ୍ନିଗ୍ଧତା । ତା' ସହିତ ସୌନ୍ଦର୍ଯ୍ୟ, ଶୁଭ୍ରତା ତଥା ମହତ୍ତ୍ୱ ଭାବ ବ୍ୟକ୍ତ କରୁଥିବାରୁ 'ଚନ୍ଦ୍ରକୁ ଗ୍ରହଣ ଲାଗିବା', 'ଚନ୍ଦ୍ରପରି', 'ଜହ୍ନମାମୁଁ', 'ଚାନ୍ଦଉଦିଆ ମୁହଁ' ପ୍ରଭୃତି ରୂଢ଼ି ପ୍ରତ୍ୟୟ ଅତିସାଧାରଣ । ଓଡ଼ିଆ ସାହିତ୍ୟରେ ଚନ୍ଦ୍ରକୁ ନେଇ ରୂଢ଼ି ପ୍ରତ୍ୟୟର କଳନା ନାହିଁ । 'ଚନ୍ଦ୍ରକ' (ମୟୂର ଚନ୍ଦ୍ରିକା), 'ଚନ୍ଦ୍ରକଳା' (ଚନ୍ଦ୍ରଙ୍କର ଷୋଡ଼ଶକଳା), ଚନ୍ଦ୍ରକଳଙ୍କ', 'ଚନ୍ଦ୍ରକାନ୍ତ' (ମଣି ବିଶେଷ), 'ଚନ୍ଦ୍ରକାନ୍ତି', 'ଚନ୍ଦ୍ରକିତ' (ଚନ୍ଦ୍ରପରି ଉଜ୍ଜ୍ୱଳ), 'ଚନ୍ଦ୍ରଗୃହ' (କର୍କଟ ରାଶି), 'ଚନ୍ଦ୍ରଚଞ୍ଚଳ' (ଏକପ୍ରକାର ମାଛ), 'ଚନ୍ଦ୍ରଗତି' (ଚନ୍ଦ୍ରଙ୍କର ଏକରାଶିରୁ ଅନ୍ୟ ରାଶିକୁ ଗତି), 'ଚନ୍ଦ୍ରଚାଳନ' (ସ୍ତ୍ରୀମାନଙ୍କର ଅଙ୍ଗର ବିଭିନ୍ନ ଅଂଶରେ ଥିବା ଚନ୍ଦ୍ରକୁ ଉତ୍ତେଜିତ କରିବା ବିଧି), 'ଚନ୍ଦ୍ରଚୂଡ଼' (ଚନ୍ଦ୍ରମୌଳୀ), 'ଚନ୍ଦ୍ରଦୀପ', 'ଚନ୍ଦ୍ରପ୍ରଭ', 'ଚନ୍ଦ୍ରପୃଷ୍ଠ' (ଯାହାର ଜାନୁ, ଭୁଜ ଓ ବକ୍ଷ ବିଶାଳ ଓ ପେଟ କୃଶ), 'ଚନ୍ଦ୍ରବଂଶ', 'ଚନ୍ଦ୍ରବଦନ', 'ଚନ୍ଦ୍ରବନ୍ଧନୀ' (ଗାଣିତିକ ସଂକେତ), 'ଚନ୍ଦ୍ରବଲ୍ଲରୀ' (ସୋମଲତା), 'ଚନ୍ଦ୍ର ବିହଙ୍ଗମ' (ବଗପକ୍ଷୀ), 'ଚନ୍ଦ୍ରବ୍ରତ' (ଚାନ୍ଦ୍ରାୟଣ ବ୍ରତ), 'ଚନ୍ଦ୍ରଭବନ' (ଚନ୍ଦ୍ରଶାଳା), 'ଚନ୍ଦ୍ରଭାସ' (ଚକଚକିଆ ତରବାରି), 'ଚନ୍ଦ୍ରଭୂତି' (ରୂପା), 'ଚନ୍ଦ୍ର ମହାଦଶା' (ଚନ୍ଦ୍ରଗ୍ରହ ଭୋଗ କରିବା କାଳ), 'ଚନ୍ଦ୍ରମାଗାର' (ଦେହରେ ଚନ୍ଦ୍ରାକୃତି ନଖ ଚିହ୍ନ), 'ଚନ୍ଦ୍ରରତ୍ନ' (ମୁକ୍ତା), 'ଚନ୍ଦ୍ରରେଖା' (ଚନ୍ଦ୍ରକିରଣ), 'ଚନ୍ଦ୍ର ରେଣୁ', 'ଚନ୍ଦ୍ରଲୋକ' (ଚନ୍ଦ୍ରର ଅଭ୍ୟନ୍ତର ଭାଗ), 'ଚନ୍ଦ୍ରଶୂର' (ସୋରିଷ ଶାଗ), 'ଚନ୍ଦ୍ରସଚିବ' (କର୍ପୂର, କାମଦେବ), 'ଚନ୍ଦ୍ରସ୍ୱର' (ନିଶ୍ୱାସ ବାମ ପୁଡ଼ାରେ ଗଲାବେଳେ), 'ଚନ୍ଦ୍ର ହାସ' (ମନୋହର ହାସ୍ୟ), 'ଚନ୍ଦ୍ରାତପ' (ଚାନ୍ଦୁଆ), 'ଚନ୍ଦ୍ରାଭାସ' (ଆକାଶରେ ଚନ୍ଦ୍ରପରି ଦେଖାଯିବା ମରୀଚିକା), 'ଚନ୍ଦ୍ରଗ୍ରହଣ' ଏହିପରି ଚନ୍ଦ୍ରକୁ ନେଇ ଅନେକ ରୂଢ଼ି ପ୍ରତ୍ୟୟ ଆମ ଭାଷାକୁ ସମୃଦ୍ଧ କରିଛି ।

'ନକ୍ଷତ୍ରର ତେଜ' ବା 'ନକ୍ଷତାଶ୍ରିତ ଯୋଗ' ଶୁଭଯୋଗକୁ କୁହାଯାଏ ଏବଂ ଏହି ଯୋଗଥିବା ବ୍ୟକ୍ତିକୁ ଭାଗ୍ୟଶାଳୀ ମନେ କରାଯାଏ । ବହୁତ କାମ୍ୟବସ୍ତୁକୁ 'ସ୍ୱାତି ବୁନ୍ଦା' କୁହାଯାଏ । ତାରା ବା ନକ୍ଷତ୍ରପାତ୍‌କୁ 'ଉଲ୍କାପାତ୍' କୁହାଯାଏ ଏବଂ ଏହା ଅଶୁଭସୂଚକ ବୋଲି ଲୋକବିଶ୍ୱାସ । 'ତାରା ଗଣି ରାତି ପାହିବା', 'ଦିନରେ ତାରା ଦେଖାଯିବା' ଇତ୍ୟାଦିରେ ବିଭିନ୍ନ ଭାବ ବ୍ୟକ୍ତ ହୋଇଥାଏ । ସପ୍ତର୍ଷିଙ୍କ ସମୀପସ୍ଥ ଧ୍ରୁବତାରା ସବୁଠାରୁ ଶ୍ରେଷ୍ଠ ଓ ଉଜ୍ଜ୍ୱଳ ବୋଲି ସ୍ୱୀକୃତ । ରାଜା ଉତ୍ତାନପାଦଙ୍କ ପୁତ୍ର ଧ୍ରୁବ ଘୋର ତପସ୍ୟା କରି ନକ୍ଷତ୍ରମଣ୍ଡଳରେ ଅଟଳ ସ୍ଥାନ ପ୍ରାପ୍ତ ହୋଇଥିଲେ । ଅତଏବ 'ଧ୍ରୁବବାକ୍ୟ', 'ଧ୍ରୁବ ସତ୍ୟ', 'ଧ୍ରୁବତାରା' ଆଦି ନିଶ୍ଚିତ ଏବଂ ଅଟଳବାକ୍ୟ ପାଇଁ ପ୍ରଯୁଜ୍ୟ 'ରୂଢ଼ିପ୍ରତ୍ୟୟ' । ତାରକା

ଶବ୍ଦର ଅଧୁନା ବ୍ୟବହାର ଇଂରାଜୀ ଭାଷା ଏବଂ ଚଳଚ୍ଚିତ୍ର କାରଣରୁ ହୋଇଥିବାର ମନେ ହୁଏ । ଇଂରାଜୀରେ ଚଳଚ୍ଚିତ୍ର କଳାକାରମାନଙ୍କୁ 'ଷ୍ଟାରସ୍' ବା 'ତାରକା' କୁହାଯାଏ । ଯଥାः- ବାଡ଼ିଙ୍ଗ୍ ଷ୍ଟାର୍, ଘାଇନିଂ ଷ୍ଟାର୍, ଟ୍ୱେଙ୍କଲିଙ୍ଗ୍ ଷ୍ଟାର ।

ଶନି ନବଗ୍ରହ ମଧ୍ୟରେ ଗୋଟିଏ ଗ୍ରହ ଏବଂ ଜ୍ୟୋତିଷ ମତରେ ଏହାଙ୍କ ଆଗମନ ଅମଙ୍ଗଳକାରୀ ଅଟେ । ଜୀବନରେ ଏକାଧିକବାର ଏକାଦିକ୍ରମେ ସାଢ଼େସାତ ବର୍ଷ ପର୍ଯ୍ୟନ୍ତ ଶନିଦଶା ଚାଲେ । ଏହାକୁ 'ସାଢ଼େସାତ ଶନିଦଶା' କହନ୍ତି । ଏହାର ଅନ୍ତିମ ଅଢ଼େଇବର୍ଷ ବହୁତ କଷ୍ଟକର ହୋଇଥାଏ । ଏହାକୁ 'ଅଢ଼େଇଆ' କାଟିବା କହନ୍ତି । ଶନିଦଶା ପଡ଼ିଲେ ବ୍ୟକ୍ତି ଶାନ୍ତିରେ ରହିପାରେ ନାହିଁ, ଗୋଟା ପରେ ଗୋଟିଏ ଝଞ୍ଜଟ  ଲାଗିରହେ । ଏଣୁ 'ଗୋଡ଼ରେ ଶନି ଲାଗିଛି' କହିଥାଆନ୍ତି । 'ଶନିଗୋଚର' ଅର୍ଥ ଶନିଗ୍ରହ ପ୍ରତ୍ୟେକ ରାଶିକୁ ଅତିକ୍ରମ କରିବା କାଳ, ଅଢ଼େଇବର୍ଷ । 'ଶନିଚଳନ' ଅର୍ଥ ଶନିର ଗୋଟିଏ ରାଶିରୁ ଅନ୍ୟରାଶିକୁ ଯିବାର କାଳ । ସେହିପରି 'ଶନି ଦୃଷ୍ଟି', 'ଶନି ପ୍ରଦୋଷ', 'ଶନିପ୍ରସୂ' (ଶନିଙ୍କ ମାତା ଛାୟା) । 'ଶନିପ୍ରିୟ' (ନୀଳମଣି), 'ଶନିରୁହ' (ମଇଁଷି), 'ଶନିଶ୍ଚର' (ଶନିଗ୍ରହ), 'ଶନିସପ୍ତା' ଇତ୍ୟାଦି ଶନିର ଅନ୍ତକିଛି ରୂଢ଼ିପ୍ରତ୍ୟୟ ମିଳିଥାଏ ।

ବୃହସ୍ପତିଙ୍କୁ ଦେବଗୁରୁ କୁହାଯାଏ । 'ବୃହସ୍ପତି-ଏକାଦଶ' କହିଲେ ସୌଭାଗ୍ୟୋଦୟକୁ ବୁଝାଏ । 'ବୃହସ୍ପତି ଚକ୍ର' କହିଲେ, ୬୦ବର୍ଷ ବ୍ୟାପୀ କାଳଚକ୍ର, 'ବୃହସ୍ପତି ପଞ୍ଚମ' ମନୁଷ୍ୟର ସୌଭାଗ୍ୟଯୁକ୍ତ ଅବସ୍ଥା । 'ବୃହସ୍ପତି ବାର' ଗୁରୁବାରକୁ ବୁଝାଏ । ବିଭିନ୍ନ ରାଶିର ଉଲ୍ଲେଖ ରୂଢ଼ି ପ୍ରତ୍ୟୟରେ ମିଳିଥାଏ । ଯେପରି କନ୍ୟାରାଶିରେ 'କନ୍ୟାସଂକ୍ରାନ୍ତି' (କନ୍ୟାମାସର ପ୍ରଥମଦିନ), 'କନ୍ୟକା' (ଦଶବର୍ଷ ବୟସ୍କା କୁମାରୀ, କନ୍ୟା ରାଶି), 'ନକ୍ଷତ୍ରନାଥ' (ଚନ୍ଦ୍ର), 'ନକ୍ଷତ୍ରନେମି' (ଧ୍ରୁବତାରା ବା ରେବତୀ ନକ୍ଷତ୍ର), 'ନକ୍ଷତ୍ର ପାତ' (ଉଲକା ପାତ). 'ନକ୍ଷତ୍ର ବିଦ୍ୟା' (ଜ୍ୟୋତିଷ ଶାସ୍ତ୍ର), 'ନକ୍ଷତ୍ରବୃଷ୍ଟି' (ବହୁ ଉଲକାପାତ, 'ନକ୍ଷତ୍ରବେଗ' (ଦ୍ରୁତଗତି), 'ନକ୍ଷତ୍ରମାଳା' (ନକ୍ଷତ୍ର ସମୂହ), 'ନକ୍ଷତ୍ର ପାଳକ' (ନକ୍ଷତ୍ରଦୋଷ ଶାନ୍ତି ପାଇଁ ହୋମ), 'ନକ୍ଷତ୍ରପ' (ଚନ୍ଦ୍ର), 'ନକ୍ଷତ୍ର ଯୋଗ', 'ନକ୍ଷତ୍ରଯୋନି' (ବିବାହାର୍ଥ ନିଷିଦ୍ଧ ନକ୍ଷତ୍ର), 'ନକ୍ଷତ୍ରରାଜ' (ଚନ୍ଦ୍ର), 'ନକ୍ଷତ୍ରଇଞ୍ଜା' (ଧୂମକେତୁ), 'ନକ୍ଷତ୍ରଲୋକ' (ନକ୍ଷତ୍ରାଧିଷ୍ଠିତ କଳ୍ପିତ ଭୂବନ ବିଶେଷ), 'ନକ୍ଷତ୍ର ଶୂଳ' (ଯାତ୍ରାଦି ଶୁଭକାର୍ଯ୍ୟରେ ନିଷିଦ୍ଧ ନକ୍ଷତ୍ର), 'ନକ୍ଷତ୍ରାଶ୍ରୁତ ଯୋଗ' (ଶୁଭଯୋଗ), 'ନକ୍ଷତ୍ରେଶ' (ଚନ୍ଦ୍ର, କର୍ପୂର), 'ତାରାକାନ୍ତ' (ଚନ୍ଦ୍ର), 'ତାରାଗ୍ରହ' (ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଓ ଶନି ଆଦି ପାଞ୍ଚଗ୍ରହ), 'ତାରାଜନିତ' (ବୁଧଗ୍ରହ), 'ତାରାଧିପ' (ଚନ୍ଦ୍ର, ବାଳି, ଶିବ), 'ତାରା ପତନ' (ଉଲ୍କାପାତ), 'ତାରାପଥ' (ନଭୋମଣ୍ଡଳ), 'ତାରାପୀଡ଼' (ଚନ୍ଦ୍ର), 'ତାରାଭବ' (ବୁଧଗ୍ରହ), 'ତାରାଭା' (ନାରଦ

ମୁନି), 'ତାରାଭୂଷା' (ରାତ୍ରି), 'ତାରାଭ୍ର' (କର୍ପୂର), 'ତାରାମଣ୍ଡଳ' (ନକ୍ଷତ୍ର ମିଶ୍ରଣ ଆକାଶ ମଣ୍ଡଳ), 'ତାରାମୃଗ' (ମୃଗଶିରା ନକ୍ଷତ୍ର), 'ତାରାୟଣ' (ଆକାଶ), 'ଉଲ୍କା ପତନ' (ଉଲ୍କାପିଣ୍ଡ), 'ଉଲ୍କାପୁଞ୍ଜ', 'ଉଲ୍କାବୃଷ୍ଟି', 'ଉଲ୍କାମୁଖୀ' (ମୁହଁ ଆଁ କଲେ ଆଲୁଅ ଦେଖାଯିବା ଏକ ଜାତୀୟ ଶୃଗାଳ), 'କୃତ୍ତିକା ତନୟ' (କାର୍ତ୍ତିକେୟ), 'ରୋହିଣୀ କୁଣ୍ଡ' (ପୁରୀ ବିମଳାମନ୍ଦିର ସମ୍ମୁଖ ଜଳକୁଣ୍ଡ), 'ରୋହିଣୀ ତନୟ', (ବଳରାମ), 'ରୋହିଣୀପତି' (ଚନ୍ଦ୍ର), 'ରୋହିଣୀ ଶକଟ' (ଶକଟାକୃତି ରୋହିଣୀ ନକ୍ଷତ୍ର), 'ରୋହିଣ୍ୟଷ୍ଟମୀ' (ଭାଦ୍ରପଦ ମାସର କୃଷ୍ଣାଷ୍ଟମୀ), 'ଯୋନି ଦେବତା' (ପୂର୍ବଫାଲ୍ଗୁନି ନକ୍ଷତ୍ର), 'ରାଶିଆ' (ଅମୁକ ରାଶିରେ ଜନ୍ମ ହୋଇଥିବା ବ୍ୟକ୍ତି), 'ରାଶିଗୃହ' (ରାଶିଚକ୍ରରେ ଚିହ୍ନିତ ପ୍ରତ୍ୟେକ ସ୍ୱତନ୍ତ୍ର ସ୍ଥାନ), ରାଶିଚକ୍ର (ଜ୍ୟୋତିଷିକ ଚକ୍ର ବା ବୃତ୍ତ), 'ରାଶି ନକ୍ଷତ୍ର' (ମେଷ ଆଦି ରାଶି ଓ ଅଶ୍ୱିନୀ ଆଦି ନକ୍ଷତ୍ର, ମନୁଷ୍ୟ ଜନ୍ମ ହେବା ସମୟରେ ଚନ୍ଦ୍ର ଯେଉଁ ନକ୍ଷତ୍ରରେ ଥାଆନ୍ତି), ' ରାଶି ନାମ' (ଜାତକ ନାମ), 'ରାଶି ପଚାରିବା' (ବରକନ୍ୟାର ମେଳକ ବୁଝିବାର ପ୍ରଥାବିଶେଷ), 'ରାଶିଫଳ' (ଜନ୍ମ ସମୟରେ ଚନ୍ଦ୍ରଙ୍କର କୌଣସି ରାଶିରେ ଅବସ୍ଥିତି ଯୋଗୁଁ ଜନ୍ମ ହୋଇଥିବା ବ୍ୟକ୍ତିର ସ୍ୱଭାବ ଓ ଭୋଗାଭୋଗ), 'ରାଶିଭୋଗ' (ସୂର୍ଯ୍ୟଚନ୍ଦ୍ର ଆଦି ଗ୍ରହଙ୍କର ଗ୍ରହଚକ୍ରରେ ଭ୍ରମଣ କାଳରେ ନିର୍ଦ୍ଦିଷ୍ଟ ରାଶି ଚିହ୍ନିତ ଗୃହରେ ଅବସ୍ଥାନ), 'ରାଶି ମଣ୍ଡଳ' (ରାଶିଚକ୍ର) ଇତ୍ୟାଦି ଗ୍ରହନକ୍ଷତ୍ର ସମ୍ବନ୍ଧୀୟ ରୂଢ଼ିପ୍ରତ୍ୟୟ ବହୁଳ ବ୍ୟବହୃତ ହୋଇଥାଏ ।

## ୪) ପ୍ରାକୃତିକ ଉପାଦାନ

ପୃଥିବୀର ସବୁ ଦେଶରେ ପ୍ରକୃତି ମହତ୍ତ୍ୱ ପାଇଥାଏ । ଭାରତବର୍ଷ କୃଷିପ୍ରଧାନ ଏବଂ ନାତିଶୀତୋଷ୍ଣ ମଣ୍ଡଳରେ ଅବସ୍ଥିତ ହୋଇଥିବାରୁ ପ୍ରକୃତିକୁ ଅଧିକ ମହତ୍ତ୍ୱ ଦିଆଯାଇଥାଏ । ଏହି ଦେଶରେ ବର୍ଷସାରା ପ୍ରକୃତି ନୂଆ ନୂଆ ରୂପ ସମ୍ଭାରରେ ସୁଶୋଭିତ ହୋଇଥାଏ । ଗ୍ରୀଷ୍ମର ଶୁଷ୍କତା, ବର୍ଷାର ଘନଘଟା, ଶରତର ଅପୂର୍ବ ଶୋଭା, ହେମନ୍ତ ଓ ଶୀତର ହିମ ଶୀତଳତା, ବସନ୍ତର ଅନୁପମ ସୌନ୍ଦର୍ଯ୍ୟର ଅନୁଭୂତି ମନକୁ ଅଭିଭୂତ କରେ । ପ୍ରାଚୀନକାଳରୁ କବିମାନେ ପ୍ରକୃତିର ସୌନ୍ଦର୍ଯ୍ୟକୁ ବିସ୍ତୃତ ଭାବରେ ବର୍ଣ୍ଣନା କରିଯାଇଛନ୍ତି । କବି ଓ ଲେଖକଗଣ ପ୍ରକୃତିର ଅନନ୍ୟ ଶୋଭା ସମ୍ଭାରରେ ଦିବ୍ୟସତ୍ତାର ସ୍ପର୍ଶ ପାଇ ସେଥିପ୍ରତି ନିଜର ଆକର୍ଷଣକୁ ଅଭିବ୍ୟକ୍ତ କରିଛନ୍ତି । ରୂଢ଼ିପ୍ରତ୍ୟୟ କ୍ଷେତ୍ରରେ ମଧ୍ୟ ପ୍ରକୃତି ମହତ୍ତ୍ୱପୂର୍ଣ୍ଣ ସ୍ଥାନ ପ୍ରାପ୍ତ ହୋଇଛି । ପ୍ରାକୃତିକ ଉପାଦାନରେ ପୃଥିବୀ, ଆକାଶ, ଜଳ, ବାୟୁ ଓ ଆକାଶର ଚର୍ଚ୍ଚା ପଞ୍ଚଭୂତର ଅଙ୍ଗୀଭୂତ ହୋଇ ଫଳ, ପନିପରିବା ପ୍ରଭୃତି ଭୋଜ୍ୟପଦାର୍ଥର ଅନ୍ତର୍ଭୁକ୍ତ ହୋଇଯାଇଛି । ଏହା ବ୍ୟତୀତ ପଥର, ନଦୀ, ସମୁଦ୍ର ଆଦି ଅନ୍ୟ ଉପାଦାନ ଓ ଋତୁ

ପରିବର୍ତ୍ତନ, ଝଡ଼ଝଞ୍ଜା ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ମଧ୍ୟ ଉପେକ୍ଷିତ ହୋଇନାହିଁ ।

ପ୍ରଥମେ ପଥର କଥା ଆଲୋଚନାକୁ ନେଲେ ଦେଖାଯାଏ, ପଥର ସମ୍ବନ୍ଧୀୟ ରୂଢ଼ି ପ୍ରତ୍ୟୟର ପ୍ରୟୋଗ ଶକ୍ତ ଓ ଭାରି ପଦାର୍ଥ ହୋଇଥିବାରୁ ତା' ଉପରେ ଅନ୍ୟ କୌଣସି ପଦାର୍ଥର ପ୍ରଭାବ ପଡ଼ିବାରେ ବିଳମ୍ବ ହୁଏ । କୋଉଠି ନିଜ ସ୍ଥୂଳ ରୂପରେ ତ କୋଉଠି ପରୋକ୍ଷ ରୂପରେ ବୁଲେଇ ବଙ୍କେଇ ପଥରର ଗୁଣ ବା ପ୍ରକୃତିକୁ ଲକ୍ଷ୍ୟ କରାଯାଇଛି । ଯେପରି 'ପଥର ନାଆ ଚଢ଼ିବା' (ଜାଣିଶୁଣି ଭୁଲ୍ କାମ କରିବା), 'ପଥର ଦିଅଁ' (କଠୋର ବ୍ୟକ୍ତି), 'ପଥର ଉପରେ ହାତୁଡ଼ି ବାଡ଼େଇବା' (କଠୋର ପରିଶ୍ରମ କରିବା), 'ପଥରରେ ଦୁବ କଅଁଳେଇବା' (ଆଶ୍ଚର୍ଯ୍ୟ ଘଟଣା ଘଟିବା), 'ପଥରରୁ ତେଲ କାଢ଼ିବା', 'ଛାତି ପଥର କରିଦେବା', 'ପାଷାଣ ହୃଦୟ', 'ପଥର କଲିଜା ତରଳିବା', 'ପଥର ହୋଇଯିବା' ଇତ୍ୟାଦି ରୂଢ଼ିପ୍ରତ୍ୟୟ କଠୋର ମନୋଭାବକୁ ଇଂଗିତ କରେ । ରୂଢ଼ି ପ୍ରଯୁକ୍ତ ଶବ୍ଦ ଯଥା- 'ପଥୁରିଆ' (ପଥର କାଟିବା ମିସ୍ତ୍ରୀ), 'ପଥରଗାର' (ଚିରସ୍ଥାୟୀ), 'ପଥର ଗେରୁ' (ଗୈରିକ), 'ପଥର ଚିପୁଡ଼ିବା' (ଅଦାତା ଠାରୁ ଦାନ ଆଶା କରିବା), 'ପଥର ଟାଣରା' (ସମତଳ ବଡ଼ ପଥର), 'ପଥର ପାଣି ହୋଇଯିବା' (ନିଷ୍ଠୁର ହୃଦୟ ତରଳିଯିବା), 'ପଥର ଫୋଡ଼' (ଏକପ୍ରକାର ଗୁଳ୍ମ), 'ପଥର ବାଉରାଣୀ' (ନିରାଶ୍ରୟା ନାରୀ), 'ପଥର ବାସନ' (ପଥର ତିଆରି ବାସନକୁସନ), 'ପଥରମୁଣ୍ଡି' (ଲୁଣି ମତ୍ସ୍ୟବିଶେଷ), 'ପଥର ମୁଣ୍ଡେଇ' (ସର୍ପବିଶେଷ), 'ପଥର ଛାତି' (ନିଷ୍ଠୁର/ଧୈର୍ଯ୍ୟଶୀଳ ହୃଦୟ), 'ପ୍ରସ୍ତର ଫଳକ' (ପଥର ପଟା), 'ପ୍ରସ୍ତରମୟ' (ପଥୁରିଆ) ଇତ୍ୟାଦି । ସେହିପରି ଅଧୁନା ବ୍ୟବହୃତ 'ମାଇଲ୍ ପଥର ଖୁଣ୍ଟି', 'ପଥର ଛେଚା', 'ମୁଗୁନି ପଥର', 'ପଥର ପ୍ରତିମା', 'ପଥର ଆଖି', 'ପଥର ଦାନ୍ତ', 'ପ୍ରସ୍ତରଯୁଗ' ଇତ୍ୟାଦି ।

ଆକାଶ ଓ ସମୁଦ୍ରକୁ ନେଇ ଓଡ଼ିଆ ସାହିତ୍ୟରେ ନାନାପ୍ରକାର ରୂଢ଼ିପ୍ରତ୍ୟୟ ଦେଖିବାକୁ ମିଳେ । ଯଥା - 'ଆକାଶ କକ୍ଷା' (ଦିଗ୍‌ବଳୟ), 'ଆକାଶକୟାଁ' (ଅନିଶ୍ଚିତ ବିଷୟ), 'ଆକାଶକୁ ଉଠାଇବା' (ଅଯଥା ପ୍ରଶଂସା କରିବା), 'ଆକାଶ ଗରୁଡ଼' (ନିର୍ମୂଳୀଲତା), 'ଆକାଶ ବିହାରୀ' (ଶୂନ୍ୟରେ ବିଚରଣ କରୁଥିବା), 'ଆକାଶରକ୍ଷୀ' (ଦୁର୍ଗର ପ୍ରାଚୀର ଅଗ୍ରରେ ଜଗୁଆଳ), 'ଆକାଶ ଲତା' (ବିଜୁଳି) ଏପ୍ରକାର ବହୁ ବ୍ୟଞ୍ଜନା ମିଳିଥାଏ । ସେହିପରି ସମୁଦ୍ରର ରୂଢ଼ିପ୍ରତ୍ୟୟ ବହୁପ୍ରକାରେ ଦେଖିବାକୁ ମିଳେ । ଯଥା 'ସମୁଦ୍ରପାଣି ଚଳୁ କରିବା' (ମହାପ୍ରତାପୀ ବ୍ୟକ୍ତି), 'ସମୁଦ୍ରକୁ ଶଙ୍ଖେପାଣି' (ସମୁଦ୍ରଜଳରେ ଶଙ୍ଖେପାଣି ପୁରେଇଲେ ଜଣାପଡ଼େନାହିଁ), 'ସମୁଦ୍ରକୁ ଡେଇଁବା' (ଜାଣିଶୁଣି ବିପଦକୁ ବରଣ କରିବା), 'ସମୁଦ୍ରଗା' (ନଦୀ), 'ସମୁଦ୍ର ଗୃହ' (ବରୁଣାଳୟ), 'ସମୁଦ୍ର ଚୁଳୁକ' (ଅଗସ୍ତ୍ୟ ମୁନି),

'ସମୁଦ୍ର ତନୟା' (ଲକ୍ଷ୍ମୀ), 'ସମୁଦ୍ରନେଣୀ' (ପୃଥିବୀ), 'ସମୁଦ୍ରଫଳ' (କଇଁଥ), 'ସମୁଦ୍ରମାଳୀ' (ପୃଥିବୀ), 'ସମୁଦ୍ରାନ୍ତା' (କପାଗଛ), 'ସମୁଦ୍ର ସୁଭଗା' (ଗଙ୍ଗା ନଦୀ) ଏହିପରି ବହୁ ଶବ୍ଦ ବ୍ୟଞ୍ଜନା ଓଡ଼ିଆ ଭାଷାର ଗନ୍ତାଘରେ ସାଇତା ଅଛି । 'ସାଗର ଲଙ୍ଘିବା', 'ଦୁଃଖ ସାଗରରେ ବୁଡ଼ିବା', 'ଆନନ୍ଦ ସାଗରରେ ସନ୍ତରଣ କରିବା', 'ଅତଳ ସାଗରରେ ବୋହିଯିବା' ପ୍ରଭୃତି ପ୍ରତ୍ୟୟ ମନୁଷ୍ୟର ମନୋଭାବ ବା ମାନସିକ ଅବସ୍ଥାକୁ ସୂଚାଏ ।

ସେହିପରି ନଦୀ ମଧ୍ୟ ମଣିଷ ଜୀବନର ଧାରା ସହିତ ଓତପ୍ରୋତ ଭାବେ ଜଡ଼ିତ । ଯେପରି 'ବିରହ ନଦୀ', 'ବହନ୍ତା ନଦୀ', 'ଅଶ୍ରୁନଦୀ', 'ନଦୀ ନାବର ସଂଯୋଗ', 'ନଦୀକୂଳ ପ୍ରିୟ' (ଜଳବେତସ), 'ନଦୀଜା' (ଅଗ୍ନିମନ୍ଥ ବୃକ୍ଷ), 'ନଦୀ ଦୋହ' (ନଈ ମାସୁଲ), 'ନଦୀରୟ' (ନଦୀପ୍ରବାହ), 'ନଦୀ ବଙ୍କ' (ନଈବାଙ୍କ) ପ୍ରଭୃତି ବହୁ ରୂଢ଼ିପ୍ରତ୍ୟୟ ଆମ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଛି ।

ବିଶିଷ୍ଟ ନଦୀ ମଧ୍ୟରେ ଗଙ୍ଗା ଓ ଯମୁନାର ଉଲ୍ଲେଖ ମିଳେ । ହିନ୍ଦୁ ଧର୍ମରେ ପବିତ୍ରଗଙ୍ଗାର ବିଶେଷ ମହତ୍ତ୍ୱ ଅଛି । ଗଙ୍ଗାକୁ ନେଇ ବହୁତ ରୂଢ଼ିପ୍ରତ୍ୟୟ ମିଳେ । ଯଥା - 'ଗଙ୍ଗାସ୍ନାନ', 'ଗଙ୍ଗା ପାର କରିବା' ଅର୍ଥାତ୍ ବଡ଼ ଝିଞ୍ଜଟରୁ ମୁକ୍ତ ହେବା । କିନ୍ତୁ 'ଗଙ୍ଗା ପାରି କରିଦେବା' ଅର୍ଥ ଦେଶରୁ ବିତାଡ଼ିତ ହେବା । ସାଧାରଣ ଜୀବନରେ 'ଗଙ୍ଗା ଉଠାଇବା' ବା 'ଗଙ୍ଗାଜଳ ବା ଗଙ୍ଗାଜଳୀ ଉଠାଇବା' ଅର୍ଥ 'ଗଙ୍ଗା ଦୁହାଇ' ବା ଗଙ୍ଗାକୁ ସାକ୍ଷୀ ରଖି ଶପଥ କରିବା । ଗଙ୍ଗାକୁ ପବିତ୍ର ନଦୀ ମାନନ୍ତି । ଗଙ୍ଗାକୁ ପ୍ରତ୍ୟେକ ହିନ୍ଦୁ  କେବଳ ଧର୍ମୀୟ ଦୃଷ୍ଟିକୋଣରୁ ନୁହେଁ, ବ୍ୟକ୍ତିକ ଏବଂ ବଂଶକ୍ରମିକ ବିଶ୍ୱାସରୁ ମାତୃବତ୍ ସଂସ୍କାରବୋଧ ପୋଷଣ କରିଆସିଛି । ଯମୁନାକୁ ହିନ୍ଦୁ ସଂସ୍କାର ସର୍ବଦା ଗଙ୍ଗା ସହିତ ଯୁକ୍ତ କରି ରଖିଥାଏ । ଯେପରି, ଆଖିରୁ 'ଗଙ୍ଗା ଯମୁନା' ବହିଲା ( କାନ୍ଦି ଭସାଇଲା ବା ଲୋତକ ବନ୍ୟା ବୋହିଲା) । ଯମୁନାକୁ ନେଇ କ୍ୱଚିତ୍ ରୂଢ଼ି ପ୍ରତ୍ୟୟ ଦୃଷ୍ଟିଗୋଚର ହେଲେ ସୁଦ୍ଧା 'ଯମୁନାକୂଳିଆ' (ଶ୍ରୀକୃଷ୍ଣ), 'ଯମୁନାଜନକ' (ସୂର୍ଯ୍ୟଦେବ), 'ଯମୁନାଭିଦ୍' (ବଳରାମ), 'ଯମୁନୋତ୍ତରୀ' (ଯମୁନା ନଈର ଉତ୍ପତ୍ତିସ୍ଥଳ), 'ଜୀବନ ଯମୁନା', 'ଯମୁନାତଟ' ବିଶେଷ ବ୍ୟବହୃତ ହୋଇଥାଏ । ଗଙ୍ଗାର ରୂଢ଼ିପ୍ରତ୍ୟୟ ବହୁଧା ବ୍ୟବହୃତ ହେବାର ଦେଖାଯାଏ । ଯଥା - 'ଗଙ୍ଗାକୂଳିଆ' (ଗଙ୍ଗାକୂଳରେ ଜାତ), 'ଗଙ୍ଗାଚିଲ୍ଲୀ' (କଳାମୁଣ୍ଡିଆ ଚିଲପକ୍ଷୀ), (ଭୀଷ୍ମ, କାର୍ତ୍ତିକେୟ), 'ଗଙ୍ଗାଟ' (ବଡ଼ ଚିଙ୍ଗୁଡ଼ି ମାଛ), ଗଙ୍ଗାଟେୟ (ଛୋଟ ଗଙ୍ଗା ମାଛ), 'ଗଙ୍ଗାଜଳ', 'ଗଙ୍ଗାଜଳି' (ଗଙ୍ଗାଜଳିଆ), 'ଗଙ୍ଗାତୁଳସୀ' (ଏକପ୍ରକାର ତୁଳସୀ), 'ଗଙ୍ଗାଦ୍ୱାର' (ହରଦ୍ୱାର), 'ଗଙ୍ଗାଧର' (ଶିବ), 'ଗଙ୍ଗାଧର ରସ' (ସଂଗ୍ରହଣୀ ରୋଗର ଔଷଧ), 'ଗଙ୍ଗାପୁତ୍ର' (ଭୀଷ୍ମ), 'ଗଙ୍ଗାପ୍ରାପ୍ତି' (ମୋକ୍ଷଲାଭ), 'ଗଙ୍ଗାବତାର' (ହରଦ୍ୱାର),

'ଗଙ୍ଗାମାତା', 'ଗଙ୍ଗାମୁଥା' (ଗାଙ୍ଗେୟ ମୃତ୍ତକ), 'ଗଙ୍ଗା ମୃତ୍ତିକା' (ଗଙ୍ଗାନଦୀ ଗର୍ଭର ମାଟି), 'ଗଙ୍ଗା ଯମୁନା' (ନଦୀର ସଂଗମ), 'ଗଙ୍ଗାଯାତ୍ରା' (ମୃତ୍ୟୁମୁଖୀ ଲୋକ), 'ଗଙ୍ଗାସାଗର' (ଗଙ୍ଗା ଓ ସାଗରର ସଙ୍ଗମକ୍ଷେତ୍ର), 'ଗଙ୍ଗାସ୍ନାନ', 'ଗଙ୍ଗାସ୍ନାନ କରିବା' (ଗୁରୁଦାୟିତ୍ୱରୁ ମୁକ୍ତିଲାଭ କରିବା), 'ଗଙ୍ଗୀଭୂତ' (ଗଙ୍ଗାପରି ପବିତ୍ରୀକୃତ), 'ଗଙ୍ଗୋତ୍ତରୀ' (ଗଙ୍ଗାର ଉତ୍ପତ୍ତିସ୍ଥଳ), 'ଗଙ୍ଗୋଦକ' (ଗଙ୍ଗାଜଳ) ଇତ୍ୟାଦି ।

ସମୁଦ୍ର ସହିତ ଜାହାଜ ଓ ନଦୀ ସହ ନୌକାର ଅଭିନ୍ନ ସମ୍ବନ୍ଧ ରହିଛି । ସମୁଦ୍ରକୁ ନେଇ ରୂଢ଼ିପ୍ରତ୍ୟୟ ଅପେକ୍ଷା ନଦୀକୁ ନେଇ ଅଧିକ ରୂଢ଼ିପ୍ରତ୍ୟୟ ଗୋଚର ହୁଏ । ଯଥା - 'ନାଆ କୂଳରେ ଲାଗିବା', 'ନାଆ ଦୋହଲିବା', 'ନାଆ ବୁଡ଼ିବା', 'ମଝିନଈରେ ନାଆ ବୁଡ଼ିବା', 'ନାଆ ଭଉଁରୀରେ ପଡ଼ିବା', 'ନାଆରେ ପାରିହେବା', 'ନାବକେଳି', 'ନାବରା ଦଉଡ଼ି' (ଜାହାଜର ଦୁଇ ପାଖରୁ ମାସ୍ତୁଲ୍‌ର ବେକପର୍ଯ୍ୟନ୍ତ ଟଣାଦଉଡ଼ି), 'ନାବିକ ପଞ୍ଜିକା' (ସମୁଦ୍ରଗାମୀ ନାବିକଙ୍କ ପାଇଁ ପାଞ୍ଜି), 'ନାବ୍ୟ' (ନୌକାଗମ୍ୟ), 'ନୌକାଦଣ୍ଡ' (ଆହୁଲା), 'ନୌକାପଟ' - (ପାଲ), 'ନୌଚର' (ନାବିକ), 'ନୌଜୀବନ' (ନୌକା ଦ୍ୱାରା ଯେ ଜୀବିକା ନିର୍ବାହ କରେ), 'ନୌତାର୍ଯ୍ୟ' (ନୌକାଦ୍ୱାରା ପାରହେବାଯୋଗ୍ୟ), 'ନୌବଳ' (ନୌସେନା), 'ନୌବାହିନୀ' (ନୌସେନାବାହୀ ନୌକାସମୂହ), 'ନୌବ୍ୟସନ' (ଜାହାଜର କୌଣସି ବିପଦ), 'ନୌଯାୟୀ' (ଯେ ନୌକାରେ ଯାତ୍ରା କରନ୍ତି) ଏହିପରି ବହୁ ବାକ୍ୟ ବ୍ୟବହାର ହୋଇଥାଏ ।

ସମୁଦ୍ର ଓ ଜାହାଜ ବିଷୟକ 'ରୂଢ଼ିବାକ୍ୟ' ଯଥା- 'ବୋଇତବନ୍ଦାଣ', 'ପୋତକାର' (ନାବିକ), 'ପୋତପାଳ' (ଜାହାଜର କପ୍ତାନ), 'ପୋତପ୍ଲବ' (ଯେ ନୌକାଦ୍ୱାରା ନଦୀ ଆଦି ପାରିହୁଏ), 'ପୋତବାହ' (ନୌପରିଚାଳକ), 'ପୋତରକ୍ଷ' (ଡଙ୍ଗାର ମଙ୍ଗ), 'ପୋତାଶ୍ରୟ' (ବନ୍ଦର), 'ପୋତାରୋହୀ' (ଜାହାଜର ଯାତ୍ରୀ), 'ବୋଇତାଳ' (ଜାହାଜର ମାଲିକ), 'ବୋଇତକୁନ୍ଦ' (ନଦୀ ମୁହାଣରେ ନିର୍ମିତ ଯେଉଁ କୁନ୍ଦ ଦୁଇଟି ମଧ୍ୟରେ ବୋଇତ ଆଶ୍ରୟ ନିଏ), 'ଜାହାଜ ପଡ଼ିଆ' (ଯେଉଁଠି ଜାହାଜ ସବୁ ଲାଗନ୍ତି), 'ଜାହାଜାତି' (ଜାହାଜ ସମ୍ବନ୍ଧୀୟ), 'ଜାହାଜିଆ' (ପୋତାଧ୍ୟକ୍ଷ, ବୋଇତିଆଳ), 'ଜାହାଜୀଗୁଆ' (ଏକ କଡ଼ାଗୁଆ) ଇତ୍ୟାଦି ଏବଂ ସମୁଦ୍ର ବିଷୟକ ବହୁ ରୂଢ଼ିପ୍ରତ୍ୟୟ ମଧ୍ୟରୁ କିଛି ଯଥା - 'ସମୁଦ୍ରକାଞ୍ଚୀ' (ପୃଥିବୀ), 'ସମୁଦ୍ରକାନ୍ତା' (ସମୁଦ୍ରରେ ପଡ଼ିଥିବା ନଦୀ), 'ସମୁଦ୍ରକୁ ପେଲିଦେବା' (କୌଣସି ଲୋକକୁ ବିପଦସ୍ଥାନରେ ଛାଡ଼ିଦେବା), 'ସମୁଦ୍ରମାଳୀ' (ପୃଥିବୀ), 'ସାଗରନେମୀ' (ପୃଥିବୀ), 'ସାଗରପେଷା' (ବର୍ଣ୍ଣଶଙ୍କର ଜାତିବିଶେଷ), 'ସାଗରକେଶରୀ' (ଜାହାଜ), 'ସାଗରଗାମିନୀ' (ନଦୀ), 'ସାଗର ସଙ୍ଗମ'

(ଯେଉଁଠାରେ ନଦୀ ସମୁଦ୍ରରେ ପଡ଼ିଥାଏ), 'ସାଗର ସିନ୍ଧୁ ସଙ୍ଗମ' (ସିନ୍ଧୁନଦର ମୁହାଣ), 'ସାଗରୋତ୍ଥ' (ସୈନ୍ଧବ ଲବଣ), 'ସାଗରାମ୍ବର' (ପୃଥିବୀ) ଇତ୍ୟାଦି ।

ଦିଗ ଚତୁଷ୍ଟୟ ଯଥା - ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣର ଉଲ୍ଲେଖ ରୂଢ଼ି ପ୍ରତ୍ୟୟରେ ଦେଖିବାକୁ ମିଳେ । ଯେପରି ଦିଗ ବିଷୟରେ'ଦିକ୍‌ଚକ୍ର' (ଦିଗ୍‌ବଳୟ), 'ଦିଗ୍ ପଟ' (ଦିଗମ୍ବର), 'ଦିକ୍‌ପତି' (ଦଶଦିଗପାଳ),'ଦିକପାଳ' (ଦିକ୍‌ପତି, ଅସାଧାରଣ କ୍ଷମତାଶାଳୀବ୍ୟକ୍ତି), 'ଦିକ୍‌ଶୂଳ' (ଶାସ୍ତ୍ର ମତରେ ବିଶେଷ ବିଶେଷ ଦିଗକୁ ଯାତ୍ରା କରିବାରେ ଅଶୁଭବାର ।), 'ଦିକ୍‌ସାଧନ' (ଯେଉଁ ଉପାୟ ଦ୍ୱାରା ଭିନ୍ନ ଭିନ୍ନ ଦିଗମାନଙ୍କର ସ୍ଥାନ ଜଣ୍ଟେ), 'ଦିକ୍‌ସୁନ୍ଦରୀ' (କନ୍ୟାରୂପେ କଳ୍ପିତ ଦିଗସମୂହ) ଇତ୍ୟାଦି । 'ପୂର୍ବକ', 'ପୂର୍ବକଥିତ', 'ପୂର୍ବକରୀ' (ଐରାବତ), 'ପୂର୍ବକାୟ' (ନାଭିର ଉପରେ ଥିବା ଶରୀରାଂଶ), 'ପୂର୍ବଚିତ୍ତି' (ଅପ୍ସରାବିଶେଷ), 'ପୂର୍ବଦେବ' (ପିତୃଲୋକ), 'ପୂର୍ବ ନିରୂପଣ' (ଭାଗ୍ୟ), 'ପଶ୍ଚିମ ଅବସ୍ଥା' (ମୃତ୍ୟୁ ସମୟ), 'ପଶ୍ଚିମ ଘାଟ', 'ପଶ୍ଚିମ ଦକ୍ଷିଣ' (ନୈର୍ଋତ କୋଣ), 'ପଶ୍ଚିମ ଦୁଆର' (ଗୁହ୍ୟ ଦ୍ୱାର) ଇତ୍ୟାଦି । ସେହିପରି ଉତ୍ତରର ପ୍ରୟୋଗରେ ପ୍ରଚୁର ରୂଢ଼ିପ୍ରତ୍ୟୟ ମିଳେ । ତନ୍ମଧ୍ୟରୁ 'ଉତ୍ତର ଅୟନାନ୍ତ' (କଳ୍ପିତ କର୍କଟରେଖା), 'ଉତ୍ତର କଟିବନ୍ଧ' (ଉତ୍ତର ମେରୁଠାରୁ ଉତ୍ତର ସମକଟିବନ୍ଧର ଶେଷସୀମା ପର୍ଯ୍ୟନ୍ତ ଭୂଭାଗ), 'ଉତ୍ତରକାଣ୍ଡ' (ରାମାୟଣର ସପ୍ତମଖଣ୍ଡ), 'ଉତ୍ତରଙ୍ଗ' (ଦ୍ୱାରୋପରିସ୍ଥ ବକ୍ରକାଷ୍ଠ), 'ଉତ୍ତରଜୀବୀ' (ଅନ୍ୟମାନଙ୍କର ମୃତ୍ୟୁ ପରେ ଯେ ବଞ୍ଚିରହେ), 'ଉତ୍ତରପକ୍ଷ' (ବିପରୀତ ପକ୍ଷ), 'ଉତ୍ତର ଫାଲ୍‌ଗୁନୀ' (ଦ୍ୱାଦଶ ନକ୍ଷତ୍ର), 'ଉତ୍ତର ଭାଦ୍ରପଦ' (ଷଡ଼୍‌ବିଂଶ ନକ୍ଷତ୍ର), 'ଉତ୍ତର ମୀମାଂସା' (ବେଦାନ୍ତ), 'ଉତ୍ତର ମେଘ' (ମେଘଦୂତ କାବ୍ୟର ଶେଷାର୍ଦ୍ଧ), 'ଉତ୍ତର ଷୋଡ଼ଶ' (ଅନ୍ତ୍ୟେଷ୍ଟିକ୍ରିୟାରେ ଶେଷ ଦୁଇ ଦିନର ଆଚରିତ କର୍ମ), 'ଉତ୍ତର ସାକ୍ଷୀ' (ଯେ ତା'ର ମୁହଁରୁ ଶୁଣି ସାକ୍ଷୀ ଦିଏ), 'ଉତ୍ତର ସାଧକ' (ସାହାଯ୍ୟକାରୀ ବ୍ୟକ୍ତି), 'ଉତ୍ତରାଧିକାର', 'ଉତ୍ତରାଭାସ' (ପ୍ରତିବାଦୀର ମିଛ ଜବାବ) ପ୍ରଭୃତି କିଛି ରୂଢ଼ି-ପ୍ରତ୍ୟୟ ଏବଂ ତନ୍ମଧ୍ୟରୁ ଅଧିକ ସଂଖ୍ୟକ ପୁରାଣ ବର୍ଣ୍ଣିତ । ଦକ୍ଷିଣଦିଗକୁ ନେଇ ରୂଢ଼ିପ୍ରତ୍ୟୟପ୍ରଯୁକ୍ତ ଶବ୍ଦ ଓଡ଼ିଆ ଭାଷାରେ ଅସଂଖ୍ୟ ଦେଖାଯାଏ । ତନ୍ମଧ୍ୟରୁ ଉଦାହରଣ ସ୍ୱରୂପ- 'ଦକ୍ଷିଣ କାଳୀ' (ଦେବୀ ବିଶେଷ), 'ଦକ୍ଷିଣ କବାଟ' (ଉପାଧି), 'ଦକ୍ଷିଣ ନାୟକ' (ଯେଉଁ ନାୟକ ଅନେକ ନାୟିକାଙ୍କ ଠାରେ ସମାନୁରାଗୀ), 'ଦକ୍ଷିଣ ରାଢ଼ୀ' (ମେଦିନୀପୁର ଅଞ୍ଚଳରେ ବାସ କରୁଥିବା ବଙ୍ଗାଳୀ କାୟସ୍ଥମାନଙ୍କର ଏକ ଶ୍ରେଣୀ), 'ଦକ୍ଷିଣ ସାହିଆ ରଥ' (ପୁରୀ ଜିଲ୍ଲାର ବୈଦିକ ବ୍ରାହ୍ମଣମାନଙ୍କର ଏକଶ୍ରେଣୀ), 'ଦକ୍ଷିଣ ହସ୍ତ ବ୍ୟାପାର' (ଭୋଜନ ଓ ସେବନ), 'ଦକ୍ଷିଣା' (ପୁରୋହିତକୁ ଦିଆଯିବା ବିଦାକି, ଅନୁରକ୍ତା ନାୟିକା), 'ଦକ୍ଷିଣାଚଳ'

(ମଳୟଗିରି), 'ଦକ୍ଷିଣାବର୍ତ୍ତ' (ଯାହାର ଡାହାଣ ଆଡ଼କୁ ଭଉଁରୀ ଥାଏ), 'ଦକ୍ଷିଣା ମୂର୍ତ୍ତି' (ତନ୍ତ୍ର ଅନୁସାରେ ଶିବଙ୍କ ମୂର୍ତ୍ତି), 'ଦକ୍ଷିଣାରଣ୍ୟ' (ଦଣ୍ଡକାରଣ୍ୟ), 'ଦକ୍ଷିଣା ସଂକ୍ରାନ୍ତି' (ଦକ୍ଷିଣାୟନ ସଂକ୍ରାନ୍ତି), 'ଦକ୍ଷିଣୀଦାରୀ' (ଦାକ୍ଷିଣାତ୍ୟ ଦେଶୀୟ ନର୍ତ୍ତକୀ), 'ଦକ୍ଷିଣ୍ୟ' (ନୈପୁଣ୍ୟ, ଆନୁକୂଲ୍ୟ) ଇତ୍ୟାଦି ।

ଋତୁଚକ୍ରରେ ରୂଢ଼ିପ୍ରତ୍ୟୟର ବହୁଧା ଶବ୍ଦରୁ କେତେକ ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା । ଯଥା ଗ୍ରୀଷ୍ମଋତୁର - 'ଗ୍ରୀଷ୍ମନିବାସ', 'ଗ୍ରୀଷ୍ମ କଟିବନ୍ଧ' (ବିଷୁବରେଖାର ଉଭୟପାର୍ଶ୍ୱରେ ୨୩½ ଡିଗ୍ରୀ ଅଂଶ ବ୍ୟାପୀ ଗ୍ରୀଷ୍ମମଣ୍ଡଳ), ଗ୍ରୀଷ୍ମଧାନ (ଡାକୁଅଧାନ), 'ନିଦାଘଚର' (ସୂର୍ଯ୍ୟ), 'ନିଦାଘ ମୂର୍ଖ' (ନିଦାମୂର୍ଖ), 'ନିଦାଘ-ସିନ୍ଧୁ' (ଶୁଷ୍କ ନଦୀ) ଇତ୍ୟାଦି । ବର୍ଷାଋତୁର - 'ବର୍ଷାଘନ' (ବରଷୁଥିବା ମେଘ), 'ବର୍ଷା ଘୋଷ' (ମେଘ, ବେଙ୍ଗ), 'ବର୍ଷାଙ୍ଗୀ' (ନାଲି ପୁରୁଣୀ ଶାଗ), 'ବର୍ଷାପ୍ରିୟ', 'ବର୍ଷାଭୂ' (ଯାହା ବର୍ଷାକାଳରେ ଜନ୍ମେ), 'ବର୍ଷୀୟସ' (ନବେବର୍ଷରୁ ଊର୍ଦ୍ଧ୍ୱ ବୟସ୍କ ବ୍ୟକ୍ତି), 'ବର୍ଷୁକ' (ବର୍ଷଣଶୀଳ) ଆଦି କେତେକ ରୂଢ଼ିପ୍ରତ୍ୟୟ । ଶରତ ଋତୁର, 'ଶରଦ୍ ପଦ୍ମ' (ଶ୍ୱେତପଦ୍ମ), 'ଶରଦ୍ ପର୍ବ' (କୁମାର ପୂର୍ଣ୍ଣିମା, ଦୁର୍ଗାପୂଜା), 'ଶରଦ' (ସରସ୍ୱତୀଙ୍କ ବୀଣା), 'ଶରଦିଜ' (ଶାରଦୀୟ), 'ଶରଦ୍ୱାନ୍' (ଗୌତମ ମୁନିଙ୍କ ପୁତ୍ର), 'ଶରଦନ୍ତ' (ହେମନ୍ତ ଋତୁ), ଇତ୍ୟାଦି । ଶୀତଋତୁରେ ବୋଧହୁଏ ଥଣ୍ଡାପାଇଁ 'ରୂଢ଼ିପ୍ରତ୍ୟୟ ଅନ୍ୟାପେକ୍ଷା ଅଳ୍ପ ସଂଖ୍ୟକ ମନେହୁଏ । ଯଥା - 'ଜାଡ଼ୁଆଳି' (ଶୀତବସ୍ତ୍ର), 'ଜାଡ଼ୁଆ ଗୋସାଇଁ' (ଶିବ), 'ଶୀତକ' (ସୁଖୀ ମନୁଷ୍ୟ, ବୃଶ୍ଚିକ), 'ଶୀତକର' (ଚନ୍ଦ୍ର, କର୍ପୂର), 'ଶୀତପାଛଡ଼ା' (ଶୀତଚାଦର), 'ଶୀତପୀତ' (ଚର୍ମରୋଗ ବିଶେଷ), 'ଶୀତପ୍ରଧାନ' (ଅତିରିକ୍ତ ଶୀତଳି), 'ଶୀତଫଳ' (ପାଳୁ, ଗୁଡ଼ଫଳ ବୃକ୍ଷ), 'ଶୀତରଶ୍ମି' (ଚନ୍ଦ୍ର), 'ଶୀତରସ' (ଦୋରୁଅରୁ ପ୍ରସ୍ତୁତ ମଦ୍ୟ), 'ଶୀତଳ ଉପହାର' (ଜଳଖିଆ), 'ଶୀତଳ ତୁଣ୍ଡି' (ବିବାହ ପରେ ବରକନ୍ୟା ଦୁହିଁଙ୍କର ଏକତ୍ର ଜଳପାନ), 'ଶୀତଳ ପ୍ରକୃତିକ' (ଶାନ୍ତ ସ୍ୱଭାବର), 'ଶୀତଳ ଷଷ୍ଠୀ' (ଜ୍ୟେଷ୍ଠ ଶୁକ୍ଳଷଷ୍ଠୀ), 'ଶୀତଳାଇବା' (ଥଣ୍ଡା କରିବା), 'ଶୀତଶିବ' (ସୈନ୍ଧବଲବଣ), 'ଶୀତସିଲ୍ଲ' (ବଡ଼ଦିନ ଛୁଟି), 'ଶୀତାଶ୍ମା' (ଚନ୍ଦ୍ରକାନ୍ତ ମଣି), 'ଶୀତାଂଶୁ' (ଚନ୍ଦ୍ର, କର୍ପୂର), 'ଶୀତାଂଶୁ ବଦନା' (ଚନ୍ଦ୍ରମୁଖୀ), 'ଶୀତ ଭୀରୁ' (ମଲ୍ଲିକା, ମୁଗୁରା, ମଲ୍ଲୀ, ଇନ୍ଦ୍ରବଲ୍ଲୀ) 'ଶୀତୋଦକ' (ଥଣ୍ଡାପାଣି) ଇତ୍ୟାଦି ।

'ଋତୁରାଜ' ବସନ୍ତର ବହୁ ନାମ । ସେହି ଅନୁପାତରେ ରୂଢ଼ିପ୍ରତ୍ୟୟ ମଧ୍ୟ ଅନେକ । ଯଥା - 'ବସନ୍ତକ' (ଫଣଫଣା), 'ବସନ୍ତଗୁଣ୍ଡି' (କମଳାଗୁଣ୍ଡି), 'ବସନ୍ତ ଗୁଣ୍ଡିଚା' (ରୁକୁଣା ରଥଯାତ୍ରା), 'ବସନ୍ତ ଘୋଷ' (କୋକିଳ), 'ବସନ୍ତ ଚଢ଼େଇ' (ହଳଦୀବସନ୍ତ), 'ବସନ୍ତ

ତିଳକ' (୧୪ ବର୍ଣ୍ଣ ବିଶିଷ୍ଟ ସଂସ୍କୃତ ଛାନ୍ଦ ବିଶେଷ), 'ବସନ୍ତ ଦୂତ' (କୋକିଳ,କାମଦେବ), 'ବସନ୍ତ ଦୂତିକା' (କୋକିଳା, ପାଟଳୀଗଛ, ମାଧବୀଲତା, ଗଣିକାରି), 'ବସନ୍ତ ଦ୍ରୁ' (ଆମ୍ବଗଛ), 'ବସନ୍ତ ପଞ୍ଚମୀ' (ଶ୍ରୀପଞ୍ଚମୀ) 'ବସନ୍ତ ପବନ' (ମଳୟାନିଳ), 'ବସନ୍ତ ବନ୍ଧୁ' (କାମଦେବ), 'ବସନ୍ତ ବସନ' (ହଳଦିଆ ଲୁଗା), 'ବସନ୍ତ ବ୍ରତ' (କୋକିଳ), 'ବସନ୍ତମୁହାଁ' (ବସନ୍ତ ଦାଗ ଥିବା ମୁହଁ), 'ବସନ୍ତରା' (ବସୁଧାରା), 'ବସନ୍ତରା ଘଡ଼ି' (ପଣାସଂକ୍ରାନ୍ତିଠାରୁ ମାସକ ପର୍ଯ୍ୟନ୍ତ ତୁଳସୀ ଚଉରା ଉପରେ ବନ୍ଧା ହୋଇଥିବା ସଚ୍ଛିଦ୍ର ଘଟ), 'ବସନ୍ତ ରାସ' (ଶ୍ରୀକୃଷ୍ଣଙ୍କର ବସନ୍ତକାଳୀନ ଉତ୍ସବ ବିଶେଷ), 'ବସନ୍ତାଈ' (ଶୀତଳା ଦେବୀ), 'ବସନ୍ତାବତାର' (ବସନ୍ତ ଋତୁର ଆରମ୍ଭ), 'ବସେନ୍ତାଇଁ' (ବାହାଡ଼ା ଗଛ), 'ବସନ୍ତିଆ' (ବସନ୍ତକାଳ ସମ୍ବନ୍ଧୀୟ, ହଳଦିଆ ରଙ୍ଗଯୁକ୍ତ), 'ବସନ୍ତୋତ୍ସବ' (ମଦନୋତ୍ସବ, ହୋଲି), 'ବସନ୍ତୀ' (କୋକିଳ, ବସନ୍ତିଆ ପକ୍ଷୀ), 'ବାସନ୍ତ' (ମଳୟ ପବନ, କୋକିଳ, ଓଟ, ମୃଗ), 'ବାସନ୍ତି' (ଗୁଳ୍ମବିଶେଷ, ମନୋନୀତ, ଭଲ ପାଉଥିବା), 'ବାସନ୍ତିକ' (ବିଦୂଷକ), 'ଫଗୁଣ ଫୁଟା' (ଶୂଦ୍ର ଜାତିରେ ବଢ଼ିଲା କନ୍ୟା ପ୍ରଥମେ ଶାଶୁଘରୁ ବାପ ଘରକୁ ଫଗୁଣ ମାସରେ ଆସିବା), 'ଫଗୁ ଦଶମୀ' (ଫାଲ୍ଗୁନ ମାସର ଶୁକ୍ଳ ଦଶମୀ), 'ଫଗୁ ଖେଳ' (ଦୋଳ ସମୟରେ ହିନ୍ଦୁମାନଙ୍କର ଫଗୁଉତ୍ସବ), 'ଚଇତ ନିଆଁ' (ଚୈତ୍ରମାସର ନିଆଁ), 'ଚଇତି ଘୋଡ଼ା' (ଚୈତ୍ରପୂର୍ଣ୍ଣମୀରେ କେଉଟମାନେ ଚଇତିଘୋଡ଼ା ତିଆରି କରି ଉତ୍ସବ ପାଳନ କରନ୍ତି ।) 'ଚଇତି ମାଡା' (ଚୈତ୍ର ମାସ ବର୍ଷା) ଇତ୍ୟାଦି ।

ଫୁଲ, ଫଳ ପ୍ରସଙ୍ଗରେ ରୂଢ଼ିର ପ୍ରୟୋଗ - 'ପୁଷ୍ପକ ବିମାନ' (କୁବେରଙ୍କ ରଥ), 'ପୁଷ୍ପକରଣ୍ଡକ' (ଫୁଲଡାଲା, ଉଜ୍ଜୟିନୀ ନଗରସ୍ଥ ମହାକାଳ ଶିବଲିଙ୍ଗଙ୍କର ପ୍ରସିଦ୍ଧ ଉଦ୍ୟାନ), 'ପୁଷ୍ପକାଳ' (ରାତ୍ରିକାଳ, ବସନ୍ତ ସମୟ), 'ପୁଷ୍ପକାସୀଶ' (ଅଳ୍ପ ହଳଦିଆ ହୀରାକଷ), 'ପୁଷ୍ପକୀଟ' (ଭ୍ରମର), 'ପୁଷ୍ପକେତନ' (କାମଦେବ), 'ପୁଷ୍ପଗର୍ଭକ' (ଫୁଲତୋଡ଼ା), 'ପୁଷ୍ପଗିରି' (ବରୁଣଦେବ ବାସ କରୁଥିବା ପର୍ବତ), 'ପୁଷ୍ପଗୁଚ୍ଛ' (ଫୁଲତୋଡ଼ା), 'ପୁଷ୍ପଘାତକ' (ବାଉଁଶ), 'ପୁଷ୍ପଚୟନ' (ଫୁଲତୋଳିବା), 'ପୁଷ୍ପଚାପ' (କାମଦେବ, କନ୍ଦର୍ପଙ୍କ ଧନୁ), 'ପୁଷ୍ପଚାମର' (କିଆ ଓ କେତକୀ ଗଛ, ଦଅଣା ଗଛ), 'ପୁଷ୍ପଜୀବୀ' (ମାଳୀ, ଫୁଲ ବ୍ୟବସାୟୀ), ପୁଷ୍ପଦନ୍ତ' (ବାୟୁକୋଣସ୍ଥ ଦିଗଗଜ, ଗନ୍ଧର୍ବବିଶେଷ, ନାଗବିଶେଷ), 'ପୁଷ୍ପଦାମ' (ଫୁଲମାଳା, ୧୯ ଅକ୍ଷର ପାଦବିଶିଷ୍ଟ ଛନ୍ଦୋବିଶେଷ), 'ପୁଷ୍ପଦ୍ରବ' (ପୁଷ୍ପରସ, ମହୁ, ମକରନ୍ଦ), 'ପୁଷ୍ପଧନ୍ୱା' (କାମଦେବ), 'ପୁଷ୍ପପଥ' (ସ୍ତ୍ରୀ ଜନନେନ୍ଦ୍ରିୟ), 'ପୁଷ୍ପପରାଗ' (ଫୁଲର ରେଣୁ), 'ପୁଷ୍ପ ପାଳକ' (ପଶୁପାଳକ), 'ପୁଷ୍ପଫଳ' (କଇଁଥ, ପାଣିକଖାରୁ, ଫୁଲ ଓ ଫଳ), 'ପୁଷ୍ପବଟୀ'

(ରଜୋବତୀ), 'ପୁଷ୍ପବନ୍ତ' (ଚନ୍ଦ୍ର ଓ ସୂର୍ଯ୍ୟ), 'ପୁଷ୍ପବାଟିକା' (ଫୁଲ ବଗିଚା), 'ପୁଷ୍ପବାଣ' (କାମଦେବ, କନ୍ଦର୍ପର ଶର), 'ପୁଷ୍ପବାନ୍' (ପୁଷ୍ପିତ), 'ପୁଷ୍ପବାସ' (ଫୁଲର ବାସନା), 'ପୁଷ୍ପବାସ ବଟିକା' (ଶର୍ଦ୍ଦିର ଔଷଧ), 'ପୁଷ୍ପବିଲଗ' (ରଜୋବତୀ), 'ପୁଷ୍ପବିଷ' (ପାଞ୍ଚପ୍ରକାର ବିଷାକ୍ତ ଫୁଲ), 'ପୁଷ୍ପଭେଦ' (ପ୍ରଥମ ରଜୋଦର୍ଶନ),'ପୁଷ୍ପମଞ୍ଜରିକା' (ନୀଳପଦ୍ମ), 'ପୁଷ୍ପମାସ' (ଚୈତ୍ରମାସ, ବସନ୍ତକାଳ), 'ପୁଷ୍ପରଜ' (ଫୁଲରେଣୁ), 'ପୁଷ୍ପରାଗ' (ପଦ୍ମରାଗମଣି, ପୋଖରାଜ), 'ପୁଷ୍ପଲିହ' (ଭ୍ରମର), 'ପୁଷ୍ପଶକଟୀ' (ଦୈବବାଣୀ, ପୁଷ୍ପବୃଷ୍ଟି), 'ପୁଷ୍ପଶୂନ୍ୟା' (ହେଞ୍ଜୋଳି), 'ପୁଷ୍ପହାସ' (ବିଷ୍ଣୁ, ଫୁଲ ଫୁଟିବା), 'ପୁଷ୍ପହାସା' (ରତୁମତୀ ସ୍ତ୍ରୀ), 'ପୁଷ୍ପହୀନା' (ବନ୍ଧ୍ୟା ସ୍ତ୍ରୀ, ଡିମ୍ବିରି ଗଛ) ।

ବୃକ୍ଷଲତା ଆଦିରୁ ଜାତ ବୀଜ ବିଶିଷ୍ଟ ବସ୍ତୁକୁ ଫଳ କୁହାଯାଏ । ଆମ ଦେଶ ନିରାମିଷାଶୀ ହିସାବରେ ପୃଥିବୀରେ ବିଶେଷ ସ୍ଥାନ ଅଧିକାର କରିଥିବା ସତ୍ତ୍ୱେ ଗ୍ରୀଷ୍ମକଟିବନ୍ଧରେ ଅବସ୍ଥିତି ହେତୁ ଫଳର ବିବିଧତା ଶୀତପ୍ରଧାନ ଅଞ୍ଚଳ ଅପେକ୍ଷା ଊଣା । ଏହାସତ୍ତ୍ୱେ ଫଳର ମହତ୍ତ୍ୱ ଓ ବିବିଧତ୍ୱ କାଶ୍ମୀର ଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ, କାମରୂପଠାରୁ କଚ୍ଛ ପର୍ଯ୍ୟନ୍ତ ପରିଦୃଷ୍ଟ । ବନଜାତ ଓ ଔଷଧୀୟ ଫଳ ପାଇଁ ଭାରତ ପୃଥିବୀ ବିଖ୍ୟାତ ହେଲେ ମଧ ରୂଢ଼ି ପ୍ରତ୍ୟୟରେ ସେହି ପରିମାଣର ପ୍ରୟୋଗ ଦେଖାଯାଏ ନାହିଁ । ଉଦ୍ଭିଜ୍ଜ ଫଳ ଓ କର୍ମଫଳର ଉତ୍ପାଦନ ଧାରାରେ ତୁଲ୍ୟତା ଥିବା ହେତୁ ରୂଢ଼ି ପ୍ରତ୍ୟୟର ଅର୍ଥ ଉଦ୍ଭିଜ୍ଜ ଫଳ ଓ କର୍ମଫଳ ଉଭୟ ପ୍ରଯୁକ୍ତି ଏକତ୍ରୀକୃତ ଭାବେ ଦେଖିବାକୁ ମିଳେ । ଯେପରି 'ଫଳେନ ପରିଚିୟତେ' ବା 'ଯେମିତି କର୍ମ ସେମିତି ଫଳ' କର୍ମଫଳକୁ ନିର୍ଦ୍ଦେଶ କରେ, ଅନ୍ୟ ଅର୍ଥରେ ଉଦ୍ଭିଜ୍ଜ ଫଳକୁ ମଧ ବୁଝାଏ । ତଥାପି ଜଣାପଡ଼େ ବାକ୍ୟରେ । ଯେପରି ଗଛରେ ଫଳ ଫଳେ, ପରୀକ୍ଷାରେ ଫଳ ବାହାରେ । ରୂଢ଼ି ପ୍ରତ୍ୟୟ ହିସାବରେ - 'ଫଳ କଣ୍ଟକ' (ପଣସ, ଘର ପୋଡ଼ିଆ ଗଛ), 'ଫଳ କନ୍ଦଳ' (ଫଳମୂଳ), 'ଫଳକେଶର' (ନଡ଼ିଆ ଗଛ), 'ଫଳତ୍ରୟ' (ହରିଡ଼ା, ବାହାଡ଼ା, ଅଁଳା), 'ଫଳଦ' (ବୃକ୍ଷ), 'ଫଳଦର୍ଶୀ' (ଯେ ଶେଷ ଫଳକୁ ଦେଖେ), 'ଫଳ ଧରିବା' (ଫଳିବା), 'ଫଳନ୍ତା ଗଛ' (ଫଳୁଥିବା ଗଛ), 'ଫଳ ପାକାନ୍ତ' (ଫଳ ପାଚିଲେ ଯେଉଁସବୁ ଗଛ ମରିଯାଏ - ଧାନ, କଦଳୀ, ବାଉଁଶ), 'ଫଳପ୍ରଦ' (ଫଳଦାତା), 'ଫଳଫୁଲୁରି' (ପରିବାପତ୍ର), 'ଫଳବନ୍ତ' (ଫଳୁଥିବା), 'ଫଳଭୁକ୍', (ଯେ ଫଳ ଖାଇ ଜୀବନଧାରଣ କରେ ।), 'ଫଳମୁଖ' (ଫଳିବାକୁ ଆରମ୍ଭ ହେବା), 'ଫଳଶାଳୀ' (ଫଳୁଥିବା), 'ଫଳହାରୀ' (ଯେ ଫଳସଂଗ୍ରହ କରେ), 'ଫଳାଗମ' (ଶରଦ୍ କାଳ, ଗଛରେ ନୂଆ ଫଳ ହେବା ସମୟ), 'ଫଳାଶନ' (ଫଳାହାରୀ, ଶୁକପକ୍ଷୀ), 'ଫଳେନ୍ଦ୍ର' (ରାଜଜାମୁ), 'ଫଳୋପଦାୟକ' (ଫଳଦାୟକ) ଇତ୍ୟାଦି ସସମାସ ଶବ୍ଦ 'ରୂଢ଼ି

ପ୍ରତ୍ୟୟ'ରେ ଉଲ୍ଲିଖିତ ହେଲା ।

ବର ଓ ଅଶ୍ୱତ୍ଥ ଗଛ ସହିତ ଧର୍ମ ଭାବ ଜଡ଼ିତ ଥିବା ହେତୁ ଏହି ଗଛମାନଙ୍କୁ କାଟିବା ବାରଣ । ଭଗବାନ ବାସୁଦେବ ଅଶ୍ୱତ୍ଥ ଗଛରେ ଅଧିଷ୍ଠିତ ବୋଲି ବିଶ୍ୱାସ କରାଯାଏ । ପ୍ରେତଯୋନୀ ମଧ ଅଶ୍ୱତ୍ଥରେ ବାସ କରୁଥିବାର ବିଶ୍ୱାସ କରାଯାଏ । ଏଣୁ ବରଗଛ ଓ ଅଶ୍ୱତ୍ଥ ବୃକ୍ଷର କାଳ୍ପନିକ ବିବାହକୁ 'ବରଓସ୍ତ ବିଭା' କୁହାଯାଏ । ବରଗଛକୁ କନ୍ୟା ଓ ଅଶ୍ୱତ୍ଥ ଗଛକୁ ବର ରୂପେ ଗ୍ରହଣ କରାଯାଏ । ଓସ୍ତପତ୍ର ପତଳା ଓ ଲମ୍ବା, ଏଣୁ ସାମାନ୍ୟ ପବନରେ ଓସ୍ତ ପତ୍ର ଟଳ ଟଳ ହୁଏ ଓ କମ୍ପେ । ତେଣୁ ରୂଢ଼ି ପ୍ରତ୍ୟୟରେ ଓସ୍ତର ବିଶେଷ ଉଲ୍ଲେଖ ନଥିଲେ ମଧ ସମ୍ଭବତଃ ଭୀତବ୍ୟକ୍ତିର ଛାତିକୁ ଓସ୍ତପତ୍ର ସହିତ ସମାନତାକୁ ଇଂଗିତ କରାଯାଇଛି । ଯଥା - 'ଓସ୍ତପତ୍ର ଭଳି କମ୍ପିବା', 'ଓସ୍ତପତର ପରି ମନ ଦୋହଲିବା' ଇତ୍ୟାଦି । ବବୁର ଗଛ (କଣ୍ଟାକୁସୁମ ଗଛ)କୁ ନେଇ ଓଡ଼ିଆ ସାହିତ୍ୟରେ ଅଧିକ ରୂଢ଼ି ପ୍ରତ୍ୟୟ ଦେଖାଯାଏ ନାହିଁ । ବବୁରୀ ଗଛ କଣ୍ଟାଳିଆ । କାହାରି ପାଇଁ 'ରାସ୍ତାରେ ବବୁରୀ କଣ୍ଟା ପକେଇବା' ବିରୋଧୀ ଲୋକକୁ ହଇରାଣ କରିବା ଅର୍ଥରେ ପ୍ରଯୁକ୍ତ । ମାତ୍ର 'ବବୁରୀ ଲଗେଇ ଆମ୍ବ ପାଇଁ ଆଶା କରିବା ନିରର୍ଥକ' - ଗୋଟିଏ ପ୍ରକାର କାମ କରି ଅନ୍ୟ ପ୍ରକାର ଫଳ ଆଶା କରିବା । ତେଣୁ କର୍ମ ଅନୁରୂପ ଫଳ ଆଶା କରିବା ବାଞ୍ଛନୀୟ । ତୁଳସୀପତ୍ରକୁ ପବିତ୍ର ଭାବରେ ଗ୍ରହଣ କରାଯାଇଛି । ମଣିଷର ଅନ୍ତିମ ସମୟରେ 'ତୁଳସୀ ଓ ଗଙ୍ଗାଜଳ ଦେବା' ବିଧେୟ । ସେହିପରି 'ତିଳକୁ ତାଳ କରିବା' ଅର୍ଥ ତୁଚ୍ଛ ବ୍ୟାପାରକୁ ପ୍ରାଧାନ୍ୟ ଦେବା । 'ତାଳରୁ ପଡ଼ି ଖଜୁରୀ ଗଛରେ ଲଟକିବା' ଅର୍ଥ ଗୋଟାଏ ବିପତ୍ତିରୁ ମୁକ୍ତ ହେବା ବେଳକୁ ଅନ୍ୟ ବିପତ୍ତିରେ ପଡ଼ିବା । ପାନକୁ ନେଇ ସେହିପରି 'ପାନଖିଆ ଓଠ ନାଲି ଗୁଳୁଗୁଳୁ', 'ପାନ ଅରଡ଼' (ନାଗଦଅଣା ଲତା), 'ପାନ କଣ୍ଟା' (ସ୍ତ୍ରୀଲୋକମାନେ ବାଳକୁ ସଜାଡ଼ିବା ପାଇଁ ମୁଣ୍ଡରେ ଲଗାଇବା ବଙ୍କାକଣ୍ଟା), 'ପାନ କପୁରା' (ବୁଦା ବିଶେଷ), 'ପାନଗୋଷ୍ଠୀ' (ଯେଉଁଠାରେ ତାନ୍ତ୍ରିକମାନେ ପଞ୍ଚମକାର ସାଧନା କରନ୍ତି ), 'ପାନଟେକା' (ବିବାହ ପୂର୍ବରୁ ମହାପ୍ରସାଦ ନିର୍ବନ୍ଧ), 'ପାନତୁଆ' (ମିଷ୍ଟାନ୍ନ ବିଶେଷ), 'ପାନଦୋଷ' (ମଦୁଆଗିରି), 'ପାନ ପତୁରୀ' (ଅଳଙ୍କାର ବିଶେଷ), 'ପାନ ବୋଳ' (ପାନଖିଆ ପାଟିର ବୋଳ), 'ପାନଲୋଡ଼ା' (ପାନବରଜରୁ ପାନ ଛିଣ୍ଡାଇବା ପ୍ରକ୍ରିୟା), 'ପାନଶୌଣ୍ଡ' (ମଦୁଆ) ଇତ୍ୟାଦି । ଫୁଲ ଓ ଗଛକୁ ଛାଡ଼ି ଚେରକୁ ନେଇ କିଛି ରୂଢ଼ି ପ୍ରତ୍ୟୟ ମିଳେ । ଯଥା 'ଚେର ଉପାଡ଼ିବା' (ସର୍ବନାଶ ଘଟାଇବା), 'ଚେରମୂଳ' (ଜଡ଼ିବୁଟି), 'ଚେର କାଟିବା' (ଅନିଷ୍ଟକରିବା), 'ଚେରଚଣା' (ଚିନାବାଦାମ) ଇତ୍ୟାଦି ।

ଫୁଲ ପ୍ରକୃତିର ଏକ ସୁନ୍ଦର ଅବଦାନ । ଫୁଲକୁ ନେଇ ରୂଢ଼ିପ୍ରତ୍ୟୟ ଭାଷାର ଗନ୍ତାଘରେ

ପ୍ରଚୁର ମିଳେ । ଯଥା 'ଫୁଲ ପରା କରି ଟେକି ଧରିବା' (ଅତ୍ୟନ୍ତ ଆଦର ଓ ସ୍ନେହ କରିବା, କୋମଳ ବ୍ୟବହାର କରିବା), 'ଫୁଲ ପିଠା ଖାଇ ଆସିବା' (କନ୍ୟା ସ୍ୱାମୀ ଘରକୁ ପ୍ରଥମଥର ଯାଇ କିଛିଦିନ ରହିବା ପରେ ବାପଘରକୁ ଆସିବା), 'ଫୁଲ ପିଠା ଭାର ନେଇଯିବା' (କନ୍ୟା ଶାଶୁଘରକୁ ଦ୍ୱିତୀୟଥର ଗଲାବେଳେ ସଙ୍ଗରେ ନେବା ଭାର) । ଏହାକୁ 'ଦୁଆଁପାଳି ଯିବା' ମଧ୍ୟ କହନ୍ତି । 'ଫୁଲ ବଉଳ ବେଣୀ' (ବାଳିକାମାନେ ଗାଉଥିବା ଏକ ଗୀତର ଡ଼ୁହା), 'ଫୁଲ ବେଲପତ୍ର ଚଢ଼େଇବା' (ଶିବଲିଙ୍ଗ ଉପରେ ଫୁଲ ଓ ବେଲପତ୍ର ଚଢ଼ାଇବା, ଲାଞ୍ଚ ଦେଇ ସନ୍ତୁଷ୍ଟ କରିବା), 'ଫୁଲ ନାଡ଼ କରି ଟେକିଦେବା' (ପ୍ରସୂତି ଜନ୍ମିତ ଶିଶୁକୁ ତତ୍‌ସଂଲଗ୍ନ ଫୁଲ ସହିତ ପୋଛିଆଁ ମାଆଙ୍କ ହାତକୁ ଟେକିଦେବା), 'ଫୁଲଟାହିଆ' (ସରୁକାଠିରେ ସଜ୍ଜିତ ପୁଷ୍ପ), 'ଫୁଲବାବୁ' (ସୁବେଶଧାରୀ ବ୍ୟକ୍ତି) ଏମିତି ଆହୁରି ଅନେକ 'ରୂଢ଼ିପ୍ରତ୍ୟୟ' ରହିଛି । ଫୁଲକଢ଼ିକୁ ନେଇ 'କଢ଼ିରୁ ସିଆଣିଆ' (ଅଳ୍ପବୟସରେ ଯୁବତୀ ସୁଲଭ ବ୍ୟବହାର), 'ଫୁଲ କହେ କଢ଼ିକୁ, କାଲି ଯିବୁ ଇଟକୁ' (ଯୁବତୀ, କୁମାରୀ କନ୍ୟାକୁ କହେ ବୟସ ହେଲେ ସ୍ୱାମୀ ସୁହାଗିନୀ ହେବୁ), 'କରକବହ' (ଯୋଗୀ), 'କରକବୀଜ' (ଡାଳିମ୍ବ ମଞ୍ଜି), କଳି ବା କଳିକାକୁ ନେଇ 'କଳିକା ସୁହାଗିଆ' (ନବଯୁବତୀ ପ୍ରତି ଆସକ୍ତ), 'କଳିକୁ ନଆସେ ଅଳି' (ବେଶ୍ୟାଳୟରେ ଅପ୍ରାପ୍ତବୟସ୍କା କନ୍ୟା ପାଖକୁ ଗ୍ରାହକ ନ ଆସିବା) ଇତ୍ୟାଦି ପ୍ରକୃତିର କୋମଳ ସୃଷ୍ଟି ଫୁଲକୁ ନେଇ ଅସଂଖ୍ୟ ରୂଢ଼ିପ୍ରତ୍ୟୟ ଓଡ଼ିଆ ଭାଷାକୁ ସମୃଦ୍ଧ କରିଛି ।

## ୫) ଈଶ୍ୱର ଓ ୬) ଧର୍ମ ସାଧନା

ଜ୍ଞାନ ହେବା ପରଠାରୁ ମନୁଷ୍ୟ ତା'ର ପାରିପାର୍ଶ୍ୱିକ ଘଟଣାବଳୀକୁ ଲକ୍ଷ୍ୟ କରି କୌଣସି ଦିବ୍ୟ ସତ୍ତାଙ୍କ ଅସ୍ତିତ୍ୱ ଏହି ବିଶ୍ୱବ୍ରହ୍ମାଣ୍ଡକୁ ଚାଳିତ କରୁଛି ବୋଲି ମନେକରେ । କେତେବେଳେ ସେ ବିସ୍ମୟାଭୂତ ହୁଏ ତ କେତେବେଳେ ଭାବବିହ୍ୱଳ ହୋଇଥାଏ । ସେହି ଅଦୃଶ୍ୟ ସତ୍ତାର ସାନିଧ୍ୟ ପାଇବା ପାଇଁ ନିରନ୍ତର ସାଧନା କରିଥାଏ କିମ୍ବା ଭକ୍ତିରେ ନିଜକୁ ସମର୍ପଣ କରି ଜୀବନକୁ ଧନ୍ୟ କରେ । ସେହି ଈଶ୍ୱରଙ୍କ ଉଦ୍ଦେଶ୍ୟରେ ଅନେକ ସାଧନାତ୍ମକ ଶବ୍ଦାବଳୀ ରୂଢ଼ିପ୍ରତ୍ୟୟରେ ପାଇଥାଉଁ । ତନ୍ମଧ୍ୟରୁ କେତେକ ରୂଢ଼ିପ୍ରତ୍ୟୟ ହେଲା - 'ଈଶାନୁକଥା' (ଈଶ୍ୱର କଥା ବର୍ଣ୍ଣନ), 'ଈଶ୍ୱର ଦତ୍ତ' (ଭଗବାନ ନେଇଥିବା), 'ଈଶ୍ୱର ନିଷେଧ' (ନାସ୍ତିକତା), 'ଈଶ୍ୱର ନ କରନ୍ତୁ', 'ଈଶ୍ୱରବାଦ୍', 'ଈଶ୍ୱରଦତ୍ତ' (ଭଗବାନ ଦେଇଥିବା), ବିଧାତାକୁ ନେଇ 'ବିଧାତା ଛାଡ଼ିବା' (ଦୁର୍ଦ୍ଦଶା ଘୋଟିବା), 'ବିଧାତାକୂଟ' (ଦୈବୀ ଘଟନା) ଇତ୍ୟାଦି । ବିଧର୍ମକୁ ନେଇ 'ଧର୍ମ ଅର୍ଜିବା', 'ଧର୍ମକର୍ମ', 'ଧର୍ମକାୟ' (ବୁଦ୍ଧଦେବ), 'ଧର୍ମକୀଳ' (ରାଜ୍ୟଶାସନ), 'ଧର୍ମକୁ ଆଖିଠାର ମାରିବା' (ଲୋକ ଦେଖାଣିଆ

ଧର୍ମକାର୍ଯ୍ୟ), 'ଧର୍ମକୁ ଆସିବା' (ଧର୍ମଗ୍ରହଣ କରିବା), 'ଧର୍ମକ୍ଷେତ୍ର' (କୁରୁକ୍ଷେତ୍ର), 'ଧର୍ମଗୋଲା' (ଗ୍ରାମବାସୀଙ୍କ ପ୍ରତିଷ୍ଠିତ ଧାନ୍ୟଭଣ୍ଡାର), 'ଧର୍ମଘଟ' (ଜଳଦାନ ପାଇଁ ଉଦ୍ଦିଷ୍ଟ ଜଳପୂର୍ଣ୍ଣ କଳସ, ତୁଳସୀ ଗଛ ଉପରେ ଯେଉଁ ସଚ୍ଛିଦ୍ର ଜଳଘଟ ଟଙ୍ଗାଯାଏ) । 'ଧର୍ମପୁରୀ' (ଯମପୁର, କଚେରୀ), 'ଧର୍ମନନ୍ଦନ' (ଯୁଧିଷ୍ଠିର), 'ଧର୍ମନାର' (ବିଷ୍ଣୁ), 'ଧର୍ମଜାୟା' (ବିବାହିତା ସ୍ତ୍ରୀ), 'ଧର୍ମବଣିକ' (ଲାଭ ଆଶାରେ ଯେ ଧର୍ମକାର୍ଯ୍ୟ କରେ), 'ଧର୍ମପେଡ', 'ଧର୍ମ ସଙ୍କଟ', 'ଧର୍ମାପୁତ୍ର' (ଅଭିନେତା), 'ଧର୍ମ ସାବର୍ଣ୍ଣି' (ଏକାଦଶ ମନୁ), 'ଧର୍ମ ସାଧନ', 'ଧର୍ମ ବ୍ୟାଧ' (ହତ ପଶୁର ମାଂସ ବିକ୍ରେତା), 'ଧର୍ମବୈତଂସିକ' (ପାପଧନରେ ଧାର୍ମିକ ବୋଲାଇ ଦାନ କରିବା) ।

ସାଧନାତ୍ମକ ଏବଂ ଆତ୍ମାସମ୍ବନ୍ଧୀୟ ରୂଢ଼ିପ୍ରତ୍ୟୟର ପ୍ରୟୋଗ ଭକ୍ତିଯୁଗରେ ଅଧିକ ଦେଖାଯାଏ । ସେ ସମୟରେ ଆତ୍ମା-ପରମାତ୍ମାର ଚିନ୍ତନ ଏବଂ ଯୋଗସାଧନା ଜୀବନର ଅଙ୍ଗ ଥିଲା । ମୁସଲମାନଙ୍କ ଆଗମନରେ ଇସ୍‌ଲାମ ସମ୍ବନ୍ଧୀୟ ଉକ୍ତିର ପ୍ରଚଳନ ହେଲା । ଆଧୁନିକ ଯୁଗରେ ସାଧନାତ୍ମକ ଉକ୍ତିର ପ୍ରୟୋଗ ଅଳ୍ପତର ହୋଇଯାଇଛି । ତଥାପି ଅନ୍ୟାନ୍ୟ ଅଭିବ୍ୟକ୍ତି ଯେ କୌଣସି ରୂପରେ ପ୍ରଚଳିତ ଅଛି । ପାପ-ପୁଣ୍ୟ ସମ୍ବନ୍ଧୀୟ ଉକ୍ତିର ପ୍ରୟୋଗ ଆଧୁନିକ ସମୟରେ ଅଧିକ ଦେଖାଯାଇଥାଏ ।

## ୭) ଜନ୍ମ ଓ ୮) ମୃତ୍ୟୁ

ଜନ୍ମ ଓ ମୃତ୍ୟୁ, ବ୍ୟକ୍ତି ଜୀବନର ଦୁଇଟି ଅଧ୍ୟାୟ । ଏହାରି ମଧ୍ୟରେ ମାନବ ଇହଲୋକର ଯାତ୍ରା ସମାପ୍ତ କରିଥାଏ । ଜ୍ଞାନୀମାନେ ଜନ୍ମ ଓ ମୃତ୍ୟୁ ଦୁଇଟିକୁ ପରମାତ୍ମାଙ୍କର ଇଚ୍ଛା ବୋଲି ମାନନ୍ତି । ବୈଜ୍ଞାନିକଗଣ ଶାରୀରିକ ପରିଣତିକୁ ଚରମ ଓ ଶେଷ ପରିଣତି ବୋଲି କହିଥାନ୍ତି । ମାତାପିତା ସନ୍ତାନକୁ ଜନ୍ମ ଦେଇଥାନ୍ତି । କିନ୍ତୁ ଶରୀର ରୂପକ ଯନ୍ତ୍ର ବନ୍ଦ ହୋଇଗଲେ ମଣିଷର ମୃତ୍ୟୁ ଘଟେ । ଜନ୍ମ ପାଇଁ ପିତାମାତା ଏବଂ ମୃତ୍ୟୁ ପାଇଁ ବ୍ୟକ୍ତି ନିଜେ ଉତ୍ତରଦାୟୀ । ତେଣୁ, ମୃତ୍ୟୁ ଯେତିକି ଅବଶ୍ୟମ୍ଭାବୀ, ଜନ୍ମ ସେପରି ନୁହେଁ । ମାନବିକ ପ୍ରଯତ୍ନ ସତ୍ତ୍ୱେ ଅନେକ ସମୟରେ ସନ୍ତାନ ଜନ୍ମ ସମ୍ଭବ ହୁଏ ନାହିଁ । କିନ୍ତୁ ସମସ୍ତ ପ୍ରଚେଷ୍ଟା ସତ୍ତ୍ୱେ ଆମେ ମୃତ୍ୟୁମୁଖରୁ ତ୍ରାହି ପାଉନା । ମୃତ୍ୟୁର ଏହି ଅନିବାର୍ଯ୍ୟତା ଏବଂ ଶେଷରେ ଚିରବିୟୋଗର ବିଭୀଷିକା ମନୁଷ୍ୟକୁ ଆତଙ୍କିତ କରିଥାଏ । ସେହି ମୃତ୍ୟୁଚିନ୍ତାରୁ ସେ ମୁକ୍ତ ହୋଇ ପାରେ ନାହିଁ । ତେଣୁ ମୃତ୍ୟୁ ଓ ତାର ପାରିପାର୍ଶ୍ୱିକ ପରିସ୍ଥିତି ଏବଂ ଫଳାଫଳକୁ ନିରୀକ୍ଷଣ କରେ । ସନ୍ଥମାନଙ୍କଠାରୁ ଆରମ୍ଭ କରି ସାଧାରଣ ବ୍ୟକ୍ତି ପର୍ଯ୍ୟନ୍ତ କଥାବାର୍ତ୍ତାରେ ଯେତିକି ମୃତ୍ୟୁର ଉଲ୍ଲେଖ ଦେଖୁ, ଜନ୍ମର ଉଲ୍ଲେଖ ସେପରି ନୁହେଁ । ଜନ୍ମପ୍ରତି ଉଦାସୀନତାରେ ବିସ୍ମିତ ହେବାକୁ ପଡ଼େ । ପ୍ରଜନନ ପ୍ରକ୍ରିୟାର ଗୋପନୀୟତା ରକ୍ଷା କରାଯିବା ଏହାର କାରଣ ହୋଇପାରେ ।

ତେଣୁ ଜୀବନ ଓ ମୃତ୍ୟୁ ଆଡ଼କୁ ଦୃଷ୍ଟିପାତ କରିବା ମନୁଷ୍ୟ ପକ୍ଷରେ ଅଧିକ ସ୍ୱାଭାବିକ । ଅତୀତକୁ ଗୌଣ ମନେକରି ଭବିଷ୍ୟତ ପ୍ରତି ଅଧିକ ଦୃଷ୍ଟିପାତ କରିବା ମଣିଷର ପ୍ରକୃତି । ରୂଢ଼ି ପ୍ରତ୍ୟୟ କ୍ଷେତ୍ରରେ ଜନ୍ମ, ଜୀବନ, ମୃତ୍ୟୁ ମଧ୍ୟରୁ ଜୀବନକୁ ସର୍ବାଧିକ ମହତ୍ତ୍ୱ ଦିଆଯାଇଛି । ତା'ପରେ ମୃତ୍ୟୁକୁ, ସବାଶେଷରେ ଜନ୍ମକୁ । ଜୀବନପ୍ରତି ଏହି ଆସ୍ଥା, ମୃତ୍ୟୁ ପ୍ରତି ଏହି ସଚେତନତା ଆଉ ଜନ୍ମ ପ୍ରତି ଉଦାସୀନତା ଭାରତୀୟ ଦର୍ଶନର ବିଶେଷତ୍ୱ । ଏଥିରେ ସଂସାରକୁ ଦୁଃଖର ସାଗର ବୋଲି ସ୍ୱୀକାର କରି ମନୁଷ୍ୟ ସେଥିରୁ ନିସ୍ତୃତି ପାଇବା ପାଇଁ ପ୍ରଯତ୍ନଶୀଳ ହେବାକୁ ଉପଦେଶ ଦିଆଯାଇଛି । ଚିନ୍ତନ ଓ ଦର୍ଶନର ସ୍ୱରୂପ ଯାହା ହେଉନା କାହିଁକି, ଜୀବନ କାଳରେ ହେଉ ବା ମୃତ୍ୟୁ ପରେ ହେଉ, ମୁକ୍ତି ହିଁ ଏକମାତ୍ର ବାଞ୍ଛିତ ଲକ୍ଷ୍ୟ । କାରଣ ଜନ୍ମ ଓ ମୃତ୍ୟୁ ସମ୍ବନ୍ଧିତ ରୂଢ଼ିପ୍ରତ୍ୟୟକୁ ଛାଡ଼ିଦେଲେ ଅନ୍ୟ ସବୁ ଜୀବନ ସମ୍ବନ୍ଧୀୟ । ତେଣୁ ଏଠାରେ କେବଳ ଜନ୍ମ ଓ ମୃତ୍ୟୁ ସମ୍ବନ୍ଧିତ ରୂଢ଼ିପ୍ରତ୍ୟୟର ଅନୁଶୀଳନ କରାଯାଉଛି । ପରବର୍ତ୍ତୀ ଆଲୋଚନା ଜୀବନ ସମ୍ବନ୍ଧୀୟ ।

ଗର୍ଭଧାରଣ, ଜନ୍ମ ଏବଂ ବାଲ୍ୟାବସ୍ଥାର ପ୍ରାରମ୍ଭିକ ବିଷୟକ ରୂଢ଼ିପ୍ରତ୍ୟୟ ସୀମିତ ସଂଖ୍ୟାରେ ମିଳେ । 'ଜନ୍ମ ନେବା', 'ଜନ୍ମ ଦେବା', 'ଭୂମିଷ୍ଠ ହେବା' ଭଳି କିଛି ରୂଢ଼ି ପ୍ରତ୍ୟୟ ଜନ୍ମ ସମ୍ବନ୍ଧୀୟ । 'ଜୀବନର ଆବିର୍ଭାବ', 'ଜନ୍ମଗତ', 'ଜନ୍ମଗ୍ରହଣ', 'ଜନ୍ମଜନ୍ମାନ୍ତର', 'ଜନ୍ମତିଥି', 'ଜନ୍ମଦିନ', 'ଜନ୍ମନକ୍ଷତ୍ର', 'ଜନ୍ମପରିଗ୍ରହ' (ଉତ୍ପତ୍ତି), 'ଜନ୍ମଭୂମି', 'ଜନ୍ମାଧିପ' (ଜନ୍ମଲଗ୍ନର ସ୍ୱାମୀ, ଜନ୍ମରାଶିର ଅଧିଷ୍ଠାତୃ ଦେବ), 'ଜନ୍ମାନ୍ତରୀଣ' (ଅନ୍ୟ ଜନ୍ମରେ ଘଟିବା), 'ଜନ୍ମାବଚ୍ଛିନ୍ନ' (ଜୀବନ ବ୍ୟାପୀ), 'ଜନ୍ମାବଧି' (ଆଜନ୍ମ) ଆଦି ଜୀବନ ସହିତ ଗଭୀର ଭାବେ ଜଡ଼ିତ ।

ଜନ୍ମ ଜୀବନର ପ୍ରାରମ୍ଭ । ତେଣୁ ଅନ୍ୟାନ୍ୟ କ୍ଷେତ୍ରରେ ମଧ୍ୟ ଜନ୍ମ ଓ ବିକାଶର ସ୍ଥିତି ଦୃଷ୍ଟିଗୋଚର ହୋଇଥାଏ । 'ମୂଳଦୁଆ ପଡ଼ିବା', 'ବୀଜ ବୁଣିବା', 'ଅଙ୍କୁରୋଦ୍‌ଗମ ହେବା' ବା 'ଗଜା ଉଠିବା' ଇତ୍ୟାଦି ଭବନ ନିର୍ମାଣର ଭିତ୍ତି, ମହୀରୁହର ଅଙ୍କୁରୋଦ୍‌ଗମ, କୌଣସି ସଂସ୍ଥାର ଜନ୍ମ, କୌଣସି ବିଚାରର ଭାବନାକୁ ବ୍ୟକ୍ତ କରେ ।

ମୃତ୍ୟୁ ପ୍ରସଙ୍ଗରେ ତିନୋଟି ସ୍ଥିତି ପରିଦୃଷ୍ଟ ହୁଏ - ମୃତ୍ୟୁର ପୂର୍ବ, ମୃତ୍ୟୁ ଏବଂ ମରଣୋତ୍ତର । ମୃତ୍ୟୁର ଅନିବାର୍ଯ୍ୟତାକୁ ସ୍ୱୀକାର କରିବା ସହିତ ବ୍ୟକ୍ତି 'ମୃତ୍ୟୁର ବାଟ'କୁ ଚାହିଁଥାଏ ଏବଂ ଏମିତି କିଛି କରିବାର ଚେଷ୍ଟା କରେ ଯଦ୍ୱାରା ତା'ର 'ଅନ୍ତ ସମୟ' ଆସିଯିବ । 'ଅନ୍ତିମ ଘଡ଼ି ଗଣିବା', 'ଊର୍ଦ୍ଧ୍ୱଶ୍ୱାସ ବହିବା' ଏବଂ 'ଜୁଇକୁ ଗୋଡ଼ ବଢ଼େଇବା', 'କାଳ ଆସି ଦୁଆରେ ପଶିବା', 'କାଳ କବଳିତ ହେବା', 'କାଳ ଗ୍ରାସ କରିବା', 'କାଳଚକ୍ର', 'କାଳ ଦଣ୍ଡ', 'କାଳଦଣ୍ଡ ବାହା' ଇତ୍ୟାଦି ଯମ ଓ ଯମଦଣ୍ଡ ସୂଚକ

ରୂଢ଼ିପ୍ରତ୍ୟୟ । 'ଘଡ଼ିକର ଅତିଥି', 'କବର ଡାକିବା', 'ଅନନ୍ତ ନିଦ୍ରାରେ ଶୋଇବା', 'ଆଖି ଓଲଟିଯିବା', 'ସବୁଦିନ ପାଇଁ ଆଖି ବୁଜିବା', 'ଭଗବାନଙ୍କ ପ୍ରିୟ ହୋଇଯିବା', 'ଚାଲିଯିବା', 'ଦୀପ ଲିଭିଯିବା', 'ଦୁନିଆଁଠାରୁ ବିଦାୟ ନେବା', 'ଦେହତ୍ୟାଗ କରିବା', 'ପଞ୍ଚତ୍ୱ ପ୍ରାପ୍ତ ହେବା', 'ପବନରେ ପବନ ମିଶିଯିବା', 'ମହାଯାତ୍ରା କରିବା', 'ବୀରଗତି ପ୍ରାପ୍ତ ହେବା', 'ସଂସାର ଛାଡ଼ିବା' ଆଦି ରୂଢ଼ି ପ୍ରତ୍ୟୟ ନାନା ରୂପରେ ମୃତ୍ୟୁବରଣ କରିବା ଅର୍ଥରେ ବ୍ୟବହୃତ ହୁଏ । ମୃତର ଦାହ-ସଂସ୍କାର ହୁଏ ଏବଂ ତତ୍‌ସହିତ କିଛି ଅନୁଷ୍ଠାନ ସମ୍ପାଦିତ ହୁଏ । 'ଅନ୍ତ୍ୟେଷ୍ଟିକ୍ରିୟା କରିବା', 'କ୍ରିୟା କର୍ମ କରିବା', 'ଚିତା ସଜେଇବା', 'ଦାହ କରିବା', 'ଦାହ ସଂସ୍କାର କରିବା', 'ପିଣ୍ଡଦାନ କରିବା', 'ଷୋଡ଼ଶ ସଂସ୍କାର ସମାପ୍ତ ହେବା' ଆଦି ଦାହ ସଂସ୍କାର ସମ୍ବନ୍ଧୀୟ ବିଭିନ୍ନ କର୍ମକାଣ୍ଡକୁ ଇଙ୍ଗିତ କରେ । 'କୋକେଇ କାନ୍ଧେଇବା', 'ଚାରିକାନ୍ଧକୁ ଉଠିବା', 'କାଠ ଶୀତଳ କରିବା', 'ପରମପଦ ପ୍ରାପ୍ତ ହେବା', 'ବୈକୁଣ୍ଠ ଯାତ୍ରା କରିବା' ପ୍ରଭୃତି ରୂଢ଼ିପ୍ରତ୍ୟୟ ମୃତ୍ୟୁ ପରବର୍ତ୍ତୀ ଅବସ୍ଥାକୁ ବୁଝାଏ । ସନ୍ଥସାଧକମାନେ ମୃତ୍ୟୁ ବିଷୟକ ରୂଢ଼ିପ୍ରତ୍ୟୟରେ କହିଥା'ନ୍ତି । 'ଭବଲୀଳା ସାଙ୍ଗ କରିବା', 'ପଞ୍ଚତ୍ୱ ପ୍ରାପ୍ତ ହେବା', 'ଇହଲୀଳା ସମ୍ବରଣ କରିବା', 'ସଦ୍‌ଗତି ପ୍ରାପ୍ତ ହେବା', 'ମହାପଥର ଯାତ୍ରୀ ହେବା', 'ଚିରନିଦ୍ରାରେ ଶୋଇବା', 'ଆଖିବୁଜିବା', 'ଶେଷ ନିଶ୍ୱାସ ତ୍ୟାଗ କରିବା', 'ଗଙ୍ଗାପ୍ରାପ୍ତ ହେବା' ଇତ୍ୟାଦି ।

## ୯) ମନୋଭାବ

ଅନ୍ୟାନ୍ୟ ପ୍ରାଣୀ ଅପେକ୍ଷା ମନୁଷ୍ୟର ଶ୍ରେଷ୍ଠତାର ପରିଚୟ ତା'ର ବିଚାରଶକ୍ତି ଏବଂ ଭାବପ୍ରବଣତା । ମନୁଷ୍ୟକୁ 'ବିବେକଶୀଳ ପଶୁ' ବୋଲି ଆଖ୍ୟାୟିତ କଲେ ସୁଦ୍ଧା ମନୁଷ୍ୟର ଶ୍ରେଷ୍ଠତା ତାର ବୌଦ୍ଧିକ ଓ ଭାବାତ୍ମକ ବିକାଶରେ ନିହିତ । ଭାବାତ୍ମକ ବିକାଶ ବିନା ଜୀବନର ସ୍ନିଗ୍ଧତା, ରସପ୍ରାଣତା, ଆନନ୍ଦର ଅଭିବ୍ୟକ୍ତି ନଥାନ୍ତା । ତା' ସହିତ ଜୀବନର ବିବିଧତାକୁ ରୂପ ଦେଇଥାଉଛି ଅନୁଭୂତିଗୁଡ଼ିକ ଯଥା - ପ୍ରେମ, ଉତ୍ସାହ, କରୁଣା, ଭୟ, କ୍ରୋଧ, ଈର୍ଷା, ଘୃଣା ଆଦିର ଅସ୍ତିତ୍ୱ ନଥାନ୍ତା । ଆଜିର ମନୋଭାବ ବିହୀନ ସମାଜରେ ମଣିଷ ବାସ କରିବାର କଳ୍ପନା ମଧ୍ୟ ଆମେ କରିପାରିବୁ ନାହିଁ । ସୁଖ ଓ ଦୁଃଖ, ଏହି ଦୁଇଟି ଅନୁଭୂତି ନେଇ ମାନବଶିଶୁ ପୃଥିବୀକୁ ଆସିଥାଏ । ଯେପରି ସେ ବିକଶିତ ହୁଏ,ସେହିପରି ଅନୁଭୂତିଗୁଡ଼ିକ ମଧ୍ୟ ବିକାଶ ଲାଭ କରେ । ସେହି ଦୁଇଟି ମୂଳ ଅନୁଭୂତି ନାନା ରୂପ, ରସ, ଗନ୍ଧରେ ପରିବର୍ତ୍ତିତ ପରିବର୍ଦ୍ଧିତ ହୋଇ ପରିପକ୍ୱତା ଲାଭ କରେ । ସୁଖାତ୍ମକ ଅନୁଭୂତି ଭାବରେ ପ୍ରେମ, ଉତ୍ସାହ, ଆତ୍ମସନ୍ତୁଷ୍ଟି, କରୁଣା, ଦୟା, କ୍ଷମା ଏବଂ ଦୁଃଖାତ୍ମକ ଅନୁଭୂତି ଭାବରେ, ବେଦନା, କ୍ଲେଶ, ଆତ୍ମଗ୍ଲାନି, ଭୟ, କ୍ରୋଧ, ଈର୍ଷା, ଦ୍ୱେଷ, ଘୃଣା ଓ ଲଜ୍ଜା

ଆଦି ଜୀବନରେ ବିଶେଷ ମହତ୍ୱପୂର୍ଣ୍ଣ ରୂପରେ ପ୍ରାପ୍ତ ହୋଇଥାଏ । ବସ୍ତୁତଃ ସୁଖ ଓ ଦୁଃଖର ଜଳା ଓ ଧଳାସୂତାରେ ମନୁଷ୍ୟ ଜୀବନ ବୁଣା ହୋଇଥାଏ । ଜୀବନରେ ସୁଖ ଅପେକ୍ଷା ଦୁଃଖର ମାତ୍ରା ଅଧିକ । କାରଣ ବ୍ୟକ୍ତି କେବଳ ନିଜ ସୁଖରେ ସୁଖୀ ହୋଇଥାଏ । କିନ୍ତୁ ନିଜ ପର ସମସ୍ତଙ୍କ ଦୁଃଖରେ ଦୁଃଖୀ ହୋଇଥାଏ । ଅନ୍ୟର ସୁଖରେ ସୁଖୀ ହେବା ବ୍ୟକ୍ତି ସଂସାରରେ ବିରଳ । ଲୋକେ କହନ୍ତି ଦୁଃଖରେ ବନ୍ଧୁ ମିଳେ ନାହିଁ । ସେ କଥା ମିଛ । କଷ୍ଟ ସମୟରେ ବନ୍ଧୁ ମିଳନ୍ତି । ଦୁଃଖ ବିତିଗଲାପରେ ବନ୍ଧୁମାନେ ଶତ୍ରୁ ହୋଇଯାଆନ୍ତି ।  ଆନନ୍ଦ ଦିନଗୁଡ଼ିକରେ ସଦିଚ୍ଛା ନେଇ କେହି ଆସନ୍ତି ନାହିଁ । ଯେପରି ଫଳନ୍ତି ଗଛକୁ ଢେଲା ଫିଙ୍ଗିବା ଦୁନିଆଁର ଅଭ୍ୟାସ । କେହି ସେଥିରୁ ବାଦ୍ ଯିବେ ନାହିଁ ।

ସୁଖାତ୍ମକ ଅନୁଭୂତିର ଅଭିବ୍ୟକ୍ତି ରୂଢ଼ିପ୍ରତ୍ୟୟରେ ଏହିଭଳି ଅଭିବ୍ୟଞ୍ଜିତ । 'ଅଙ୍ଗଅଙ୍ଗ ନାଚି ଉଠିବା', 'ସୁଖସାଗରରେ ଭାସିବା', 'ଆନନ୍ଦ ଲହରୀରେ ଅବଗାହନ କରିବା', 'ଆହ୍ଲାଦକ ବନ୍ଧୁ ଗହଣରେ', 'ହର୍ଷୋଲ୍ଲାସରେ ସମୟ ବିତାଇବା', 'ମନ କୁଣ୍ଢେମୋଟ ହେବା', 'ଉଲ୍ଲସିତ ହୃଦୟ', 'ଉଲ୍ଲାସ୍ୟର ପ୍ରକୃତି', 'ଆନନ୍ଦିତ ହୃଦୟ', 'ଉଚ୍ଛ୍ୱସିତ ଚିତ୍ତ', 'ମନ ଚୋରା ମନ ଟଳାଇ ମନ ମଜାଇ ମଦନ ମନ୍ଦିରରେ ଅଧର ଲଗାଇ ମଦନାତୁରାର ମଦନପୁର ମଦନାଙ୍କୁଶରେ ମଛରେ ମଥିତ କଲା, 'ପ୍ରେମ ତରଙ୍ଗରେ ଭାସିବା', 'ପ୍ରେମାତୁରା ପ୍ରେୟସୀକୁ ପ୍ରେମାଲିଙ୍ଗନରେ ତୁଷ୍ଟ କରିବା', 'ପ୍ରୋଷିତ ଭର୍ତ୍ତୃକା ପ୍ରେମପ୍ରୁଷ୍ଠା ପ୍ରେୟସୀ ପ୍ରିୟସଙ୍ଗମନରେ ପ୍ରୀତିମାନ ପ୍ରିୟକୁ ପ୍ରମୋଦିତ କଲା', 'ପ୍ରେମ ତରଙ୍ଗରେ ସନ୍ତରଣ କରିବା', 'ପ୍ରେମଙ୍କର ପ୍ରୀତିରୀତି ଅନୁଶାସନ ନ ମାନିବା', 'ପ୍ରିୟ କଳନ୍ଦ୍ର ପ୍ରିୟକାରୀ ପ୍ରେମରୂପା ପ୍ରେୟସୀକୁ ମ୍ରିୟମାଣ କରିବା', 'ପ୍ରୀତ ପରାୟଣ ସ୍ୱାମୀ ପ୍ରୀତ୍ୟର୍ଥ ପ୍ରିୟପେପ୍ସୁ', 'ଫୁଲ ଶେଯରେ ଶୋଇବା', 'ଆନନ୍ଦରେ ଅଧୀର', 'ମନ ବହଲିବା', 'ଅନିର୍ବେଯୋଲ୍ଲାସଦାୟିକ', 'ପ୍ରେମଡୋରୀରେ ବନ୍ଧାଯିବା', 'ପ୍ରେମର ତରଣୀ ବାହିବା' । ସୁଖର ଅନୁଭୂତି ମଣିଷର ହୃଦୟରେ ହେଲେ ମଧ ସୁଖର ଆଧାର ବା ହୃଦୟରେ ଅନୁଭୂତିର ଅଭିବ୍ୟକ୍ତି ଜ୍ଞାନେନ୍ଦ୍ରିୟ ଦ୍ୱାରା ହୋଇଥାଏ । 'ଆଖି କାଢ଼ିବା', 'ଆଖି ଖୋଲିବା', 'ଆଖି ଖୋସି ହୋଇଯିବା', 'ଆଖି ଛଳ ଛଳ କରିବା', 'ଆଖି ଝୁଇଁବା', 'ଆଖିଠରା', 'ଆଖି ଠାର ମାରିବା', 'ଆଖି ଡେଇଁବା', 'ଆଖି ଡେରିଦେବା', 'ଆଖି ଧରିବା', 'ଆଖି ନପାଇବା', 'ଆଖି ପକେଇବା', 'ଆଖିପଚା କଷା ନହେବା', 'ଆଖି ପଲକରେ', 'ଆଖିପାଣି ଆଖିରେ ମରିବା', 'ଆଖି ଫୁଟାଇବା/ ଫୁଟିବା', 'ଆଖି ଫେରାଇବା', 'ଆଖି ବୁଲାଇବା', 'ଆଖି ମାରିବା' (ଆଖି ଠାରିବା), 'ଆଖି ମିଟ୍‌କେ', 'ଆଖିରୁ ଜୁଳୁଜୁଳିଆ ପୋକ ବାହାରିଯିବା', 'ଆଖିରେ ଆଙ୍ଗୁଠି ଗେଞ୍ଜିବା', 'ଆଖିରେ ଧୂଳି ପକାଇବା' ,

'ଆଖିରେ ନାଚିବା', 'ଆଖିରେ ଶୁଖୁଆକଣ୍ଟା ଗେଞ୍ଜିବା', 'ଆଖିଲୋଭା', 'ଆଖି ଲାଗିବା' - ଆଖିକୁ ନେଇ ଏ ସମସ୍ତ ରୂଢ଼ିପ୍ରତ୍ୟୟ ଆମେ ଭାଷାରେ ବ୍ୟବହାର କରିଥାଉଁ ।

କାନକୁ ନେଇ ରୂଢ଼ିପ୍ରତ୍ୟୟରେ - 'କାନକଟା ହେବା', 'କାନ କାଟିଲେ ବଚନ ବାହାରିବ ନାହିଁ', 'କାନକୁ ଆସିବା', 'କାନକୁ କାନ ହେବା', 'କାନକୁହା', 'କାନ ଝାଇଁଝାଇଁ ହେବା', 'କାନ ଡେରିବା', 'କାନ ନାଉଳି', 'କାନନାକ ଧରିବା', 'କାନ ପତଳା ହେବା', 'କାନ ଫୁଙ୍କିବା' , 'କାନେଇବା', 'କାନେ କାନେ କହିବା', 'କର୍ଣ୍ଣ କଣ୍ଡୁ', 'କର୍ଣ୍ଣକୀଟ', 'କର୍ଣ୍ଣକୂଟ', 'କର୍ଣ୍ଣଗତ କରିବା', 'କର୍ଣ୍ଣଗୋଚର', 'କର୍ଣ୍ଣଜଳୌକା', 'କର୍ଣ୍ଣଧାର', 'କର୍ଣ୍ଣପଟହ', 'କର୍ଣ୍ଣପାତ କରିବା', 'କର୍ଣ୍ଣପିଶାଚ', 'କର୍ଣ୍ଣପୂର', 'କର୍ଣ୍ଣପ୍ରୟାଗ' , 'କର୍ଣ୍ଣବେଧ', 'କର୍ଣ୍ଣବେଷ୍ଟକ', 'କର୍ଣ୍ଣଭୂଷା', 'କର୍ଣ୍ଣମଳ', 'କର୍ଣ୍ଣରାଜ', 'କର୍ଣ୍ଣଶଷ୍କୁଳୀ', 'କର୍ଣ୍ଣସ୍ରାବ', 'କର୍ଣ୍ଣାକର୍ଣ୍ଣିକା', 'କର୍ଣ୍ଣାଟିକା', 'କର୍ଣ୍ଣୀରଥ', 'କର୍ଣ୍ଣୀସୁତ', 'କର୍ଣ୍ଣେଜପ' ଇତ୍ୟାଦି ଭାବ ଓ ଅନୁଭୂତି ପ୍ରକଟିତ ।

ଆଖି ଓ କାନର ଅନୁଭୂତି ଉଭାରୁ ହାତ, ଗୋଡ଼ ଇତ୍ୟାଦି ଅବୟବଗୁଡ଼ିକର ଅନୁଭୂତି ସାମାନ୍ୟ ମିଳିଥାଏ । ଯଥା -'କର କଣ୍ଟକ', 'କରକୋରକ', 'କରକୋଷ', 'କରକୋଷୀ ବିଦ୍ୟା', 'କରଗତ', 'କରଗ୍ରହ', 'କରଗ୍ରାହ', 'କରଘର୍ଷଣ', 'କରଛଡ଼ା କରିବା', 'କରଜ', 'କରତଳଗତ', 'କରତି ହେବା', 'କର ଧରିବା', 'କରପତ୍ର ଯୋଡ଼ିବା', 'କରପୀଡ଼ନ', 'କରିଷ୍ୟମାଣ' ଇତ୍ୟାଦି । 'ପାଦ'କୁ ନେଇ ଯଥା - 'ପଦକମଳ', 'ପଦକ୍ଷେପ', 'ପଦଚର', 'ପଦଚାରଣ', 'ପଦଦାରିକା', 'ପଦନ୍ୟାସ', 'ପଦଲେହନ', 'ପଦସ୍ଖଳନ', 'ପଦାଘାତ', 'ପଦାଙ୍କ', 'ପଦାନତ', 'ପଦାନୁବର୍ତ୍ତୀ', 'ପଦାମ୍ବୁଜ', 'ପଦାଶ୍ରିତ' ଇତ୍ୟାଦି ।

ସୁଖର ବିପରୀତ ଦୁଃଖର ଅନୁଭୂତି ମନକୁ ଭାରାକ୍ରାନ୍ତ କରିଥାଏ । ଦୁଃଖର ମାତ୍ରା ଅଧିକ ହେଲେ ବ୍ୟକ୍ତି ତାକୁ କାନ୍ଦି ବା ଆଖିରୁ ଲୁହ ଗଡ଼େଇ ହାଲୁକା କରିବାର ପ୍ରୟାସ କରିଥାଏ । 'ଦୁଃଖକର' ଅର୍ଥାତ୍ ଯାହାମନକୁ କଷ୍ଟ ଦିଏ, ସେପରି ଅନୁଭୂତିର ସାମାନ୍ୟ ରୂଢ଼ିପ୍ରତ୍ୟୟ ଦେଖାଯାଏ । 'ଦୁଃଖଗ୍ରାମ', 'ଦୁଃଖଜୀବୀ', 'ଦୁଃଖତ୍ରୟ', 'ଦୁଃଖ ଦୋହ୍ୟା', 'ଦୁଃଖଧନ୍ଦା', 'ଦୁଃଖ ନିବହ', 'ଦୁଃଖ ପାସୋରା', 'ଦୁଃଖଭାଗୀ', 'ଦୁଃଖ ଲତ୍ତ', 'ଦୁଃଖ ସମୁଦ୍ର', 'ଦୁଃଖସୁଖ ହେବା', 'ଦୁଃଖୀ ରଚନ', 'ଦୁଃଶକୁନ', 'ଦୁଃଶୋଧ', 'ଦୁଃଗମ', 'ଦୁଃସହ', 'ଦୁଃସ୍ଥ', 'ଦୁଃଷମ', 'ଦୁଃସମୟ', 'ଦୁଃସହ', 'ଦୁଃସାଧ', 'କଷ୍ଟେମଷ୍ଟେ', 'କଷ୍ଟକାରକ', 'କଷ୍ଟଜୀବୀ', 'କଷ୍ଟଫେଡ଼', 'କଷ୍ଟେମଷ୍ଟେ', 'କଷ୍ଟାଶ୍ରିତ', 'କଷ୍ଟସହିଷ୍ଣୁ', 'କଷ୍ଟାର୍ଥତା', 'ମନ କାନ୍ଦିବା', 'ଛାତି ଫାଟିବା', 'ଆଖିପାଣି ନ ଶୁଖିବା', 'ଆଖିରୁ ଗଙ୍ଗା

ଯମୁନା ବହିବା', 'ଲୁହ ନ ଶୁଖିବା', 'ଅଶ୍ରୁପାତ', 'ଅଶ୍ରୁମୁଖ', 'ଅଶ୍ରୁମୋଚନ', 'ଅଶ୍ରୁସମ୍ବରଣ', 'ଅଶ୍ରୁସିକ୍ତ', 'ଲୁହ ଗଡ଼ିବା', 'ଲୁହ ନ କାନ୍ଦି ରକ୍ତ କାନ୍ଦିବା', 'ବୁକୁ ଫଟା', 'ମାଛ ପରି ଛଟପଟ ହେବା', 'ଛାତିରେ ଛୁରୀ ଚାଲିଯିବା', 'ଦୁଃଖର ପାହାଡ଼ ମୁଣ୍ଡରେ ପଡ଼ିବା', 'ଦୁଃଖ ସାଗରରେ ଭାସିବା' ଆଦି ରୂଢ଼ି ପ୍ରତ୍ୟୟ ଦ୍ୱାରା ଦୁଃଖ ନାନା ରୂପରେ ବ୍ୟଞ୍ଜିତ ହୋଇଥାଏ ।

ପ୍ରେମ ସମ୍ବନ୍ଧ ମୂଳତଃ ସ୍ତ୍ରୀ ଓ ପୁରୁଷଙ୍କ ପ୍ରେମ ବିଷୟକ ହେଲେ ମଧ୍ୟ ବିସ୍ତୃତ ଅର୍ଥରେ ବାତ୍ସଲ୍ୟ ତଥା ଦେଶ ଏବଂ ସମାଜ ସମ୍ବନ୍ଧୀୟ ପ୍ରେମ ମଧ୍ୟ ଏହାର ଅନ୍ତର୍ଗତ । ପ୍ରେମର ଦୁଇପଟ- ସୁଖାତ୍ମକ ଓ ଦୁଃଖାତ୍ମକ । ଜୀବନରେ ପ୍ରେମର ସୁଖାତ୍ମକ ଅନୁଭୂତିର ଯେତେ ମହତ୍ତ୍ୱ ଥାଏ, ରୂଢ଼ି ପ୍ରତ୍ୟୟ କ୍ଷେତ୍ରରେ ସେପରି ନୁହେଁ । 'ପ୍ରେମାଙ୍କୁର ବିକଶିତ ହେବା', 'ପ୍ରେମଜ୍ୱାଳା ସହି ନପାରିବା', 'ପ୍ରେମ ଡୋରରେ ବନ୍ଧା', 'ପ୍ରେମ ବନ୍ଧନ', 'ହୃଦୟରେ ଘର କରିବା', 'ବୁକୁରେ ସ୍ଥାନ ଦେବା' ପ୍ରଭୃତି ରୂଢ଼ିପ୍ରତ୍ୟୟରେ ପ୍ରେମର ସୁଖାତ୍ମକ ସ୍ଥିତିର ସ୍ୱରୂପ ଅଭିବ୍ୟକ୍ତ କରାଏ । 'ପ୍ରେମତୃଷ୍ଣା', 'ପ୍ରେମପାଗଳ', 'ପ୍ରେମପାତ' ଇତ୍ୟାଦି ପ୍ରେମାନୁଭୂତିର ପରିଚାୟକ । ଏହାର ପୂର୍ବ ସ୍ଥିତି ରୂପାକର୍ଷଣରେ ସନ୍ନିହିତ । ଯଥା - 'ଆଖିକୁ ଆଖି ମେଳେଇବା', 'ପ୍ରେମସାଗରରେ ଭାସିବା', 'ଚିତ୍ତଚୋର', 'ମନ ଚୋରି କରିବା', 'ମନ ଟଳାଇବା', 'ମନ ଦଉଡ଼ିବା', 'ମନ ଦେବା', 'ମନ ଦିଆନିଆ', 'ମନ ପତଳା କରିବା', 'ମନ ପବନ ଘୋଡ଼ା', 'ମନ ଫୁଲଣା', 'ମନ ବଢ଼ିବା' (ଅଧିକ ଆସକ୍ତି), 'ମନ ବଳିବା' (ଆସକ୍ତିର ଉଦ୍ରେକ), 'ମନ ବାଉଳା', 'ମନ ବିକିଦେବା' ( ଅନ୍ୟଠାରେ ଆସକ୍ତ ହେବା), 'ମନ ମକଚି ହୋଇଯିବା', 'ମନ ମଜ୍ଜିବା', 'ମନ ମତା', 'ମନ ମାତୁ' (ମନର ଉନ୍ମାଦ), 'ମନ ମେଳ', 'ମନ ମୋହନ', 'ମନ ରହିବା' (ଅନୁରକ୍ତ ହେବା), 'ମନଲାଖି'(ଇଚ୍ଛାର ଅନୁକୂଳ), 'ମନସିଜ' (କନ୍ଦର୍ପ), 'ମନ ସୁରେଇବା' (ସ୍ପୃହାଜାତ ହେବା), 'ମନ ହାଇଁପାଇଁ ହେବା', 'ମନାଇବା', 'ମନାତ୍ମଜ' (କାମଦେବ), 'ମଦନ କଣ୍ଟକ' (କାମାନ୍ଧର ରୋମାଞ୍ଚ), 'ମଦନ ଗୃହ' (କୁଣ୍ଡଳୀର ୭ମ ଘର), 'ମଦନ ଜ୍ୱର' (କାମଜ୍ୱର), 'ମଦନ ତନ୍ତ' (ରତି ଶାସ୍ତ୍ର), 'ମଦନ ଦଶା' (କାମାତୁର ବ୍ୟକ୍ତିର ଭିନ୍ନ ଭିନ୍ନ ଅବସ୍ଥା), 'ମଦନ ଦୂତ' (କୋକିଳ), 'ମଦନ ଧର୍ମ' (ରତିକ୍ରୀଡ଼ା), 'ମଦନ ପୀଡ଼ା' (କାମ ବ୍ୟଥା), 'ମଦନ ବାଇ' (କାମପୀଡ଼ା ଜନିତ ବାତୁଳତା), 'ମଦନ ବାଉଳା' (କାମ ବିହ୍ୱଳତା), 'ମଦନ ବିହ୍ୱଳ' (କାମୋନ୍ମତ୍ତ), 'ମଦନବ୍ୟଥା' (କାମପୀଡ଼ା), 'ମଦନ ମନ୍ଦିର' (ସ୍ତନ), 'ମଦନାଙ୍କୁଶ' (ପୁରୁଷର ଲିଙ୍ଗ), 'ମଦୟିତା' (ଯେ ଉନ୍ମତ୍ତ କରାଏ), 'ମଧୁକର' (କାମୁକ ବ୍ୟକ୍ତି), 'ମଧୁବନ' (ପ୍ରେମିକ ପ୍ରେମିକାଙ୍କ ମିଳନକୁଞ୍ଜ), 'ମନ

ମୟୂରୀ ନାଚି ଉଠିଲା', 'ପ୍ରୀତି ଚକୋରୀ ଡେଣା ମେଲାଇ', 'ଆଖିରେ ବସନ୍ତ' ଇତ୍ୟାଦି ଜ୍ଞାନେନ୍ଦ୍ରିୟର ପ୍ରଭାବ ଭାବନାରାଜ୍ୟରେ ପ୍ରକଟ ହୋଇ ଅନୁଭୂତିକୁ ପ୍ରେମସିକ୍ତ କରିଥାଆନ୍ତି । ପ୍ରେମ-ପ୍ରସଙ୍ଗରେ ପ୍ରଯୁକ୍ତ ରୂଢ଼ିପ୍ରତ୍ୟୟ ବିପୁଳ ।

**ବାତ୍ସଲ୍ୟ ଭାବନାର** ଅଭିବ୍ୟକ୍ତି କରୁଥିବା ରୂଢ଼ି ପ୍ରତ୍ୟୟ ପର୍ଯ୍ୟାୟରେ 'ଆଖିର ତାରା', 'ନୟନ ପିତୁଳା' , 'ଆଖିର ପିତୁଳା', 'ପଣତ ନିଧି', 'କଳିଜାର ଟୁକ୍ରା', 'କୋଳ ଉଛୁଡ଼ିବା', 'କୋଳ ପୋଛା', 'କୋଡର ମଣି', 'କୁଳ କଣ୍ଟକ', 'କୁଳଘ୍ନ', 'କୁଳତନ୍ତ', 'କୁଳଦୀପ', 'କୁଳଧର', 'କୁଳନନ୍ଦନ', 'କୁଳ ପାଉଁଶ', 'କୁଳ ପ୍ରଦୀପ', 'କୁଳ ବୁଡା', 'କୁଳମଣି', 'କୁଳ ସନ୍ତତି', 'ଗେହ୍ଲା ପସରା' କୋଳ ଖାଲି ହୋଇଯିବା, 'କୁଳଦୀପ ଲିଭିଯିବା' ଇତ୍ୟାଦି ଅନ୍ତର୍ଭୁକ୍ତ ।

**ଦେଶପ୍ରେମ ଓ ସମାଜ** ସମ୍ବନ୍ଧିତ ରୂଢ଼ି ପ୍ରତ୍ୟୟ ସ୍ୱତନ୍ତ୍ର ଭାବେ ପ୍ରସ୍ତୁତ କରିବା କଠିନ କାର୍ଯ୍ୟ, କାରଣ ଏଗୁଡିକ ସ୍ୱଚ୍ଛନ୍ଦଚାରୀ ନୁହନ୍ତି, ବିଭିନ୍ନ ଭାବବୋଧକ ଶବ୍ଦଶ୍ଳେଷ ବା ଶବ୍ଦ ହେତୁକ ସମ୍ମିଶ୍ରଣରେ ପ୍ରକାଶ ପାଇଥାଏ । ଦେଶପ୍ରେମ ଓ ସମାଜ ଉଭୟ ଜନସମ୍ବନ୍ଧିତ ହୋଇ ଥିବାରୁ ସମାଜ ତଥା ବ୍ୟକ୍ତିର ଉନ୍ନତି ଜନିତ ଶବ୍ଦ ଏଥିରେ ନିହିତ ଥାଏ । ଏଣୁ ଦେଶପ୍ରେମ ଓ ସମାଜ ପ୍ରେମ ସମ୍ପର୍କୀୟ ରୂଢ଼ିପ୍ରତ୍ୟୟ ବିକ୍ଷିପ୍ତ ଭାବରେ ମିଳିଥାଏ । ଯଥା-'ଉନ୍ନତ ଜନପଦ', 'ଗ୍ରାମ କଣ୍ଟକ', 'ଗ୍ରାମୀଣ ବିଦ୍ୟାଳୟ', 'ପଞ୍ଚାୟତ', 'ଗ୍ରାମ କରଣ', 'ଗ୍ରାମକୋଠ', 'ଗ୍ରାମ ଉନ୍ନୟନ', 'ଗ୍ରାମ ସେବକ', 'ଗ୍ରାମାଧିକାରୀ', 'ଗ୍ରାମୀଣ', 'ପଞ୍ଚାଏତଦ୍‌ବାର', 'ପଞ୍ଚାଏତ୍‌ନାମା', 'ପଞ୍ଚାଏତି', 'ନଗରପାଳ', 'ନଗର ନିବାସୀ', 'ନଗର ନାୟିକା'(ବେଶ୍ୟା), 'ନଗରପାଳିକା ଓ ସଭା' (ମ୍ୟୁନିସିପାଲିଟି), 'ନଗରାଧ୍ୟକ୍ଷ', 'ଦେଶକ' (ଶିକ୍ଷକ, ଶାସନକର୍ତ୍ତା), 'ଦେଶକାଳଜ୍ଞ', 'ଦେଶକାଳପାତ୍ର', 'ଦେଶକାଳବିତ୍‌', 'ଦେଶବିଧାନ', 'ଦେଶାଚାର', 'ଦେଶାନ୍ତର', 'ଶାସନକର୍ତ୍ତା', 'ଶାସନତନ୍ତ୍ର', 'ଶାସନଦଣ୍ଡ', 'ଶାସନପତ୍ର' (ହୁକୁମ ନାମା), 'ଶାସନପଦ୍ଧତି' 'ଶାସନ ଶିଳା', 'ଶାସନାଧୀନ', 'ଶାସନାର୍ହ', 'ଶାସ୍ତିଦାନ', 'ଶାସନତନ୍ତ୍ର', 'ଶାସନ ଶିଳା', 'ଶାସନାଧୀନ ଇତ୍ୟାଦି' ଅଧୁନାତନ ସାମାଜିକ ଓ ଦେଶାତ୍ମବୋଧକ, ରାଜନୈତିକ ଓ ଶାସନତାନ୍ତ୍ରିକ ଶବ୍ଦ ସମ୍ବନ୍ଧିତ ରୂଢ଼ିପ୍ରତ୍ୟୟ ଦେଖାଯାଏ ।

**ବିଶ୍ୱାସଭାଜନତା ଏବଂ କୃତଜ୍ଞତାବୋଧ** ମନୁଷ୍ୟର ସଦ୍‌ବୃତ୍ତିଗୁଡିକ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ପାରସ୍ପରିକ ବ୍ୟବହାର ଓ ଶାନ୍ତିମୟ ସୁଗମ ଜୀବନ-ଯାପନ ପାଇଁ ସମାଜରେ ଏହାର ବିଶେଷ ପ୍ରୟୋଜନ ଅଛି । 'ସଦ୍‌ବୃତ୍ତି', 'ଇମାନଦାରୀ', 'ସଦ୍‌ଗୁଣ', 'ସଦ୍‌ଜ୍ଞାନ', 'ସଦ୍‌ବିଚାର', 'ସଦ୍‌ବ୍ୟବହାର', 'ସଦ୍‌ଭାବ', 'ସଦାଚାର',

'ବତିପେଲା','ବତାସିଆ', 'ବଦ୍ ଆଚାର', 'ବଦ୍‌ଚାଲ', 'ବଦ୍‌ଜବାନ', 'ବଦ୍‌ନାମ କରିବା', 'ଦଣ୍ଡବିଧି', 'ଦେଶକାଳଜ୍ଞ', 'ଦେଶଦ୍ରୋହ', 'ରାଜଦ୍ରୋହ', 'ବେଇମାନ୍ ଜାଗିରୀ', 'କୃତ କର୍ତ୍ତବ୍ୟ', 'କୃତକୃତ୍ୟତା', 'ଧନ୍ୟବାଦ', 'ଧନ୍ୟପଦ', 'ବିଶ୍ୱାସଘାତ', 'ବିଶ୍ୱାସଜନକ', 'ବିଶ୍ୱାସହନ୍ତା', 'କ୍ଷମତାପନ୍ନ', 'କ୍ଷମାନିଧି', 'କ୍ଷମାନ୍ୱିତ', 'କ୍ଷମାପ୍ରାର୍ଥୀ', 'କ୍ଷମାଭିକ୍ଷା', 'କ୍ଷମାଶୀଳ', 'ଉପଚିକୀର୍ଷୁ', 'ଉପଚ୍ଛନ୍ଦ', 'ଉପଜାପ', 'ଅନୁଗ୍ରାହକ', 'ଅନୁଗୃହୀତ' ଇତ୍ୟାଦି ସାଧୁଶବ୍ଦ ବିଶିଷ୍ଟ ରୂଢ଼ିପ୍ରତ୍ୟୟକୁ ଛାଡିଦେଲେ କଥିତ ଓ ଲିଖିତ ଭାଷାରେ ନିତ୍ୟବ୍ୟବହାର୍ଯ୍ୟ ରୂଢ଼ିପ୍ରତ୍ୟୟ ଦେଖିବାକୁ ମିଳେ । ସାମ୍ବାଦିକତା କ୍ଷେତ୍ରରେ ରୂଢ଼ିପ୍ରତ୍ୟୟର ଆଧୁନିକ ପ୍ରଚଳନ ବହୁଳ ଭାବରେ ଦେଖାଯାଏ ।

**ମାନ ସମ୍ମାନ** – ବ୍ୟକ୍ତିର ଜୀବନରେ ଏକ ମହତ୍ତ୍ୱପୂର୍ଣ୍ଣ ଗୁଣ । ଏପରି ଅନେକ ବ୍ୟକ୍ତି ଅଛନ୍ତି, ଯେଉଁମାନେ କେବଳ ନିଜର ମହତ୍ତ୍ୱ ବଢାଇ ନଥାନ୍ତି, କୁଳର ନାମ ମଧ୍ୟ ଉଜ୍ଜ୍ୱଳ କରିଥାଆନ୍ତି । ଏମାନଙ୍କ ସୁନାମ ଦୂରଦୂରାନ୍ତକୁ ବ୍ୟାପିଯାଏ । ଏପରି ବ୍ୟକ୍ତିଗଣ ନିଜର ସୁନାମ ରକ୍ଷା ନିମନ୍ତେ ବହୁସ୍ୱାର୍ଥ ତ୍ୟାଗ କରିଥାଆନ୍ତି । ଏପରି ବ୍ୟକ୍ତିଙ୍କୁ 'କୁଳ ତିଳକ', 'କୁଳ ପ୍ରଦୀପ', 'କୁଳ ଗୌରବ', 'କୁଳନନ୍ଦନ', 'କୁଳମଣି', 'କୁଳଶିଖ', 'ବଂଶ ଗୌରବ' ପ୍ରଭୃତି ସଂଜ୍ଞାରେ ବିଭୂଷିତ କରାଯାଇଥାଏ । ଅନ୍ୟ ପକ୍ଷରେ 'କୁଳକଳଙ୍କ' ମାନେ ମଧ୍ୟ ଥାଆନ୍ତି, ଯେଉଁମାନେ 'କୁଳାଙ୍ଗାର', 'କୁଳାପଯଶର' ଭାଗୀଦାର ରୂପେ କୁଖ୍ୟାତ ହୋଇଥାଆନ୍ତି । କେବଳ 'ନାକକଟାର' ଯେଉଁମାନେ କ୍ଷାନ୍ତ ହୁଅନ୍ତି ନାହିଁ, ଲୋକେ ତାଙ୍କ ନାମରେ ଛେପ ପକାନ୍ତି । କିଛିଲୋକଙ୍କ ପକ୍ଷରେ 'ଇଜ୍ଜତ ଉପରେ ଆଞ୍ଚ' ଆସିବା ମଧ୍ୟ 'ଆତ୍ମହତ୍ୟା' ର ସମକକ୍ଷ । ସେମାନେ କାହାରି 'ଇଜ୍ଜତ ନିଅନ୍ତି' ନାହିଁ । ପ୍ରକୃତରେ କହିବାକୁ ଗଲେ ପ୍ରତ୍ୟେକ ବ୍ୟକ୍ତିର 'ଇଜ୍ଜତ ନିଜ ହାତରେ ଥାଏ' । ସେ ଚାହିଁଲେ 'ଇଜତ୍ ତଳେ ପଡିବା' ବଦଳରେ 'ଇଜ୍ଜତ୍ ହୁକୁମତ୍' ର ମାଲିକ ହୋଇଥାଏ । ସମସ୍ତେ ଏ ବିଷୟରେ ଏକମତ ହେବେ ଯେ 'ନାମ କମେଇବା', 'ନାମ କରିବା' ବହୁତ ଗୌରବର ବିଷୟ । କିନ୍ତୁ ସର୍ବଦା 'ନାମପାଇଁ ମରିବା' ମଧ୍ୟ ପ୍ରଶଂସାର୍ହ ନୁହେଁ ।

ପଗଡି, ନାକ, ଟୋପି ଓ ନିଶ ସମ୍ମାନର ପ୍ରତୀକ । ଉତ୍ତର ଭାରତର ବହୁସ୍ଥାନରେ, ବିଶେଷତଃ ରାଜବଂଶ ଓ କ୍ଷତ୍ରିୟ କୁଳରେ 'ପଗଡିରେ କାହାରି ହାତ ଲାଗିବାକୁ' ଦିଅନ୍ତି ନାହିଁ । ତାଙ୍କ ପାଇଁ 'ପଗଡିର ମାନ ରଖିବା' ବହୁତ ଇଜତ୍ ର କଥା । 'ପଗଡି କାଢିବା ବା ଓହ୍ଲେଇବା', 'ପଗଡିକୁ ତଳେ ରଖିବା', 'ମୁଣ୍ଡରୁ ପାଗ ଖସିବା' ତାଙ୍କ ପାଇଁ ସମ୍ମାନ ଧୂଳିରେ ମିଳିଯିବା ସଦୃଶ । 'ପଗଡିରେ ପାଉଁଶ ପକେଇବା', 'ପଗଡିରେ ଫୁଲ ରଖିବା'

ଯଥାକ୍ରମେ ବଦନାମ କରିବା ଓ ସମ୍ମାନ ଦେବାକୁ କହିଥାଆନ୍ତି ।

ସେହିଭଳି 'ନାକକଟା ହେବା' (ଅପମାନିତ ହେବା) 'ନାକକାନ ମୋଡିହେବା' (ଦୋଷସ୍ୱୀକାର କରିବା), 'ନାକଘଷା' (ଦଣ୍ଡଭୋଗ) ଇତ୍ୟାଦି ଇଜତ୍ ବଦଳରେ କ୍ଷମା ପ୍ରାର୍ଥନା । 'ନାକ ଛିଣ୍ଡା' (ଘୃଣା କରିବା), 'ନାକଟେକିବା' (ଅସମ୍ମାନ କରିବା), 'ନାକରେ ଦଉଡି ଦେବା' (ବଶୀଭୂତ କରିବା) 'ନାକଫୁଲା'(କ୍ରୋଧ), 'ନାକରେ କାଠି ପୁରେଇ ଛିଙ୍କିବା'(ଆପଦକୁ ବରଣ କରିବା), 'ନାକରେ ଦଉଡି ଲଗେଇ ଟାଣିବା'(ବାଧକରି କାମ କରାଇବା) ଇତ୍ୟାଦି ସମ୍ମାନହାନୀ ଅର୍ଥରେ ବ୍ୟବହୃତ ହୋଇଥାଏ ।

ସେହିପରି ଟୋପି, ଯେଉଁ ଜାତି ବା ସମାଜର ଲୋକେ ପିନ୍ଧନ୍ତି, ତାଙ୍କ ପାଇଁ ତାହା ବହୁତ ଇଜତ୍ ଓ ସମ୍ମାନର ବସ୍ତୁ । ବିଶେଷକରି ମୁସଲମାନ ଓ ଖ୍ରୀଷ୍ଟିଆନ ସମ୍ପ୍ରଦାୟର ଲୋକେ 'ଟୋପି ଉତାରିବା', 'ଟୋପି ଟାଣିବା', 'ଟୋପିକୁ ଗୋଡରେ ଦଳିବା' କାହାରି ଇଜତ୍ ନେବା ଓ ମାନ ସମ୍ମାନ କ୍ଷୁଣ୍ଣ କରିଦେବାକୁ ବୁଝାଏ ।

ନିଶ ଆଜି ମଧ ଇଜତ୍ ବା ଟେକର ସଂକେତ ବୋଲି ଧରାଯାଏ । ରାଜପୁତ୍, ମୋଗଲ, ଇଂରେଜଙ୍କ ଅମଳରୁ ସୌଭାଗ୍ୟବନ୍ତ କିମ୍ବା ସୈନ୍ୟସାମନ୍ତ, ଏପରିକି ସମ୍ଭ୍ରାନ୍ତ ପରିବାରର ବ୍ୟକ୍ତିମାନେ ଏପରି କୌଣସି ପରିସ୍ଥିତି ସୃଷ୍ଟି କରିବେ ନାହିଁ, ଯେପରି ତାଙ୍କର 'ନିଶ ତଳକୁ ହେବ' । କୌଣସି ବ୍ୟକ୍ତିର 'ନିଶରେ ହାତ ମାରିବା' ଅଗୌରବର ପରିଚାୟକ ମନେ କରାଯାଏ । 'ନିଶ ଉଚ୍ଚହେବା' ଟେକ ରହିବା ଅର୍ଥରେ ବୁଝାଯାଏ । ପରିବାରର କୌଣସି ମର୍ଯ୍ୟାଦାହାନୀ ଘଟିଲେ କେହିକେହି ସେ ପରିବାର ଲୋକଙ୍କର 'ନିଶ କଟିଗଲା' ବୋଲି କୁହାଯାଏ । ଥରେ ପୁରୀ ଗଜପତିଙ୍କର ଦାଢି ଖିଅର କଲାବେଳେ ଭଣ୍ଡାରୀ ହାତ ତାଙ୍କ ନିଶରେ ଲାଗିଯିବାରୁ ଗଜପତି ମହାରାଜ ଭଣ୍ଡାରୀ ବାପୁଡାକୁ ହାଣି ଦେବାକୁ ବସିଥିଲେ । ଏହା ଲେଖକଙ୍କ ସମ୍ମୁଖରେ ଘଟିବାର ଦେଖିଛି । ଅମୁକ କରାନହେଲେ 'ନିଶ ରଖିବି ନାହିଁ', 'ନିଶତଳକୁ ହେବ' ଇତ୍ୟାଦି କହି 'ନିଶକୁ ତାଉ ଦିଆଯାଏ', 'ନିଶର ବାଳ ଗୋଟା ଗୋଟା କରି ଗଣାହେବ', 'ଉଚ୍ଚ ନିଶ ତଳକୁ ହେବ', 'ମୁଛ ବା ନିଶ କାଟି ପକାଇବା', 'ମୁତରେ ନିଶ ଚାଞ୍ଛି ପକେଇବା', 'ନିଶ ଖିଅର ହୋଇ ପଡିବା' ପ୍ରଭୃତି ଅନ୍ୟକୁ ନୀଚ ପ୍ରତିପାଦିତ ପାଇଁ ଧମକ ଦିଆଯାଇଥାଏ । କେବଳ ଗର୍ବରେ ନୁହେଁ ଗୌରବ ପାଇଁ ମଧ 'ନିଶ ଆଉଁଷିବା', 'ନିଶଛିଡାକରି ରଖିବା', 'ନିଶକୁ ଥାପୁଡାଇବା' ଏସବୁ ବାଞ୍ଛିତ ଓ ପ୍ରଶଂସିତ ହେବାର ସଂକେତ ।

କାହାରି 'ସଦ୍‌ଗୁଣ' ପାଇଁ ଆକର୍ଷିତ ହୋଇ ତାଙ୍କପ୍ରତି ପ୍ରଦର୍ଶିତ 'ସଦ୍‌ଭାବ' ଓ ଶ୍ରଦ୍ଧା

ସବୁବେଳେ ଶାଘ୍ୟ । ଏହା କେବଳ ସତ୍‌କର୍ମର ସମ୍ମତି ସୂଚକ ନୁହେଁ ବରଂ ଗୌରବ ଓ ଉନ୍ନତିର ପରିଚାୟକ । ଏହି ଆଦରଣୀୟ ଓ ସମ୍ମାନୀୟ ବ୍ୟକ୍ତିଙ୍କ ଆଦେଶ ଓ ଉପଦେଶରେ ଲୋକ 'ମନର ବଳ' ଓ 'ବିବେକର ଅନୁଜ୍ଞା' ମଧ୍ୟ ପାଇଥାଆନ୍ତି । ତାଙ୍କର ପରାମର୍ଶ 'ମୁଣ୍ଡରେ ଥୋଇ' ଥାଆନ୍ତି । ଏହି 'ଶ୍ରଦ୍ଧାବାନବ୍ୟକ୍ତି'ଙ୍କୁ ସମାଜରେ 'ଅଗ୍ରଗଣ୍ୟ ସ୍ଥାନ' ଦିଆଯାଇଥାଏ । ପରିବାର ମଧ୍ୟରେ 'ଶ୍ରଦ୍ଧେୟହେବା' ସହିତ ସମାଜରେ ମଧ୍ୟ 'ଶ୍ରଦ୍ଧାସ୍ପଦ' ହୁଅନ୍ତି । ସମାଜରେ 'ଆତ୍ମଦର୍ଶକ', 'ଆତ୍ମନିଷ୍ଠ' ଓ 'ଆତ୍ମବାନ୍ ବ୍ୟକ୍ତି' ସମାଜ ଓ ଦେଶର 'ପଥପ୍ରଦର୍ଶକ' ମଧ୍ୟ ହୋଇଥାଆନ୍ତି । ଅନ୍ୟଦିଗରେ 'ଆତ୍ମପ୍ରବଞ୍ଚକ', 'କୁପଥଗାମୀ'-'ଆତ୍ମମ୍ଭରି'-'ଆତ୍ମ-ସମ୍ଭ୍ରମହୀନ', 'ଆତ୍ମଶ୍ଳାଘାପ୍ରିୟ' ବ୍ୟକ୍ତି ସମାଜରେ ଘୃଣିତ ହୋଇଥାଏ । ଆପଣା 'ନାମବୁଡାଇ' କେବଳ ମାତ୍ର 'ନାମଧାରକ' ଅର୍ଥାତ ସେ ବ୍ୟକ୍ତି 'ନାମମାତ୍ର ଧାରଣ କରିଥାଏ', ଅଥଚ ନାମ ଅନୁସାରେ କୌଣସି କର୍ମ କରେ ନାହିଁ । କେହି କେହି ଅର୍ଥ ବଳରେ କି ଜନବଳରେ କିମ୍ବା ଶାରୀରିକ ବଳରେ ବଳୀୟାନ ହେଲେ ସୁଦ୍ଧା କେବଳ 'ନାମବଡା ଦର୍ଶନ ଥୋଡା' ତାଲିକାରେ ସ୍ଥାନ ପାଆନ୍ତି । 'ନାମମାତ୍ର' ବଞ୍ଚନ୍ତି ସତ, 'କୁଳର ନାମ ବୁଡାଇ' 'ଆତ୍ମ ପ୍ରବଞ୍ଚକ' ଭାବରେ ସମସ୍ତଙ୍କ ଅନ୍ତରରୁ ବିତାଡିତ ହୋଇ ଥାଆନ୍ତି ।

**ତୋଷାମଦ ବା ଖୋସାମଦ–** ଆନନ୍ଦ ଓ ସ୍ୱାର୍ଥ ହାସଲର ଏକ ସହଜ ସାଧନ । ଖୁସି ଓ ଆମଦ ଏ ଦୁଇ ଶବ୍ଦର ସଂଯୋଗରେ ଖୋସାମଦର ଉତ୍ପତ୍ତି । ଖୋସାମତ କଥାରେ ଅନ୍ୟଙ୍କୁ ଖୁସି କରାଇ ବେଶ୍ ଫାଇଦା ଉଠାଯାଇଥାଏ । ଅନ୍ୟଙ୍କୁ ଆନନ୍ଦ ଦେବା ପାଇଁ ଅନେକ ସମୟରେ 'ଚିକ୍‌ଣଚାକଣ' ବା 'ଛଇଳାକଥା' କହିବାକୁ ପଡେ । ଯେ ଅନ୍ୟଙ୍କୁ 'ପ୍ରିୟବାକ୍ୟ' କହି ତୋଷ କରିପାରେ, ତାକୁ 'ତୋଷାମଦିଆ' ବା 'ଖୋସାମତିଆ' ବା 'ଚାଟୁକାର' କହନ୍ତି । କାଳକ୍ରମେ ପ୍ରୟୋଜନରୁ ଅଧିକ ମାତ୍ରାରେ କହିବା ହେତୁ 'ଚାଟୁକାର' ବା 'ଖୋସାମତିଆ' କୁ କୁଦୃଷ୍ଟିରେ ଦେଖିବା ପରମ୍ପରା କ୍ରମେ ଏକ ଅଭ୍ୟାସଗତ ପ୍ରବୃତ୍ତି ହୋଇଯାଇଛି । 'ଚାଟ' ଶବ୍ଦ ଗତାନୁଗତିକ ଭାବେ 'ବିଶ୍ୱାସଘାତକ' ଅର୍ଥରେ ଗୃହୀତ ହୋଇଛି । ସଂସ୍କୃତ ଅଭିଧାନ ଅନୁସାରେ 'ଚାଟ' ବିଦ୍ୟାର୍ଥୀ ଅର୍ଥରେ ବ୍ୟବହୃତ ହୋଇଥାଏ । ଯେଉଁ ସ୍ଥାନରେ 'ଚାଟ' ବା ବିଦ୍ୟାର୍ଥୀ ଗଣଙ୍କୁ ଶିକ୍ଷାଦାନ କରାଯାଏ ତାକୁ 'ଚାଟଶାଳୀ' କୁହାଯାଏ । ସେହି ଦୃଷ୍ଟିରୁ 'ଚାଟୁକାର' ଅର୍ଥ ଯେ 'ପ୍ରିୟବଚନ' କହେ , କହିବା ସଙ୍ଗତ ହେବ । ଅନ୍ୟ ଅର୍ଥରେ ମୁଖ ରୋଚକ ଖାଦ୍ୟକୁ 'ଚାଟ' କହିଥାଆନ୍ତି । ସେ ଅର୍ଥରେ ଯେଉଁ ବ୍ୟକ୍ତି 'ମୁଖରୋଚକ' ବା 'କର୍ଣ୍ଣରୋଚକ' କଥା କହିବାରେ ପାରଙ୍ଗମ, ତାକୁ 'ଚାଟୁକାର' କହିବା ଅଧିକ ସଙ୍ଗତ ହେବ । ନିଜର ସ୍ୱାର୍ଥସାଧନ ବା କୁଉଦ୍ଦେଶ୍ୟରେ

ମାତ୍ରାଧିକ 'ଚାଟୁବାକ୍ୟ' କହିବା ଦୃଷ୍ଟିରୁ 'ଚାଟୁକାର' କୁ ଏକ ନିନ୍ଦନୀୟ ଚରିତ୍ର ହିସାବରେ ଗ୍ରହଣ କରାଯାଇଛି ଏବଂ କାଳକ୍ରମେ 'ବିଦୂଷକ' ଓ 'ଚାଟୁକାର' ମଧ୍ୟରେ ଅର୍ଥଗତ ଏକ ଦୀର୍ଘ ବ୍ୟବଧାନ ଟାଣି ଦିଆଯାଇଛି । 'ବିଦୂଷକ' ବା ମନୋରଞ୍ଜନକାରୀ 'ବିଦୂଷ' ବା ପଣ୍ଡିତ ଶବ୍ଦରୁ ଆସିଅଛି । ଚାଟୁକାର ମଧ୍ୟ 'ଚାଟ' ବା ବିଦ୍ୟାର୍ଥୀ ଶବ୍ଦରୁ ଆସିଥିବାରୁ ପ୍ରାୟ ସମଅର୍ଥ ସମ୍ପାଦନ କରେ ।

ଧନୀ ବା ଶକ୍ତିଶାଳୀ ମୁନିବଙ୍କୁ ଖୁସୀ କରିବା ପାଇଁ, ମନନେବା ପାଇଁ ବା ପ୍ରିୟଭାଜନ ହେବା ପାଇଁ ଚାଟୁକାର ଅନେକ ସମୟରେ ତା କଥାରେ ପ୍ରୟୋଜନାଧିକ 'ମଖନମରା' ବା 'ମଲାମଖଣ୍ଡି' କଥା କହି ମାଲିକ, ଖାଉନ୍ଦ ବା ବନ୍ଧୁର ମନ ବହଲାଇ ତାକୁ 'ବିପଥଗାମୀ' କରାଏ ନତୁବା ନିଜର 'ଉଦ୍ଦେଶ୍ୟ ସାଧନ' କରାଇ ନେଇଥାଏ । ଏହି ଅଭ୍ୟାସ ବା କର୍ମକୁ 'ପାଦଚାଟିବା' , 'ତଳିପା ଆଉଁସିବା', 'ଚଉକାଠରେ ମୁଣ୍ଡ ପିଟିବା', 'ଗୋଡରେ ନାକ ରଗଡିବା', 'ଗୋଡରେ ମୁଣ୍ଡ ଛେଚିବା, 'କୁକୁର ଭଳି ଲାଞ୍ଜ ହଲେଇବା' ଇତ୍ୟାଦି ତୋଷାମଦ ସହିତ ଅନୁନୟ-ବିନୟ ଭାବ ମଧ୍ୟ ନିହିତ ଥାଏ । ଅତଏବ 'ଚିକ୍କଣିଆକଥା' ବା 'ମଖନ ମାରିବା' ଭଳି ଏହା ସେତେ ସୂକ୍ଷ୍ମପନ୍ଥା ନହୋଇ 'ଆତ୍ମ ସମ୍ମାନ ହୀନ' ଓ 'ଉଦ୍ଦେଶ୍ୟମୂଳକ' ବୋଲି ଅଭିହିତ ହୋଇଥାଏ । ସ୍ୱାଭିମାନର ଗଭୀର ସମ୍ବନ୍ଧ ଲୁଣ (କୃତଜ୍ଞତା) ସହିତ ରହିଛି । ଏଣୁ 'ଲୁଣ ଖାଇବା' 'ଅମୁକର ଲୁଣ ମୋ ପ୍ରତ୍ୟେକ ରକ୍ତ କଣିକାରେ କଥା କହୁଛି', 'ଲୁଣ ଖାଇ ଗୁଣ ଗାଇବା', 'ଲୁଣର ମର୍ଯ୍ୟାଦା ରଖିବା' ଇତ୍ୟାଦି ରୂଢ଼ି ପ୍ରତ୍ୟୟ ସ୍ୱାମୀଭକ୍ତି ଓ କୃତଜ୍ଞତାର ଭାବ ବ୍ୟକ୍ତ କରିଥାଏ । 'ନିମକଚାକର' (ଆଜ୍ଞାକାରୀ ଭୃତ୍ୟ), 'ନିମକ ଶୁଝିବା' (ପ୍ରଭୁବତ୍ସଳ ହେବା), 'ନିମକସଚ୍ଚା' (ବିଶ୍ୱାସୀ), 'ନିମକହାରାମ' (କୃତଘ୍ନ), 'ନିମକ ହାଲାଲ'(ନିମକ ସଚ୍ଚା), 'ଲୁଣ ନ ମାନିବା', 'କଲିଜା ପଥର କରିବା', 'ତରବାରି ଧାରରେ ଚାଲିବା', 'ଜୀବନ ହାତରେ ରଖି ବୁଲିବା', 'ମୁଣ୍ଡରେ ଫିଟାବାନ୍ଧି ଫିତୁରାଚ' ଇତ୍ୟାଦି ତ୍ୟାଗ ଓ ସାହସର ପରିଚୟ ଦିଏ ।

ନିୟନ୍ତ୍ରଣ ସମ୍ବନ୍ଧିତ ରୂଢ଼ିପ୍ରତ୍ୟୟର କେତେକ ଦୃଷ୍ଟାନ୍ତ ଦେଖିବାକୁ ମିଳେ । ସେଗୁଡିକ ହେଲା-'ଅଙ୍କୁଶ ଲଗେଇବା', (ପ୍ରତିବନ୍ଧକ ରଖିବା), 'ଲଗାମ ଢିଲା କରିବା' 'ଲଗାମ କସିବା', (କର୍ତ୍ତୃତ୍ୱରେ ରଖିବା), 'ରଶି ଖେଞ୍ଚିବା', 'ବାଗରେ ରଖିବା', (କର୍ତ୍ତୃତ୍ୱ ରଖିବା) 'ହାତକୁ ଆସିବା', 'ହାତରୁ ଖସିଯିବା' 'ଉଡିଯିବା', 'ଧରା ନ ଦେବା', 'ହାତର ଚଢେଇ ଖସିଯିବା', 'ବାଗଡୋର କସିବା', 'ବାଗିଆବାଗି କରିବା' ଇତ୍ୟାଦି ।

ଲୋଭ ଓ ସ୍ୱାର୍ଥ ସମ୍ବନ୍ଧୀୟ ରୂଢ଼ି ପ୍ରତ୍ୟୟରେ ଆମେ ସଚରାଚର ଏହା ପାଇଥାଉ- 'ମନ ଖଇଖଇ ହେବା', 'ମନ କିମିଚି କିମିଚି ହେବା', 'ମନ୍ ଉଡିବା', 'ମନ ଟଳୋଇବା',

'ମନ ଡାକିବା', 'ମନ ବଢ଼ିବା', 'ମନ ବଳିବା', 'ମନ ବନ୍ଧଲା', 'ମନ ବିକିନେବା', 'ମନ ମତା', 'ମନମୋଟା', 'ମନମୁଖୀ', 'ଲୋଭକର', 'ଲୋଭଜନକ', 'ଲୋଭବନ୍ତ', 'ଲୋଭେପାପ, ପାପେ ମୃତ୍ୟୁ', 'ଲୋଭାକୀ', 'ଲୋଭ୍ୟମାନ', 'ମନ ନ ମାନିବା', 'ଜିଭ ନାଳଟା', 'ଜିଭ ହୁଡ଼ିବା', 'ଗଣ୍ଡିକଟା', 'ମନ ଖସିବା', 'ମୁହଁରୁ ନାଳ ବୋହିବା', 'ମୁହଁରେ ଲାଗିବା' ଇତ୍ୟାଦି ।

ସ୍ୱାର୍ଥ ଲୋଭର ଅନ୍ୟ ଏକ ରୂପପ୍ରବୃତ୍ତି । ପାଇବାର ପ୍ରବୃତ୍ତି ଯେତେବେଳେ ପ୍ରବଳ ହୁଏ, ବ୍ୟକ୍ତିର ମନୋବୃତ୍ତି ସଂକୁଚିତ ହୋଇଯାଏ । ସେତେବେଳେ ସେ କେବଳ ନିଜ କଥା ହିଁ ଚିନ୍ତା କରିଥାଏ । 'ନିଜ ଗରଜ ପାଇଁ ବାଉଳା' ହୋଇପଡେ । 'ଗଧକୁ ବାପ ଡାକେ', 'ଗରଜର ଗୁଲାମ', 'ଗରଜର ଗୁରୁ । ସ୍ୱାର୍ଥ ପାଇଁ 'ଚାବୁକ ଖାଇ ଲାଞ୍ଜ ହଲାଏ', 'ଗଡ ଜିଣେ', 'କିଲା ଫତେ କରେ', 'ଘୁସଖିଆ ଘୁଷୁରି' ବୋଲାଏ । 'ଲାଞ୍ଜକଟା ଲାଞ୍ଜୁଆ', ଅନ୍ୟକୁ ଚିତା କାଟିବା ପାଇଁ 'ଲାଙ୍ଗୁଳ ପାଙ୍ଗୁଳ ହୁଏ' । 'ଲାଙ୍ଗୁଡ ବାନ୍ଧି', 'ଲାଜ ବନ୍ଧକରେ' (ବୃଥାପ୍ରତ୍ୟାଶାକାରୀ ଭଳି) 'କପଟ ସନ୍ୟାସୀ', ସାଜି 'ଖିଆଦତ୍' (ବେଇମାନି) ବାଟ ଖୋଜେ ।

ରୂଢ଼ିପ୍ରତ୍ୟୟରେ ସ୍ୱାର୍ଥର ସମ ଅର୍ଥ ରୂପରେ 'ଅରମାନ' (ଅର୍ଥ-ଲାଳସା, ଚିରପୋଷିତ ଆଶା ବା ପ୍ରତିହିଂସା ଚରିତାର୍ଥ କରିବା ପାଇଁ) ମେଣ୍ଟାଇବା ପାଇଁ ମହତ୍ୱାକାଂକ୍ଷାର ରୂପ ମଧ୍ୟ ନେଇଥାଏ । ପୁଅର ବାହାଘର ଧୁମଧାମରେ କରିବା ପାଇଁ ମା'ର ଅରମାନ ହୋଇଥାଏ । ସେହିପରି ପୁଅର କୌଣସି ଭଲ ଚାକିରୀ ପାଇଁ ବାପର ଅରମାନ ହୋଇଥାଏ । ଇତିହାସରେ ବଡବଡ ରାଜା ବା ସମ୍ରାଟମାନଙ୍କର ରାଜ୍ୟ ବଢାଇବା ପାଇଁ ଦିଗ୍‌ବିଜୟର ଅରମାନ ଦେଖାଯାଉଥିଲା । କାହାରି କୌଣସି ମହତ୍ତ୍ୱାକାଂକ୍ଷା ଅନ୍ୟପାଇଁ କଷ୍ଟଦାୟକ ବା ହାନିକାରକ ହେଲେ ମଧ୍ୟ ସେହି ଉଚ୍ଚାଭିଳାଷ ଅନ୍ୟ ପକ୍ଷରେ ସ୍ୱାର୍ଥସିଦ୍ଧି ପାଇଁ ଚରିତାର୍ଥ କରାଯାଉଥିଲା । ଏହି ମର୍ମରେ କେତୋଟି ରୂଢ଼ି ପ୍ରତ୍ୟୟ ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା । 'ଉଚ୍ଚାଭିଳାଷ ପୂରଣ', 'ଅରମାନ ନ ମେଣ୍ଟିବା', 'ମନର ଅରମାନ ମନରେ ରହିବା', 'ସ୍ୱାର୍ଥତ୍ୟାଗ କରିବା', 'ସ୍ୱାର୍ଥ ପଣ୍ଡିତ ବନିବା' (ସ୍ୱାର୍ଥସାଧନରେ ଚତୁର), 'ସ୍ୱାର୍ଥପର ହେବା', 'ସ୍ୱାର୍ଥବଳି ଦେବା', 'ସ୍ୱାର୍ଥବୁଦ୍ଧି', 'ସ୍ୱାର୍ଥଲାଭ', 'ସ୍ୱାର୍ଥସାଧକ', 'ସ୍ୱାର୍ଥାନ୍ଧ', 'ସ୍ୱାର୍ଥାନ୍ୱେଷଣ', 'ଅଭିଷଙ୍ଗାଭିରୁଚି', 'କ୍ଷମତାଲୋଲୁପ', 'ଲୋଭବଚ', 'ଲାଳଚାଖୋର', 'ଲାଭର ପିଆରା', 'ଲାଭୈଷୀ', 'କ୍ଷମତା ଲୋଲୁପ' ଇତ୍ୟାଦି ।

କୌଣସି ଉତ୍ତମ କାର୍ଯ୍ୟ ପାଇଁ ଯେତେବେଳେ ଆମେ ଆନନ୍ଦ ଲାଭ କରୁଁ, ନିଜ ଦେଶ କିମ୍ବା ଜାତି ପାଇଁ ଯେତେବେଳେ ଗୌରବାନ୍ୱିତ ବୋଧ କରୁଁ, ଆମର ଗର୍ବବୋଧ

ହୁଏ । କାରଣ ସେଥିରେ ବ୍ୟକ୍ତିଗତ ଉପଲବ୍ଧି ବା ବ୍ୟକ୍ତିଗତ ଶ୍ରେଷ୍ଠତାର ଦମ୍ଭ ବା ଅହଂଭାବ ନଥାଏ । କିନ୍ତୁ ବିନାକାରଣରେ ଯେବେ ନିଜର ଶ୍ରେଷ୍ଠତା ଅନ୍ୟଉପରେ ଜାହିର କରୁଁ, ସେଠାରେ ଆମର କ୍ଷୁଦ୍ରତାର ପର୍ଦାଫାସ ହୋଇଯାଏ ଏବଂ ସେତେବେଳେ ଅହଂକାରର ସୀମାରେ ବିଚରଣ କରି ଥାଉଁ । ସାଧାରଣ ବ୍ୟବହାରରେ ଆମେ ଗର୍ବ ଓ ଅହଂକାର ମଧ୍ୟରେ ଫରକ୍ ବୋଧକରି ନଥାଉଁ, କାରଣ କେଉଁ କ୍ଷଣରେ ଗର୍ବତାର ଗରିମାରୁ ବିଚ୍ୟୁତ ହୋଇ ଅହଂକାର ହୋଇ ଯାଇଥାଏ, ଆଉ କେତେବେଳେ ଅହଂକାର ବୃହତ୍ ବା ସମଷ୍ଟିଗତ କାର୍ଯ୍ୟରେ ସାମିଲ ହୋଇ ଗର୍ବର ରୂପ ନିଏ, ତାହା ନିର୍ଣ୍ଣୟ କରିବା କଷ୍ଟକର ହୋଇଯାଏ । ତଥାପି ଏ ଦୁହିଁଙ୍କ ମଧ୍ୟରେ ତଫାତ୍ ଦେଖାଯାଇଥାଏ । ଗର୍ବର ଅନୁଭବ ଅଳ୍ପଲୋକଙ୍କ ମଧ୍ୟରେ ହୋଇଥାଏ । ସାଧାରଣତଃ ଅତି କମ୍ ସମୟରେ ଉଦ୍ରେକ ଆମେ ଗର୍ବର ଆବରଣରେ ନିଜ ଅହଂକାରକୁ ହିଁ ବ୍ୟକ୍ତ କରିଥାଉଁ । ଯେପରି 'ଛାତି ଫୁଲେଇ ଚାଲିବା', 'ଛାତି କୁଣ୍ଢେମୋଟ ହେବା', 'ଛାତି ଗର୍ବରେ ଫୁଲି ଉଠିବା', 'ଛାତି ଚଉଡା ହେବା', 'ମୁଣ୍ଡ ଉଞ୍ଚାକରି କହିବା', 'ମିଜାଜ୍ ଆକାଶ ଛୁଇଁବା', 'ମିଜାଜ୍ ନମିଳିବା', 'ମିଜାଜ୍ ଶିଖର ଚଢ଼ିବା', 'ମୁଣ୍ଡ ଉଠାଇ ଚାଲିବା' ଇତ୍ୟାଦି ରୂଢ଼ି ଗର୍ବଭାବର ବ୍ୟଞ୍ଜନା କରିଥାଏ । ଏଥିରେ ଅହଂକାରଭାବ ନଥାଏ । କିନ୍ତୁ 'ଅକଡିଯିବା', 'ଅକଡବାଜିଆ ହେବା', 'ଅକଡା ଅକଡ', 'ଅକଡାଇବା', 'ଆଖିରେ ପରଳ ଛାଇବା', 'ଆସ୍‌ମାନ୍‌ରେ ବିଚରଣ କରିବା', 'ଆକାଶରେ ବତୀ ଜାଳିବା', 'ସ୍ୱର୍ଗକୁ ଚଢ଼ିଯିବା', 'ଅହମିକା ଦେଖାଇବା', 'ଅହଂଭାବରେ ରହିବା', 'ଆତ୍ମବଡିମାରେ ବାଟଚାଲିବା', 'ଦିମାକ୍ ଚଢ଼ିବା', 'ଦିମାକ୍ ସପ୍ତମ ସ୍ୱର୍ଗରେ ରହିବା', 'ଗୋଡ ମାଟିରେ ନଲାଗିବା', 'ନାକରେ ମାଛି ବସିବାକୁ ନଦେବା' ଇତ୍ୟାଦି ନିଶ୍ଚିତ ରୂପରେ ଘମଣ୍ଡ ବା ଅହଂକାରର ଅଭିବ୍ୟକ୍ତି କରିଥାଏ । ଅନ୍ୟର ଏ ପ୍ରକାର ଆଚରଣ କାହାରିକି ଆନନ୍ଦ ଦିଏ ନାହିଁ । ଅହଂକାର ବିଷୟରେ ଗୋଟିଏ ନିଶ୍ଚିତ କଥା ଯେ ଅହଂକାରୀ ପାଇଁ ଅହଂକାରର ଅନୁଭୂତି ସୁଖକର ହେଲେ ମଧ୍ୟ ଅନ୍ୟପାଇଁ ବିରକ୍ତିକର ହୋଇଥାଏ । ଉପରୋକ୍ତ ରୂଢ଼ିପ୍ରତ୍ୟୟ ଗୁଡିକ ଏହାର ପୁଷ୍ଟି କରିଥାଏ ।

କ୍ରୋଧ ଓ ଭୟର ଦୁଷ୍ଟାତ୍ମକ ଅନୁଭୂତି ଅଧିକ ବ୍ୟାପକ । ଜୀବମାତ୍ରେ ଏହା ଜଣା ଅଧିକେ ଅନୁଭବ କରିଥାନ୍ତି । ପରୋକ୍ଷ ବା ପ୍ରତ୍ୟକ୍ଷ ହେଉ, ରୂଢ଼ିପ୍ରତ୍ୟୟରେ ଏହାର ବିଭିନ୍ନ ପ୍ରକାର ରୂପ ପ୍ରକାଶ ପାଇଥାଏ । ଯେପରି 'କ୍ରୋଧ ଉଠୁଲେ' ତ କେତେବେଳେ 'ରାଗଚଢେ', କେବେ ସାପଙ୍କ ଭଳି 'ରାଗ ଉକାରେ' ତ କେବେ 'ରାଗ ଉଛିମାରେ', 'ରାଗ ହଜମ ହୁଏ' ପୁଣି 'ରାଗବାନ୍ତି ହୁଏ । କାହାରି କାହାରି 'ନାକ ଆଗରେ ରାଗ' ପୁଣି

କାହାରି 'ତୁହାକୁତୁହା ରାଗମାଡେ' । ଅବସ୍ଥା ଏପରି ମଧ୍ୟ ହୁଏ ଯେ 'ରାଗରେ ପାଚିଯାଏ', 'ରାଗରେ ଯମ ପାଲଟିଯାଏ', 'ରାଗରେ ସେ କାହାରି ନୁହେଁ', ଏପରିକି 'ରାଗରେ ବାପର ମଧ୍ୟ ନୁହେଁ', 'ରାଗରେ ଚମଡା ଛାଲିନିଏ', ଏପରିକି 'ରାଗିଯାଇ ତିନିଶ ଦୁଇ ଦରଜାରେ ଛିଡା ହୁଏ', (୩୦୨ ଦଫା-ନରହତ୍ୟା) । କିନ୍ତୁ ଏପରି ଧୈର୍ଯ୍ୟବାନ ବ୍ୟକ୍ତି ଅଛନ୍ତି, ଯେଉଁମାନେ 'ରାଗ ପିଇଯାଆନ୍ତି', 'ରାଗକୁ ନିଜ ଭିତରେ ମାରି ଦିଅନ୍ତି', 'ରାଗ ହଜମ କରିପକାନ୍ତି' । 'ରାଗ ଚଢ଼ିଲେ ଚଣ୍ଡାଳ ହୁଏ', 'ରାଗଥଣ୍ଡା ହୁଏ', 'ରାଗଥଣ୍ଡା କରିବାକୁ ପଡେ' । 'କ୍ରୋଧ ଉଦ୍ରେକ ହୁଏ', 'କ୍ରୋଧ ନିର୍ବାପିତ ହୁଏ', 'କ୍ରୋଧ ତରଳେ', 'ରାଗପାଣି ହୋଇଯାଏ', 'ରାଗରେ ତେଲଭଳି ଫୁଟେ', 'ରାଗ ପାଣିରେ ଥଣ୍ଡା ହୁଏ', 'ରାଗରେ ପାଚିଯାଏ' ।

କ୍ରୋଧ ହେଲେ ବ୍ୟକ୍ତି ଉପରେ ମନ ଓ ଅଙ୍ଗ ପ୍ରତ୍ୟଙ୍ଗରେ ତାର ପ୍ରଭାବ ପଡେ । ଭିନ୍ନ ଭିନ୍ନ ରୂପରେ କ୍ରୋଧ ପ୍ରକାଶ ପାଇଥାଏ । 'ରାଗ ନିଆଁଝୁଲ ପରି ସୁଲୁଗେ', 'ରାଗରେ ନିଆଁହୁଏ', 'ଆଖି ନାଲି ହୁଏ', 'କ୍ରୋଧରେ ରକ୍ତଚକ୍ଷୁ ହୁଏ', 'ଆଖି ଜଳନ୍ତା ଅଙ୍ଗାର ଭଳି ଜଳେ', 'କ୍ରୋଧରେ ଭସ୍ମକଲାଭଳି' ଚାହେଁ, ରାଗରେ ରକ୍ତ ଚାଉଳ ଚୋବାଏ, ସତେ ଯେପରି 'ଆଖିରୁ ନିଆଁ ବାହାରୁଛି' । 'ଦାନ୍ତ କାମୁଡେ', 'ରାଗି ଦାନ୍ତ କଡ଼ମଡ଼ କରେ', 'ଦାନ୍ତ ରଗଡେ', 'ହୃଦୟରେ କ୍ରୋଧାଗ୍ନି ପ୍ରଜ୍ୱଳିତ' ହୁଏ । ବାହ୍ୟ ଅଭିବ୍ୟକ୍ତି ଛଡା ଅନ୍ୟରୂପ ଯଥା 'ରାଗରେ ପିତ୍ତ ଜଳେ', 'ତଳିପାରୁ ରାଗ ଚଢେ', 'ମୁଣ୍ଡରେ ନିଆଁଲାଗେ', 'ଗୋଡରୁ ମୁଣ୍ଡ ଯାଏ' ରାଗରେ ଜଳିଯାଏ, 'କଳିଜାରେ ନିଆଁ ଲାଗିଯାଏ', 'ରକ୍ତ ତାତିଯାଏ', 'ରକ୍ତ ମୁହଁକୁ ମାଡିଆସେ', 'ଆଖି ହୋମକୁଣ୍ଡ ଭଳି ଦାଉଦାଉ ହୁଏ', 'ଜଳି ପାଉଁଶ ହୋଇଯାଏ', 'ଦିହରେ ନିଆଁ ମାଡେ', 'ମୁଣ୍ଡ ଗରମ ହୁଏ', 'ମଗଜ ଗରମ ହୁଏ', 'ଦିମାକ୍ ଚିଡିଯାଏ', 'ମୁଣ୍ଡରୁ ଗୋଡ଼ଯାଏ ନିଆଁ ଲାଗିଯାଏ' ଇତ୍ୟାଦି କ୍ରୋଧୀର ମାନସିକ ଅବସ୍ଥାର ପରିଚୟ ଦେଇଥାଏ । କ୍ରୁଦ୍ଧ ବ୍ୟକ୍ତି 'ଦାନ୍ତ ଉପାଡି ଫିଙ୍ଗିବା', 'ରକ୍ତ ପିଇଯିବା', 'ଚଟଣୀ କରିଦେବା' ପ୍ରଭୃତି ରୂଢ଼ିପ୍ରତ୍ୟୟ କହି ଧମକ ଦେଇଥାଏ । ଲୋକେ 'ଜଳନ୍ତା ନିଆଁରେ ପାଣି ପକାଇବା' ପରିବର୍ତ୍ତେ 'ଲିଭିବା ନିଆଁକୁ ଫୁଙ୍କନ୍ତି', 'ନିଆଁରେ ଘିଅ ପକାନ୍ତି' ।

କ୍ରୋଧରେ ଭୟର କାରଣ ଅତ୍ୟନ୍ତ ବ୍ୟାପକ ହୋଇନଥିଲେ ମଧ୍ୟ କିଛି ଭୟର ସୂଚନା ମିଳିଥାଏ । ଯେପରି 'କଲିଜା କମ୍ପିବା', 'କଲିଜା ବା ଛାତି ପଥର କରିବା', 'କଲିଜା ଧକ୍‌ଧକ୍ ହେବା', 'କଲିଜା ଶୁଖିଯିବା', 'ପିଳେଇ ପାଣି ହେବା', 'ଜୀବନ ଜିଭ ଅଗକୁ ଆସିବା', 'ମନ ଉଚ୍ଛନ୍ନ ହେବା', 'ଲହୁ ଶୁଖିଯିବା', 'ହାତ କମ୍ପିବା',

'ଗୋଡହାତ ଥଣ୍ଡା ହୋଇଯିବା । ଅତିରିକ୍ତ ଭୟରେ 'ଲୁଗା ଖୋଲିଯିବା', 'ପରିସ୍ରା କରି ପକାଇବା', 'କଲିଜାରେ ସାପ ଚାଲିବା', 'ଜୀବନ ବୁଡିବା ଉଠିବା' ମଧ୍ୟ ହୋଇଥାଏ ।

**ଈର୍ଷା** ଏକ ଭାବ-ଯାହା ସବୁଠାରୁ କଷ୍ଟଦାୟକ ହୋଇଥାଏ କାରଣ ଈର୍ଷାର କୌଣସି ସୀମା ନାହିଁ । ଏହାର କୌଣସି ବସ୍ତୁଗତ ଆଧାର ନଥିବାରୁ ଈର୍ଷାଜନିତ ଦୁଃଖର ଶେଷ ନାହିଁ । ଅନ୍ୟର ଉନ୍ନତି ଦେଖି କଷ୍ଟପାଇବା ଏପରି ଏକ କାରଣ, ଯାହା ବହୁ କାଳ ପର୍ଯ୍ୟନ୍ତ ମନ ମଧ୍ୟରୁ ଯାଏ ନାହିଁ । ଆମ ପାଖରେ ଯେଉଁ ଜିନିଷ ନାହିଁ, ତାର ଅଭାବବୋଧ ଆମକୁ ଏତେ ଅଶାନ୍ତ ବାତାବରଣ ମଧ୍ୟରେ କାଳାତିପାତ କରିବାକୁ ବାଧ୍ୟ କରେ ଯେ, ପାଖରେ ଥିବା ବସ୍ତୁକୁ ଭୋଗ କରିବାର ଆନନ୍ଦ ଲାଭରୁ ମଧ୍ୟ ଆମକୁ ବଞ୍ଚିତ କରେ । ଈର୍ଷା ହେତୁ ଦେହ ଜଳେ', 'ଛାତି ଜଳାପୋଡା' ହୁଏ, 'ଦେହରେ ନିଆଁ ଲଗାଇଲା ପରି ଲାଗେ । ଦ୍ୱେଷ ବା ପରଶ୍ରୀକାତରତା କାରଣରୁ 'ମନ ଜଳେ', 'ଗୋଡରୁ ମୁଣ୍ଡ ଯାଏ' ଜଳିଯାଏ । ଏହିପରି 'ଈର୍ଷା ପରାୟଣ' ବ୍ୟକ୍ତି ଶାନ୍ତିରେ ଶୋଇପାରେ ନାହିଁ । ଖାଇପାରେ ନାହିଁ । ମନଖୋଲି କଥାବାର୍ତ୍ତା ମଧ୍ୟ କରିପାରେ ନାହିଁ ।

**'ଘୃଣା'** ଏକ ନିନ୍ଦନୀୟ, ଅବଜ୍ଞା, ଅଶ୍ରଦ୍ଧା, ବିଦ୍ୱେଷ ସୂଚକ ଭାବ । ଯାହାଙ୍କ ପ୍ରତି ଏହା ପ୍ରୟୋଗ କରାଯାଏ, ତାଙ୍କ ପକ୍ଷରେ ଏହା ଅତ୍ୟନ୍ତ ଦୁଃଖଦାୟକ । କୌଣସି ବସ୍ତୁ ବା କାର୍ଯ୍ୟ ରୁଚିକର ନ ହେଲେ ତାହାପ୍ରତି ଆକର୍ଷଣ କମିଯାଏ । ଏହି ଅରୁଚି ଅତି ତୀବ୍ର ହେଲେ ତାକୁ ଘୃଣା କହନ୍ତି ଏବଂ ଅଳ୍ପ ହେଲେ ତାକୁ ଅରୁଚି କହିଥାଆନ୍ତି । ଘୃଣା କିମ୍ବା ଅରୁଚି ହେଲେ ଆମେ ଅନ୍ୟକୁ ତୁଚ୍ଛ ଓ ହୀନ ନଗଣ୍ୟ ମନେ କରୁ । 'ଘୃଣା କରିବା', 'ଛେପ ପକାଇବା', 'ମୁହଁରେ ମୁତିବା' ଇତ୍ୟାଦି ସମସ୍ତ ଘୃଣାର ଅଭିବ୍ୟକ୍ତି ହେଲେ ରୂଢ଼ି ପ୍ରତ୍ୟୟ ମାଧ୍ୟମରେ ତାର ପରିପ୍ରକାଶ ଏହିପରି -'ଦୃଷ୍ଟିରେ ଘୃଣିତ ହେବା', 'ନଜରରୁ ଖସିଯିବା', 'ଦୃଷ୍ଟି ତଳକୁ ଯିବା', 'ମୁହଁ ବଙ୍କେଇବା', 'ମୁହଁ ଛିଣ୍ଡାଡିବା', 'ମୁହଁ ନଚାହିଁବା', 'ମୁହଁ ମୋଡିବା', 'ପଇସାକର ବୋଲି ଭାବିବା', 'କଉଡିକର ଲୋକ ଭାବିବା', 'ନିଆଁପାଉଁଶ ପରି ଭାବିବା', 'ନାକଛିଣ୍ଡାଡିବା', ଅତି ଦୁର୍ଗନ୍ଧକୁ ଘୃଣାରେ 'ନାକ ଫାଟିବା', 'ମଗଜ ସଡିଯିବା', ଅତି ତୀବ୍ର ଶବ୍ଦ ପ୍ରତି 'ମୁଣ୍ଡ ଖାଇବା', 'କାନ ଫାଟିବା', ଧନଲୋଭୀ ଓ କୃପଣକୁ 'କଣାର ଗଣ୍ଠିଲି ସାଉଁଟା', 'କଞ୍ଜୁଷ ମକ୍ଷିଚୁଷ', 'ପଇସା ଗଣ୍ଡିରେ ଜାକି ବସିବା', 'ଯକ୍ଷ ବନିବା', 'ଚୋଠାଚୋବା', 'ତେଲିଆ ସୁଣ୍ଢା ହେବା', 'ସୁଣ୍ଢିଆ ରାଜ ହେବା' ।

**ସଂକୋଚ** ଲଜ୍ଜାର ପରିଣତି ତଥା ଫଳସ୍ୱରୂପ । ଅର୍ଥାତ କୌଣସି ବ୍ୟକ୍ତି ଅନ୍ୟାୟ ବା ଅନୁଚିତ କାର୍ଯ୍ୟ କଲେ ଲଜ୍ଜାରେ ଅବନତ ହୋଇ ସଂକୋଚ ଅନୁଭବ କରିଥାଏ ।

ନିଜକୁ ଅନ୍ୟର ଦୃଷ୍ଟିରେ ତଳକୁ ନ ଖସିବା ପାଇଁ ଚେଷ୍ଟା କରିଥାଏ । ଏ ସମ୍ପର୍କିତ ରୂଢ଼ିପ୍ରତ୍ୟୟ ହେଲା - 'ଲଜ୍ଜାରେ ମରିଯିବା', 'ଲଜ୍ଜାରେ ବୁଡ଼ି ମରିବା', 'ଲାଜକୁ ବାଟି ଖାଇବା', 'ଲାଜକୁ ବିକି ଖାଇବା', 'ଲାଜକୁ ପୋତି ଖାଇବା', 'ବେହିଆ ଗାଣ୍ଡିରେ ବଥ ହେଲେ ଛାଇ ହୋଇଛି କହିବା', 'ସରମରେ ମରିଯିବା', 'ଲଜ୍ଜାପ୍ରଦ', 'ଲଜ୍ଜାବନତ', 'ଲଜ୍ଜାଭ୍ରମ ରହିତ', 'ଲଜ୍ଜାସରମ ହରାଇବା' ।

**ଅସ୍ଥିରତା** ଅଧୈର୍ଯ୍ୟ, ଅଧୀରତା, ଅନିଶ୍ଚୟତା ଆଦି ଭାବର ଅଭିବ୍ୟକ୍ତି । ଏହାକୁ ରୂଢ଼ିପ୍ରତ୍ୟୟ ଦ୍ୱାରା ଏହିପରି ବ୍ୟକ୍ତ କରାଯାଏ - 'ମନ ଚିଡ଼ିଚିଡ଼ା ହେବା', 'ଆଉଟୁ ପାଉଟୁ ହେବା', 'ମନ ଖାଲିଖାଲି ଲାଗିବା', 'ମନ କିମିତି କିମିତି ହେବା', 'ଅସ୍ଥିର ହେବା', 'ମନ ଆଉଟି ହେବା', 'ମନକୁ ପତଳା କରିବା', 'ମନକୁ ଲାଗିବା', 'ମନ ଘର ଧରିବା', 'ମନ ଚଗଲା ହେବା', 'ମନ ଚୂନା ହୋଇଯିବା', 'ମନ ଛାଡ଼ିଯିବା', 'ମନ ଜଳିଯିବା', 'ମନ ଦଉଡ଼ିବା', 'ମନ ପୋଡ଼ିବା', 'ମନ ଫାଟିବା', 'ମନ ଫିକା ପଡ଼ିଯିବା', 'ମନ ଫେରିବା', 'ମନ ବାଉଳା ହେବା', 'ମନ ବିଗିଡ଼ିବା', 'ମନ ବିରସ ହେବା', 'ମନ ଭାଙ୍ଗିବା', 'ମନ ମକଚି ହୋଇଯିବା', 'ମନ ମୁରୁଛ', 'ମନର କାଳି', 'ମନର ଜ୍ୱାଳା', 'ମନଶ୍ଚାଞ୍ଚଲ୍ୟ', 'ମନ ହାଇଁପାଇଁ ହେବା' ।

**ଉତ୍ତେଜନା ଓ ବିଦ୍ରୋହର ଭାବ** କିଛି ରୂଢ଼ିପ୍ରତ୍ୟୟ ଦ୍ୱାରା ବ୍ୟକ୍ତ ହୋଇଥାଏ । 'ନିଆଁ ଲଗାଇବା', 'ନିଆଁହେବା', 'ନିଆଁ ଜାଳିବା', 'ନିଆଁରେ ଘିଅ ଢାଳିବା', 'ନିଆଁରେ ପାଣି ପଡ଼ିବା', 'ଝଣ୍ଡା ଟେକିବା', 'ବିଦ୍ରୋହର ଝଣ୍ଡା ଉଠାଇବା', 'ବିଦ୍ରୋହାଚରଣ କରିବା', 'ବିଦ୍ରୋହାନଳ ବ୍ୟାପିବା', 'ବିଦ୍ରୋହର ଆହ୍ୱାନ ଦେବା', 'ଦାବ୍ୟଦରବାର କରିବା', 'ଦାଦାଗିରି ବାହିର କରିବା' ଇତ୍ୟାଦି ରୂଢ଼ିପ୍ରତ୍ୟୟ ବିଦ୍ରୋହାତ୍ମକ ଭାବ ପ୍ରକାଶ କରେ ।

**ଚିନ୍ତାର ଦୁଃଖାତ୍ମକ ଭାବ** ପର୍ଯ୍ୟାପ୍ତ କଷ୍ଟକର ହୋଇଥାଏ । 'ଅନ୍ତର୍ମନାଃ ହେବା', 'ଅନ୍ତର୍ମୁଖ ହେବା', 'ଚିନ୍ତନୀୟ', 'ଚିନ୍ତାକୁଳ ହେବା', 'ଚିନ୍ତାନ୍ୱିତ ହେବା', 'ଚିନ୍ତାଭର ରହିବା', 'ବୁକୁରେ ପଥର ଲଦା ହେବା', 'ବୁକୁରେ ହାତ ଦେବା', 'ଚିନ୍ତାରେ ବୁଡ଼ିବା', 'ମନକୁ ଚିନ୍ତା କୋରି ଖାଇବା', 'ମୁଣ୍ଡକୁ ଚିନ୍ତା ଘାରିବା', 'ମୁଣ୍ଡରେ ଚିନ୍ତା ପଶିବା', 'ମୁଣ୍ଡରେ ଚିନ୍ତାର ବୋଝ ଲଦାହେବା', 'ଚିନ୍ତାସମୁଦ୍ରରେ ଉବୁଟୁବୁ ହେବା', 'ମନର ବୋଝ', 'ମନ ହାଲୁକା ହେବା'; 'ଛାତି ଧୁକୁପୁକୁ ହେବା', 'ଛାତି ଜଳେଇବା', 'ଛାତି ଫାଟିଯିବା', 'ଛାତିରେ ମାରିହେବା' ଇତ୍ୟାଦି ବ୍ୟଞ୍ଜନା ଦୁଃଖାତ୍ମକ ରୂଢ଼ି ପ୍ରତ୍ୟୟ ଭାବରେ ବ୍ୟବହୃତ ହୁଏ ।

**ଆଳସ୍ୟ ଭାବର** ରୂଢ଼ିପ୍ରତ୍ୟୟ 'ସଚରାଚର ଏହିପରି ବ୍ୟବହୃତ ହେବାର

ଦେଖାଯାଇଥାଏ । ଯଥା- 'ଅଜଗର ଭଳି ପଡି ରହିବା', 'କୁକୁର ମୁହଁ ଚାଟିବା', 'ମୁହଁରେ ମାଛି ଲାଥ ମାରିବା', 'ମୁହଁରେ ମାଛି ଭଣଭଣ ହେବା', 'ହାତଗୋଡ ନ ହଲେଇବା', 'ଢୋଳେଇବା ରୋଗ ଧରିବା' ଅଳସୁଆପଣ, ଅଳସ ମେଣ୍ଟାଇବା, ଥକାସୀ ନାୟିକା । ଅନ୍ୟାନ୍ୟ ଭାବର ଅଭିବ୍ୟକ୍ତି ସମ୍ବଳିତ ରୂଢ଼ିପ୍ରତ୍ୟୟ । ଯଥା- 'ମାନ ମାରିବା', 'ମାନ ଅପମାନ', 'ମାନ ଅଭିମାନ' (ରୁଷାରୁଷି) । 'ମାନ ଭଞ୍ଜନ', 'ରୋଷକ ଚିଉ', 'ରୋଷକର୍କଶ ବ୍ୟବହାର', ରୋଷ ଜନିତ 'ରୋଷ ଜର୍ଜର', 'ରୋଷଦାହ', 'ରୋଷଦୃଷ୍ଟି', 'ରୋଷ ପରାୟଣ', 'ରୋଷ ପ୍ରଦୀପନ', 'ରୋଷଭର', 'ରୋଷ ଭାଷଣ', 'ରୋଷାକୁଳିତ', 'ରୋଷରେଷି'।

ଏହା ବ୍ୟତୀତ 'ଘରକଥା ପହିଲେ, ପଡିଶା ତା ପରେ', 'ନିଜ ଦହିକୁ ଖଟା ନକହିବା', 'ଆଖି ନାଲି କରିବା', 'କାନ୍ଧରେ କାନ୍ଧ ମିଳେଇ ଚାଲିବା', 'ଆଖିରେ ଭୋକ', 'ଆଖିରେ ଆଖିଏ ଶୋଷ', 'କଲମକୁ ଜୁହାର କରିବା', 'କୁକୁର ପେଟରେ ଘିଅ', 'ପାଉଁଶ ଛାଣିବା', 'କାନ୍ଧ ହଲେଇ ଚାଲିବା', 'ଗଳା ପର୍ଯ୍ୟନ୍ତ ବୁଡି ରହିବା', 'ଗରମ ହେବା', 'ଗୁଡ ଖାଇ କାକରାକୁ ନିନ୍ଦା', 'ଚକିର ଦୁଇ ପଟେ ପେଷି ହେବା', 'ଚିକଣ ପିନ୍ଧା, ଚିକଣ ଖିଆ', 'ଇତୁରା କ୍ଷୀରରେ ଲୁହ ଗଡେଇବା', 'ମୂଳରୁ ନାଶ', 'ମୂଳ ଦୋହଲିବା', 'ଦୋ-ହଇପାର ରାଣ ମାନିବା', 'ଲେଙ୍କୁଡି ମେଙ୍କୁଡି ଘୋଡେଇ', 'ବିଷ ଚଢିବା', 'ବିଷଦାନ୍ତ ଉପାଡିବା', 'ସମ୍ପର୍କ ବିଷପିତା ହେବା', 'ବିଷ ମାରିବା', 'ମନ ଚୋରି କରିବା', 'ମନ ଉଡିବା', 'ମନ ମୋହିବା', 'ମନ କଷାକଷି କରିବା', 'ମନ ହେଣ୍ଡିବା, 'ଜୀବନ ମରଣ ସମସ୍ୟା', 'ଜୀବନ ମୂର୍ଚ୍ଛା', 'ଜୀବନ ସଞ୍ଜାଳି', 'ମନପ୍ରାଣ ଲଗେଇବା', 'ଭଙ୍ଗାରୁଜା କରିବା', 'ଝାଡୁମାରି ଭୂତ ଛଡାଇବା', 'ବୁଡିଲା ଲୋକର ବାଳ ଧରିବା', 'ଚୋଇପିଟି ଗାଇବୁଲିବା', 'ଦୁନିଆଁ ଛତା', 'ଦୁନିଆଁ ଦଉଲତ୍', 'ଦୁନିଆଁ ଦୋରଙ୍ଗ', 'ଦୁବ ଚାଉଳ ପଡିବା', 'ଦୁଇହାତ ଟେକିବା', 'ଜଟାଘା'ରେ ଚୂନ ଲଗେଇବା, 'ପରନିଆଁକୁ ଡେଇଁବା', 'ବଢାଥାଳିରେ ବାଦ ସାଧିବା', 'ସାପ ପାଳିବା', 'ହାତକୁ ହାତ ମିଶାଇ' ପ୍ରଭୃତି ଅଜସ୍ର ରୂଢ଼ିପ୍ରତ୍ୟୟ ଆମ ଭାଷାକୁ ଖାଲି ଅଳଙ୍କୃତ ନୁହେଁ, ଜୀବନ୍ୟାସ ଦେବା ସହିତ ଭାବଗର୍ଭକ କରିଛି । ଲକ୍ଷ୍ୟ କଲେ ଜଣାଯାଏ ଯେ, ଆମେ ସମସ୍ତେ ପ୍ରତ୍ୟେକ ଦିନ, ପ୍ରତ୍ୟେକ ମୁହୂର୍ତ୍ତ, ପ୍ରତ୍ୟେକ କଥା, ଜଣା ଅଜଣାରେ ରୂଢ଼ିପ୍ରତ୍ୟୟ ପ୍ରୟୋଗ କରିଥାଉଁ । ନିତ୍ୟ ନୂତନ ଭାବ-ବ୍ୟଞ୍ଜନା ସହ ଅର୍ଥବହ ଓ ଅର୍ଥହୀନ ରୂଢ଼ି ବାକ୍ୟ ବ୍ୟବହାର କରିଥାଉଁ । ସେ ସମସ୍ତ ସଂଯୋଜିତ କଲେ ବିରାଟ ଗ୍ରନ୍ଥ ହେବ ।

# ରୂଢ଼ିପ୍ରତ୍ୟୟ : ଉନ୍ମେଷ ଓ ବିକାଶ

ରୂଢ଼ିପ୍ରତ୍ୟୟ ବା ବାଗ୍‌ଧାରା ଅଭିବ୍ୟକ୍ତିର ଏପରି ଏକ ରୀତି, ଯାହା ବିଶ୍ୱର ସମସ୍ତ ଭାଷାରେ ବିଭିନ୍ନ ରୂପରେ ଦେଖିବାକୁ ମିଳିଥାଏ । ସଂସ୍କୃତ ଅଥବା ପାଲୀ, ଗ୍ରୀକ୍ ହେଉ ବା ଲାଟିନ୍, ଆରବୀ ହୋଇଥାଉ ଅଥବା ଫାରସୀ, ସବୁ ଭାଷାରେ ବାଗ୍‌ଧାରାର ସ୍ୱରୂପ ତଥା ବିଶେଷତାର ଉଲ୍ଲେଖ ଦେଖାଯାଏ । ସଂସ୍କୃତରେ ବାଗ୍‌ଧାରାର ପ୍ରଚଳନ ଦେଖାଯାଏ ନାହିଁ ତଥାପି ପ୍ରବାଦାତ୍ମକ ଅଭିବ୍ୟକ୍ତି ଅବଶ୍ୟ ମିଳେ । ବେଦ, ଉପନିଷଦ, ଗୀତା ତଥା ରାମାୟଣ ପ୍ରଭୃତି ଗ୍ରନ୍ଥମାନଙ୍କରେ ରୂଢ଼ିପ୍ରତ୍ୟୟ ବା ବାଗ୍‌ଧାରାର ପ୍ରଚୁର ଉଲ୍ଲେଖ ରହିଛି ।

ବସ୍ତୁତଃ ସଂସ୍କୃତରେ ଏହି ପ୍ରକାର ଉକ୍ତି ବା ଅଭିବ୍ୟକ୍ତି 'ଅଳଙ୍କାର'ରୂପରେ ଗୃହୀତ ହୋଇଅଛି । ରୂଢ଼ିପ୍ରତ୍ୟୟ ବା ବାଗ୍‌ଧାରା ପାଇଁ ଲୋକସ୍ୱୀକୃତିର ମୋହର ନିତାନ୍ତ ଅନିବାର୍ଯ୍ୟ । କିନ୍ତୁ ସଂସ୍କୃତ ସର୍ବଦା ଗୁଣୀ ଓ ପଣ୍ଡିତ ଜନୋଚିତ ଭାଷା ରୂପରେ ପ୍ରଚଳିତ ହୋଇଆସିଛି । ଏଥିରେ ବ୍ୟକ୍ତ ଅଧିକାଂଶ ଭାବ, ବିଚାର ତଥା ଅଭିବ୍ୟକ୍ତିର ସମ୍ବନ୍ଧ ଉଚ୍ଚ ଓ ବିଶିଷ୍ଟ ବର୍ଗଙ୍କ ସହିତ ରହି ଆସିଛି । ନିଜ ବକ୍ତବ୍ୟ ଏକ ନୂତନ ଭାବଗର୍ଭକ ଶୈଳୀରେ ପ୍ରକାଶ କରିବାର ଆଗ୍ରହ ସଂସ୍କୃତ କବିମାନଙ୍କର ଥିଲା । ସେମାନେ ଅନ୍ୟଦ୍ୱାରା ପ୍ରଯୁକ୍ତ ଭାବ ବା ଶବ୍ଦାବଳୀର ପୁନରାବୃତ୍ତି କରିବାକୁ ପସନ୍ଦ କରୁନଥିଲେ । ସଂସ୍କୃତ କବିମାନେ ନିଜର ଉର୍ବର କଳ୍ପନାଶକ୍ତି ସାହାଯ୍ୟରେ ନିତ୍ୟ ନୂତନ ଉକ୍ତି ସୃଜନ କରୁଥିଲେ ।

ଯଥାର୍ଥତା ଦୃଷ୍ଟିରୁ କହିବାକୁ ଗଲେ 'ରୂଢ଼ିପ୍ରତ୍ୟୟ' 'ରୁଢ଼ି ଛନ୍ଦ'ର ପର୍ଯ୍ୟାୟଭୁକ୍ତ । ଅତଏବ ଆମେ 'ରୂଢ଼ିପ୍ରତ୍ୟୟ'କୁ 'ରୁଢ଼ି ଭାଷା' (Idiomatic language) ବା 'ରୁଢ଼' ଅଥବା 'ବାକ୍ ସମ୍ପ୍ରଦାୟ' ବୋଲି କହିପାରୁ ।

ଦି ଅକ୍ସଫୋର୍ଡ଼ ଇଂଲିଶ ଡିକ୍ସନାରୀ (୧୯୩୩)ରେ ରୂଢ଼ିପ୍ରତ୍ୟୟ ବିଷୟରେ ନିମ୍ନମତେ ମତବ୍ୟକ୍ତ ହୋଇଛି ।

୧- (କ) - କୌଣସି ଜାତି ବା ଦେଶ ଭାଷାର ବିଶିଷ୍ଟ ଓ ପ୍ରକୃତ ରୂପ ଅର୍ଥାତ୍ ନିଜ ଭାଷା ବା କଥିତ ବୋଲି ।

(ଖ) - ସଂକ୍ଷେପରେ : ଏକ ସୀମିତ ସ୍ଥାନ ବା ବର୍ଗ ଲୋକଙ୍କ ଭାଷାର ବିଶେଷ ରୂପ ବା ବୋଲି ।

୨ - କୌଣସି ଭାଷାର ଅନ୍ତର୍ନିହିତ ପ୍ରକୃତି, ତତ୍ତ୍ୱ ବା ବିଶେଷତା, ଅଭିବ୍ୟକ୍ତିର ଏକ ବିଶିଷ୍ଟ ଶୈଳୀ ।

୩ - ବ୍ୟାକରଣ ତଥା ତର୍କସଙ୍ଗତ ବ୍ୟଞ୍ଜନା ଓ ଭାଷାଭିବ୍ୟକ୍ତିଠାରୁ ସଂପୂର୍ଣ୍ଣ ଭିନ୍ନ ଅର୍ଥବୋଧକ ବାକ୍ୟରଚନା ।

୪ - ବିଶିଷ୍ଟ ରୂପ ଓ ତତ୍ତ୍ୱ, ବିଶିଷ୍ଟ ପ୍ରକୃତି, ବିଲକ୍ଷଣତା ।

ୱେବଷ୍ଟାର ଡିକ୍ସନାରୀ ଅନୁଯାୟୀ -

୧- (କ) କୌଣସି କ୍ଷେତ୍ର, ଜାତି ବା ବର୍ଗର ଲୋକଙ୍କର ବିଶିଷ୍ଟ ଭାଷା ଓ ବୋଲି ।

(ଖ) ବାକ୍ୟରଚନା, ବ୍ୟାକରଣ ବା ଗଠନ ଦୃଷ୍ଟିରୁ ଥିବା ବିଶିଷ୍ଟତା ।

୨ - ବ୍ୟାକରଣ ଦୃଷ୍ଟିରୁ ବୈଶିଷ୍ଟ୍ୟ ସଂପନ୍ନ ଅଭିବ୍ୟକ୍ତିର ରୂପ । କିମ୍ବା ଅଭିଧାନ ଦ୍ୱାରା ଅସ୍ୱୀକୃତ ବିଶେଷ ଅର୍ଥବୋଧକ ଉକ୍ତି ।

୩ - କଳାତ୍ମକ ଅଭିବ୍ୟକ୍ତିର ସ୍ୱରୂପ ବା ଶୈଳୀ, କୌଣସି ବ୍ୟକ୍ତି, କାଳ ବା ମତବାଦର ନିଜସ୍ୱ ପ୍ରକୃତି ବା ମାଧ୍ୟମ ବା ସାଧନ ବୁଝାଏ ।

ପ୍ରସିଦ୍ଧ ଭାଷାବିତ୍ ଏଚ୍.ଡବ୍ଲ୍ୟୁ ଫାଉଲ୍‌ର 'ମଡର୍ଣ୍ଣ ଇଂଲିଶ ୟୁସେଜ୍' ବିସ୍ତୃତ ବିଚାର କରି ଲେଖିଛନ୍ତି -

''ଇଡିୟମ୍, ରୂଢ଼ିପ୍ରତ୍ୟୟ, ବାଗ୍‌ଧାରା ସହିତ ବିଶେଷ ସମ୍ବନ୍ଧ ଥିବା ହେତୁ ଏହି ଶବ୍ଦର ସାମାନ୍ୟ ବ୍ୟାଖ୍ୟା ହେବା ଉଚିତ୍ । ଗ୍ରୀକ୍ ଶବ୍ଦ (ଇଡିଓମା)ର ନିକଟତମ ଅନୁବାଦ 'ବିଲକ୍ଷଣତାର ଅଭିବ୍ୟକ୍ତି' ହୋଇପାରେ । ଭାଷା ଦୃଷ୍ଟିରୁ ବିଚାର କଲେ ଏହାକୁ କୌଣସି ଜାତି ବା ଜନସମୂହର ବିଶିଷ୍ଟ ଭାଷା, ବୋଲି (କଥୋପକଥନ) ଦୃଷ୍ଟିକୋଣରୁ କୌଣସି କ୍ଷେତ୍ର ବିଶେଷର ବିଶିଷ୍ଟ ଭାଷା, ବ୍ୟବସାୟିକ ଶବ୍ଦାବଳୀ ଦୃଷ୍ଟିରେ କୌଣସି ବ୍ୟବସାୟ-ବିଶେଷ କ୍ଷେତ୍ରରେ ପ୍ରଯୁକ୍ତ ବିଶିଷ୍ଟ ଭାଷା ବୋଲି କୁହାଯାଇପାରେ ।''

''ଆରବୀ-ଫାରସୀ ଓ ଉର୍ଦ୍ଦୁରେ ରୂଢ଼ିପ୍ରତ୍ୟୟ ତିନିଅର୍ଥରେ ଗୃହୀତ ହୋଇଛି । ପ୍ରଥମ - ପରସ୍ପର ଆଳାପ, ଦ୍ୱିତୀୟ -ଅଭ୍ୟାସ ଓ ତୃତୀୟ - ପ୍ରବାଦ । ପ୍ରବାଦର ସୃଷ୍ଟିକର୍ତ୍ତା ଫର୍‌ହଂ ଆସ୍‌ଫିୟାଙ୍କ ମତାନୁସାରେ ପ୍ରବାଦ ସାଧାରଣ ଲୋକଙ୍କ ଦ୍ୱାରା ଗୃହୀତ ଉକ୍ତି ଯାହା ନିଜସ୍ୱ ଶୁଦ୍ଧ ବା ଅଶୁଦ୍ଧ ରୂପରେ ସମାଜ ଦ୍ୱାରା ସ୍ୱୀକୃତ ହୋଇ ରୁଢ଼ ହୋଇ ଯାଇଛି । ଚିନ୍ତାକଲେ ବୋଧହୁଏ ଯେ ପ୍ରବାଦ ପାଇଁ ବ୍ୟାକରଣର ଶୃଙ୍ଖଳକୁ ଢିଲା ଛାଡ଼ି ଦିଆଯାଇଛି । ସାଧାରଣତଃ କୌଣସି ଉକ୍ତି ଅଶୁଦ୍ଧ ହୋଇଥିଲେ ଗୃହୀତ ହୁଏନାହିଁ, କିନ୍ତୁ ଏକ ବିଶେଷ ଅର୍ଥରେ ରୁଢ଼ ହୋଇଗଲେ ତାହା ସର୍ବଗ୍ରାହ୍ୟ ହୋଇଯାଏ । । ତାର ବିଶେଷ ବ୍ୟଞ୍ଜନା ଏତେ ମହତ୍ତ୍ୱପୂର୍ଣ୍ଣ ହୋଇଯାଏ ଯେ ତାର ଶୁଦ୍ଧ ବା ଅଶୁଦ୍ଧ ରୂପ ଆଡ଼କୁ ସାଧାରଣ ଲୋକଙ୍କର ଧ୍ୟାନ ଯାଏନାହିଁ ।

ହିନ୍ଦୀ ବିଶ୍ୱକୋଷ ଅନୁସାରେ 'ରୂଢ଼ିପ୍ରତ୍ୟୟ'ର ସଂଜ୍ଞା (୧) ଲକ୍ଷଣ ବା ବ୍ୟଞ୍ଜନା

ଦ୍ୱାରା ସିଦ୍ଧ ବାକ୍ୟ ବା ପ୍ରୟୋଗ ଯାହା କୌଣସି ଏକ ଭାଷାରେ ପ୍ରଚଳିତ ଓ ଯାହାର ଅର୍ଥ ଅସାଧାରଣ ହୋଇଥିବା ବିଧେୟ । କୌଣସି ଏକ ଭାଷାରେ ଅସାଧାରଣ ଶବ୍ଦ ଯୋଜନା ଅଥବା ପ୍ରୟୋଗ ଯଥା 'ମାଡ଼ ଖାଇବା' ଏକ ରୂଢ଼ିପ୍ରତ୍ୟୟ । କାରଣ ଏଠାରେ 'ଖାଇବା' ଶବ୍ଦ ସାଧାରଣ ଅର୍ଥରେ ବ୍ୟବହୃତ ହୋଇନାହିଁ । ଲକ୍ଷଣ ଅର୍ଥରେ ଲଗାଯାଇଛି । 'ମାଡ଼' ଖାଇବା ପଦାର୍ଥ ନୁହେଁ । କଥାବାର୍ତ୍ତାରେ 'ମାଡ଼ ଖାଇବା' ଅର୍ଥ 'ମାଡ଼ ସହିବା' । ସେହିପ୍ରକାର, 'ଗୁଲି ମାରିବା', 'ଘର କରିବା', 'ଚମ ଉତାରିବା', 'ତେଲିଆ କଥା' ଇତ୍ୟାଦି ରୂଢ଼ିପ୍ରତ୍ୟୟ ଅନ୍ତର୍ଗତ । ଏହାକୁ ହିଁ ରୂଢ଼ିପ୍ରତ୍ୟୟ କହିଥାଆନ୍ତି । (୨) ଅଭ୍ୟାସ ଯଥା, 'ଆଜିକାଲି ମୋର ପ୍ରବାଦ କହିବା ଅଭ୍ୟାସ ଛାଡ଼ିଗଲାଣି ।'

## ରୂଢ଼ିପ୍ରତ୍ୟୟ / ବାଗଧାରାର ଉତ୍ପତ୍ତି, ସ୍ୱରୂପ ଓ ବିକାଶ

ରୂଢ଼ିପ୍ରତ୍ୟୟ / ବାଗ୍‌ଧାରା ଏବଂ ପ୍ରବାଦ ଏକ ସାଦୃଶ୍ୟଜନକ ଅଭିବ୍ୟକ୍ତି । ଅନେକ ସ୍ଥଳରେ ଏହା ଏକ ବୋଲି ଭ୍ରମ ହେବା ସ୍ୱାଭାବିକ । ଉଭୟର ବିକାଶ ସାଧାରଣ ବ୍ୟକ୍ତି ମଧ୍ୟରେ ହିଁ ହୋଇଥାଏ । ଅଭିବ୍ୟକ୍ତିକୁ ଅଧିକ ନିଖୁଣ ଓ ପ୍ରଭାବପୂର୍ଣ୍ଣ କରିବା ଦୃଷ୍ଟିରୁ ଏହାର ପ୍ରଯୁକ୍ତ ହୋଇଥାଏ । ତଥାପି ଏହାଙ୍କ ମଧ୍ୟରେ ଅନ୍ତର ରହିଛି । ପ୍ରୟୋଗ ପରବର୍ତ୍ତୀ ରୂପରୁ ହିଁ ଏହ ପ୍ରଭେଦ ଅନୁଭୂତ ହୋଇଥାଏ । ରୂଢ଼ିପ୍ରତ୍ୟୟର ମୁଖ୍ୟ ଉଦ୍ଦେଶ୍ୟ ହେଲା, ଉକ୍ତିକୁ ଅଧିକ ସୁନ୍ଦର ଓ ଶୋଭନୀୟ କରି ପ୍ରସ୍ତୁତ କରିବା ।

ଏକ ବା ଏକାଧିକ ଶବ୍ଦ ଦ୍ୱାରା ଗଠିତ ବାକ୍ୟଖଣ୍ଡ ଦ୍ୱାରା ବକ୍ତା ବହୁତ କିଛି କହିବାକୁ ପ୍ରୟାସ କରିଥାଏ । ରୂଢ଼ିପ୍ରତ୍ୟୟର ମୂଳ ଆଧାର ଲକ୍ଷଣ ଓ ବ୍ୟଞ୍ଜନା । ସୁତରାଂ ରୂଢ଼ିପ୍ରତ୍ୟୟର ପ୍ରୟୋଗ ଦ୍ୱାରା ଏକ ବିଶେଷ ଅର୍ଥ, ଏକ ବିଶେଷ ଭାବ, ଏକ ବିଶେଷ ସ୍ଥିତିର ପରିଚୟ ପ୍ରାପ୍ତ ହୋଇଥାଏ । ରୂଢ଼ିପ୍ରତ୍ୟୟ ରୂପରେ ପ୍ରଯୁକ୍ତ କେତେକ ଶବ୍ଦ ଗୋଟିଏ ସଂପୂର୍ଣ୍ଣ ଚିତ୍ର ଉପସ୍ଥାପିତ କରିଦିଏ । ଏକ ସଂପୂର୍ଣ୍ଣ ପ୍ରକ୍ରିୟା ବା ସ୍ଥିତିକୁ ମୂର୍ତ୍ତିମାନ କରିଥାଏ, ଯେପରି - 'ଦାନ୍ତ ଦେଖେଇବା', 'ନାକପୁଡ଼ା ଫୁଲେଇବା', 'ପେଟ ଦେଖେଇବା', 'ଗୋଡ଼ ଧରିବା', 'ହାତ ପାତିବା' ପ୍ରଭୃତି । ନିଜ କଥାକୁ ପ୍ରଭାବପୂର୍ଣ୍ଣ କରିବା ପାଇଁ ଭିନ୍ନ ରୂପରେ ଉପସ୍ଥାପିତ କରିବା ରୂଢ଼ିପ୍ରତ୍ୟୟର ଉଦ୍ଦେଶ୍ୟ । ରୂଢ଼ିପ୍ରତ୍ୟୟ ପ୍ରୟୋଗକାରୀ ଉପଯୁକ୍ତ ଶବ୍ଦଦ୍ୱାରା ଏକ ଚମତ୍କାରିତା ସୃଷ୍ଟି କରେ, କୌଣସି କଥାକୁ ଅଧିକ ପ୍ରଭାବପୂର୍ଣ୍ଣ ଢାଞ୍ଚାରେ ପକାଇ ପ୍ରସ୍ତୁତ କରେ । କିନ୍ତୁ ପ୍ରବାଦର ପ୍ରୟୋଗକାରୀ ତାହା କରେ ନାହିଁ । ସେ ନିଜ କଥାକୁ ପୁଷ୍ଟ କରିବା ପାଇଁ ନିଜର କିମ୍ବା ଅନ୍ୟର ଅନୁଭବ ବା ଉକ୍ତିକୁ ଦୋହରାଏ । ପ୍ରବାଦ ଲୋକ-ପ୍ରଚଳିତ ହେବା ଆବଶ୍ୟକ । ପ୍ରବାଦ କୌଣସି ପୂର୍ବ ଅନୁଭବ ଉପରେ ଆଧାରିତ

ହୋଇଥିବା ବାଞ୍ଛନୀୟ । ଛୋଟବାକ୍ୟରେ ଗୋଟିଏ ସଂପୂର୍ଣ୍ଣ ଘଟଣା ବା କଥାକୁ କହିଦେବା ପ୍ରବାଦର ବିଶେଷତ୍ୱ ।

'ସର୍‌ବେଣ୍ଟାସ୍'ଙ୍କ ମତାନୁସାରେ ଦୀର୍ଘକାଳୀନ ଅନୁଭବରୁ ଉଦ୍ଭୁତ ସଂକ୍ଷିପ୍ତବାକ୍ୟ ଏବଂ 'ଡକ୍ଟର ଜନ୍‌ସନ୍'ଙ୍କ ମତାନୁସାରେ 'ଲୋକଙ୍କ ଦ୍ୱାରା ବାରମ୍ବାର ଦୋହରା ଯାଉଥିବା ବାକ୍ୟ ହିଁ ପ୍ରବାଦ । ଉଦାହରଣସ୍ୱରୂପ 'କଣା ବାଟେ, କୁକୁର ଚାଟେ', 'ଅନ୍ଧର ନାମ ପଦ୍ମଲୋଚନ', 'ଚୋର ଦାଢ଼ିରେ ଘାସ', 'ଠେଙ୍ଗା ଯାର ମଇଁଷି ତାର', 'ନାଚି ନଜାଣି ଅଗଣାର ଦୋଷ' ଆଦି ଉକ୍ତିଗୁଡ଼ିକ କୌଣସି ପୂର୍ବ ଅନୁଭୂତି ଉପରେ ଆଧାରିତ । କେବଳ ସେତିକି ନୁହେଁ, ଅନେକ ରୂଢ଼ିପ୍ରତ୍ୟୟ ଏକାଧିକ ଅର୍ଥରେ ପ୍ରୟୋଗ କରାଯାଇଥିବା ବେଳେ ପ୍ରବାଦ କେବଳ ଗୋଟିଏ ଅର୍ଥରେ ବ୍ୟଞ୍ଜିତ ହୋଇଥାଏ । ଅର୍ଥଦୃଷ୍ଟିରୁ ପ୍ରବାଦ ସମ୍ବନ୍ଧରେ ଆଉ ଗୋଟିଏ ଜ୍ଞାତବ୍ୟ ହେଲା ପ୍ରବାଦ ସ୍ୱୟଂସମ୍ପୂର୍ଣ୍ଣ । ତାକୁ ଅଧିକ ସ୍ପଷ୍ଟ କରିବା ପାଇଁ ଅଧିକ ଯୋଡ଼ିବା, ଭାଙ୍ଗିବାର ପ୍ରୟୋଜନ ହୋଇନଥାଏ । ଏଥି ସହିତ ଲୋକ ପ୍ରଚଳିତ ହୋଇଥିବାରୁ ତାହା ଗୋଟିଏ ବିଶେଷ ଅର୍ଥରେ ରୁଢ଼ ହୋଇଯାଏ ଏବଂ ସର୍ବଦା ସେହି ଗୋଟିଏ ଅର୍ଥ ଅଭିବ୍ୟକ୍ତ କରିଥାଏ । କାରଣ ପ୍ରବାଦର ଅଭିବ୍ୟକ୍ତି ସ୍ପଷ୍ଟ ଓ ସରଳ । ତେଣୁ ଅର୍ଥ ଦୃଷ୍ଟିରୁ କୌଣସି ଭ୍ରମ ବା ଅପପ୍ରୟୋଗ ହେବାର ଆଶଙ୍କା ନଥାଏ ।

'ରୂଢ଼ିପ୍ରତ୍ୟୟ' ଓ 'ପ୍ରବାଦ'ର ଗଠନରେ ମଧ୍ୟ ପ୍ରଭେଦ ରହିଛି । ରୂଢ଼ିପ୍ରତ୍ୟୟ ବାକ୍ୟାଂଶ ମାତ୍ର, ଏକ ବା ଏକାଧିକ ଶବ୍ଦରେ ଗଠିତ ହୋଇଥାଏ, ଅଥଚ ପ୍ରବାଦ ଏକ ସମ୍ପୂର୍ଣ୍ଣ ବାକ୍ୟ । ରୂଢ଼ିପ୍ରତ୍ୟୟ ନିଜେ ସ୍ୱୟଂ ସମ୍ପୂର୍ଣ୍ଣ ହେଲେ ମଧ୍ୟ ଅର୍ଥଗ୍ରହଣ ନିମନ୍ତେ ତାକୁ ବାକ୍ୟରେ ପ୍ରଯୁକ୍ତ ହେବାକୁ ପଡ଼ିଥାଏ । କିନ୍ତୁ ପ୍ରବାଦ ସ୍ୱୟଂସମ୍ପୂର୍ଣ୍ଣ ହେବା ହେତୁ ତାର ଅର୍ଥାଭିବ୍ୟକ୍ତି ପାଇଁ ଅନ୍ୟ ଶବ୍ଦ ବା ବାକ୍ୟର ସାହାଯ୍ୟ ଲୋଡ଼ା ହୁଏନାହିଁ ।

## ରୂଢ଼ିପ୍ରତ୍ୟୟ - ଗଠନ ଓ ଆକାର

ସାଧାରଣ ନିୟମ ଅନୁସାରେ 'ରୂଢ଼ିପ୍ରତ୍ୟୟ ଦ୍ୱାରା କୌଣସି କାର୍ଯ୍ୟ କରିବାର ବା ହେବାର ଅନୁଭବ ହୋଇଥାଏ । କୌଣସି କାମ କରୁଥିଲା ବେଳେ ବା ହେଉଥିଲା ବେଳେ ତା' ସହିତ କର୍ତ୍ତାର ଉପସ୍ଥିତି ଅନିବାର୍ଯ୍ୟ । ତା' ସହିତ ଯଦି କ୍ରିୟା ସକର୍ମକ ହୁଏ, ତା'ହେଲେ କର୍ତ୍ତା ସହିତ କର୍ମ ମଧ୍ୟ ଉପସ୍ଥିତ ଥାଏ । ବାକ୍ୟରେ ଯଦି କର୍ତ୍ତା ଓ କ୍ରିୟା ଅଥବା କର୍ତ୍ତା, କ୍ରିୟା ଓ କର୍ମ ତିନିହେଁ ଉପସ୍ଥିତ ଥାଆନ୍ତି, ତା'ହେଲେ ବାକ୍ୟ ସମ୍ପୂର୍ଣ୍ଣ ହୁଏ ଓ ଅର୍ଥ ମଧ୍ୟ ସ୍ପଷ୍ଟ ହୋଇଥାଏ । 'ରାମ ଯାଉଛି' ଓ 'ରାମ ଭାତ ଖାଉଛି' ଏହା ସ୍ୱତଃ ପୂର୍ଣ୍ଣ ବାକ୍ୟ । ରାମ କେଉଁଠାକୁ ଯାଉଛି, କାହିଁକି ଯାଉଛି, କେବେ ଫେରିବ, କିମ୍ବା ରାମ କିପରି ରୋଟି ଖାଉଛି,

ବାସି କି ତଟକା, ମୋଟା ନା ପତଳା, ଏସବୁ ପ୍ରଶ୍ନର ଉତ୍ତରର କ୍ଷେତ୍ର ବହୁ ବିସ୍ତୃତ ଓ ସବୁ ସମୟରେ ଏହାର ପ୍ରୟୋଜନ ହୁଏନାହିଁ । ଏଠାରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ଗୋଟିଏ ସଂଜ୍ଞା ଓ ଗୋଟିଏ କ୍ରିୟାପଦ ମିଶି ଗୋଟିଏ ବାକ୍ୟ ଗଢ଼ନ୍ତି ଓ ସେ ବାକ୍ୟ ରଚନାର ସଂକ୍ଷିପ୍ତ ରୂପ ପ୍ରସ୍ତୁତ କରିବାକୁ ସକ୍ଷମ ।

ଅଧିକାଂଶ ରୂଢ଼ିପ୍ରତ୍ୟୟ ସକର୍ମକ କ୍ରିୟାକୁ ନେଇ ଗଠିତ । ଯେପରି - 'ଆଙ୍ଗୁଳି ଧରିବା', 'ଗୋଡ଼ ଟାଣିବା', 'ଗୋଡ଼ତଳେ ପଡ଼ିବା', 'ମୁଣ୍ଡରେ ହାତ ରଖିବା' ଇତ୍ୟାଦି । ବିଶେଷ ଭାବକୁ ବ୍ୟକ୍ତ କରୁଥିବା ଉକ୍ତି ସମ୍ପୂର୍ଣ୍ଣ ବାକ୍ୟର ଅଂଶ ହୋଇଥିଲେ ଏହିପରି ବ୍ୟଞ୍ଜିତ କରା ହୋଇଥାଏ । ଯଥା - 'ଭାଇ ଶୁଣ, ତୁ ଯାଇ ଗୁରୁଙ୍କ ଗୋଡ଼ତଳେ ଲମ୍ବତମ୍ବ ହୋଇ ପଡ଼ିଯା', ତା'ହେଲେ କାମ ହୋଇଗଲା ଜାଣ ।', 'ମୋ ଗୋଡ଼ ଓଟାରି ଲାଭ କଣ ?', 'ଭୋକରେ ମରିଯିବି ପଛେ କାହାରି ସାମନାରେ ହାତ କେବେ ପାତିବି ନାହିଁ ' ଇତ୍ୟାଦି । ବାକ୍ୟାଂଶ ରୂପରେ ପ୍ରଯୁକ୍ତ ଏହି ଉକ୍ତି ସମୂହ ବିଶେଷ ଉକ୍ତିର ବ୍ୟଞ୍ଜନା କରୁଥିବା ହେତୁ 'ରୂଢ଼ିପ୍ରତ୍ୟୟ' ଶ୍ରେଣୀଭୁକ୍ତ କୁହାଯିବ ।

କର୍ତ୍ତା ସଂଜ୍ଞା ଓ କ୍ରିୟାପଦରେ ହୋଇଥିବା ରୂଢ଼ିପ୍ରତ୍ୟୟର ସଂଖ୍ୟା ମଧ୍ୟ କମ୍ ନୁହେଁ । ଯେପରି, 'ପ୍ରତି ଅଙ୍ଗ ପ୍ରତ୍ୟଙ୍ଗ ହସି ଉଠିବା', 'ଅକଲ୍ ଘାସ ଖାଇଯିବା', 'ଝିଣ୍ଟିକା ମାରିଲେ ଝଡ଼' । ଏହି ରୂଢ଼ିପ୍ରତ୍ୟୟ କର୍ତ୍ତା ଓ କ୍ରିୟାକୁ ନେଇ ଗଠିତ । 'ନ ଥମିବା', 'ଛାତିରେ ହାତ ମାରି', 'ମଳୟ ବହିବା', 'ହାତରୁ ଛଡ଼େଇ ଫୁର୍‌ର୍ ହେବା', 'ହାତ ଅଟକିବା' ଆଦି କଥନକୁ ପୁଷ୍ଟ କରେ । ଅବଶ୍ୟ କର୍ତ୍ତା ଓ କ୍ରିୟା ଦ୍ୱାରା ସଂପୂର୍ଣ୍ଣ କାର୍ଯ୍ୟକରିବା ବା ହେବାରେ ଯେଉଁ ବ୍ୟଞ୍ଜନା ପରିଦୃଷ୍ଟ ହୁଏ, ତାହା ଏମାନଙ୍କ ଦ୍ୱାରା ହୋଇନଥାଏ । ଏହା ବାକ୍ୟାଂଶ ମାତ୍ର, ଏଥିରେ ନିହିତ ଭାବର ସ୍ପଷ୍ଟ ଏବଂ ପୂର୍ଣ୍ଣ ଅଭିବ୍ୟକ୍ତି ପାଇଁ ଏଗୁଡ଼ିକର ବାକ୍ୟରେ ପ୍ରଯୁକ୍ତ ହେବା ଆବଶ୍ୟକ ।

କେବଳ କର୍ତ୍ତା ଓ କ୍ରିୟା ପଦରେ ଗଠିତ ଅନେକ ରୂଢ଼ିପ୍ରତ୍ୟୟ ଆମେ ଦେଖିବାକୁ ପାଉଁ । 'ଆଖିର ତାରା', 'ଆଖିର ପାଣି', 'ଆଖିର ନିଆଁ', 'ଘରେ ଘରେ', 'ଢୋଲର ପୋଲ', 'ପ୍ରଜାପତି', 'ମନଚୋର', 'ମଇଳା ହେବା', 'ବିରାଡ଼ି ମୁହଁ', 'ରାଜନୀତିର ପୋକ', 'ମନର ଭୋକ' ଆଦି କର୍ତ୍ତାପଦ ଏବଂ 'ବାସଚ୍ୟୁତ ହେବା', 'ଉଠିଯିବା', '(ଗାଣ୍ଡି) ଚିମୁଟା କଥା କହିବା', 'ଉନ୍ନତି ହେବା', 'ସତ୍ୟ ସନ୍ଧାନ କରିବା', 'ବିବାଦରେ ପଡ଼ିବା', 'ଘୋଇଲା ଲୋକକୁ ଉଠେଇବା' ଆଦି କ୍ରିୟାପଦ ଭାବରେ ସ୍ୱତଃ ବ୍ୟଞ୍ଜିତ ହୋଇଥାଏ । କର୍ତ୍ତା ଓ କ୍ରିୟା ବିନା ମଧ୍ୟ ଏଗୁଡ଼ିକ ସ୍ପଷ୍ଟ । ଅବଶ୍ୟ ବାକ୍ୟରେ ପ୍ରୟୋଗ ସମୟରେ ଏହା ସହିତ ଆବଶ୍ୟକତାନୁଯାୟୀ କର୍ତ୍ତା ବା କ୍ରିୟାପଦ ସଂଯୋଗ ଅନିବାର୍ଯ୍ୟ ଅଟେ ।

ରୂଢ଼ିପ୍ରତ୍ୟୟରେ ବିଶେଷଣ ଶବ୍ଦର ପର୍ଯ୍ୟାପ୍ତ ପ୍ରୟୋଗ କରାଯାଇଛି । ଅନେକ ସମୟରେ ସୁନ୍ଦର ଅଭିବ୍ୟକ୍ତି ପାଇଁ ବିଶେଷଣର ପ୍ରୟୋଗ ଅନିବାର୍ଯ୍ୟ ହୋଇଯାଏ । 'ଅନ୍ଧକୂପ', 'ଲହୁ ଲୁହ ପିଇବା', 'ଉଚ୍ଚ ପରବତ', 'ଗୋଟେ ଅଧେ', 'ସାଷ୍ଟାଙ୍ଗ ଭୂମିଷ୍ଠ', 'ଦଗ୍ଧ କଲିଜା', 'ଲେଖନ ଟାଣ', 'କଥା ଫିଟିବା', 'କର୍ଥୁ କଥାହେବା', 'ନିରୁତା ପ୍ରେମ', 'ମନର ବୋଝ ହାଲୁକା କରିବା', 'ପରମାୟୁ ପୁରା କରିବା', 'ପକେଟ ଖାଲି ହେବା', 'ମନ ମଇଳା', 'ଦୁଇଆଖିରେ ନଦେଖିବା', 'ଧୂଳି ଧୂସର', 'ମିଠା କଥା କହିବା', 'ମଧୁରବଚନ', 'ଧଳାକୁ କଳା କରିବା', 'ଖୋଲା ହାତ' ଇତ୍ୟାଦି ରୂଢ଼ିପ୍ରତ୍ୟୟ ବିଶେଷଣଯୁକ୍ତ । ଏହା ମଧ୍ୟରୁ ଅନେକ 'ରୁଢ଼ିପ୍ରତ୍ୟୟ' ବିଶେଷଣ ସହାୟକ କ୍ରିୟା ରୂପରେ ପ୍ରୟୋଗ କରାଯାଇଛି, କିନ୍ତୁ ଏହାଦ୍ୱାରା ରୁଢ଼ି ପ୍ରତ୍ୟୟର ବିଶେଷଣତ୍ୱ ଲୋପ ପାଇନାହିଁ ।

ରୂଢ଼ିପ୍ରତ୍ୟୟରେ ଅନ୍ୟ ବିବିଧତା ମଧ୍ୟ ଦୃଷ୍ଟିଗୋଚର ହୁଏ । ରୂପ ଏକପ୍ରକାର ଥାଇ ଭାବ ବା ଅର୍ଥ ବିଭିନ୍ନ ବର୍ଣ୍ଣବ୍ୟଞ୍ଜକ ହୋଇ ବାକ୍ୟର ଶୋଭାବର୍ଦ୍ଧନ କରିଥାଏ । ଯଥା- 'ନିଜ ନାକ କାଟି ଅନ୍ୟର ଯାତ୍ରା ଭଙ୍ଗ', 'ହାଣ୍ଡି ଲିପି ହାତ କଳା କରିବା', 'ସରାଗର ଦୀପ ଜାଳି ବସିବା', 'ମୁଣ୍ଡଝାଳ ତୁଣ୍ଡରେ ମାରିବା', 'କଳା ହାଣ୍ଡିଆ ମେଘ' ଇତ୍ୟାଦି । ରୂଢ଼ିପ୍ରତ୍ୟୟର ଆକାର ଏବଂ ତାର ଏହି ବିବିଧତାର କୌଣସି ବିଶେଷ କାରଣ ସଠିକ୍ ଜଣାଯାଏ ନାହିଁ । ଏହାର କାରଣ ଅନୁମାନ କରାଯାଇପାରେ ଯେ ମଣିଷକୁ ଯେପରି ଢଙ୍ଗରେ ନିଜ କଥା କହିବାକୁ ରୁଚିକର ମନେହୁଏ, ସେ ସେହିପରି ଭାବରେ କହିଥାଏ । ଏ ପ୍ରକାର କରିବାକୁ ସେ ଗୋଟିଏ ଶବ୍ଦ ପ୍ରୟୋଗ କରେ କିମ୍ବା ପୁରାବାକ୍ୟ କହିଥାଏ । ଏକାଧିକ ଶବ୍ଦ ବିଶିଷ୍ଟ ରୂଢ଼ିପ୍ରତ୍ୟୟ ଯେପରି ଶ୍ରୋତାକୁ ଆକର୍ଷଣ କରେ, ଗୋଟିଏ ଶବ୍ଦ ବିଶିଷ୍ଟ ରୂଢ଼ିପ୍ରତ୍ୟୟଦ୍ୱାରା ବ୍ୟଞ୍ଜିତ ଚିତ୍ର ସେପରି ସ୍ପଷ୍ଟ ହୁଏନାହିଁ । କେବଳ ଗୋଟିଏ ସଂଜ୍ଞା (କର୍ତ୍ତା) କ୍ରିୟା ବା ବିଶେଷଣ ପଦ ଦ୍ୱାରା ବ୍ୟକ୍ତ ଭାବ ପୁରାପ୍ରସଙ୍ଗକୁ ଜାଣିବା ବିନା ଗ୍ରହଣ କରିବା କଷ୍ଟକର । ଯେ ପର୍ଯ୍ୟନ୍ତ 'ବିନୋଦ ବାବୁଙ୍କର ହୀରା ପରଖିବା ପାଇଁ ଜହ୍ନୁରୀର ଆଖି ଅଛି' କିମ୍ବା 'ଏହି ଝିଅଟି ବିନୋଦିନୀର ଆଖି' ନ କୁହାଯାଇଛି, ସେ ପର୍ଯ୍ୟନ୍ତ କେବଳ ଆଖିଦ୍ୱାରା ହିଁ ବ୍ୟଞ୍ଜିତ ଭାବ ସ୍ପଷ୍ଟ ହେବନାହିଁ । ଅନ୍ୟପକ୍ଷରେ ସମ୍ପୂର୍ଣ୍ଣ ବାକ୍ୟ ରୂପରେ ପ୍ରଯୁକ୍ତ ରୂଢ଼ିପ୍ରତ୍ୟୟ ପ୍ରାୟ ସ୍ୱୟଂ ସମ୍ପୂର୍ଣ୍ଣ ହୋଇଥାଏ । ତାର ଭାବ ବ୍ୟଞ୍ଜନା ନିମନ୍ତେ କେବଳ ଗୋଟିଏ ଅଧେ ଶବ୍ଦର ଯୋଗ କିମ୍ବା କ୍ରିୟାର ସାମାନ୍ୟ ରୂପାନ୍ତରର ଅପେକ୍ଷା ରଖେ ।

# ରୂଢ଼ିପ୍ରତ୍ୟୟ ଓ ବୈଆକରଣିକ ନିୟମର ପ୍ରତିବନ୍ଧ

ବ୍ୟାକରଣର ନିୟନ୍ତ୍ରଣ ବା ନିୟମର ଶୃଙ୍ଖଳ କୌଣସି ବିକଶିତ ଭାଷା ପାଇଁ କେବଳ ଆବଶ୍ୟକ ନୁହେଁ, ଅପରିହାର୍ଯ୍ୟ ମଧ୍ୟ । ତାହା ବିନା ଅର୍ଥବୋଧ ସର୍ବଥା ଦୁଷ୍କର ହୋଇଥାଏ । କିନ୍ତୁ ରୂଢ଼ିପ୍ରତ୍ୟୟ କ୍ଷେତ୍ରରେ ପର୍ଯ୍ୟାପ୍ତ ବ୍ୟତିକ୍ରମ ଦେଖାଯାଏ । କେବଳ ବ୍ୟାକରଣର ଅନୁଶାସନ ପ୍ରତି ଉଦାସୀନତା ନୁହେଁ ବରଂ ସ୍ପଷ୍ଟ ଉପେକ୍ଷା ବହୁ ରୂଢ଼ିପ୍ରତ୍ୟୟରେ ପରିଲକ୍ଷିତ ହୁଏ । କୋଉଠି କର୍ତ୍ତାକୁ କ୍ରିୟା (ଯଥା - ଧାରଣା ଦେବା, ମନ କରିବା), କେଉଁଠି ବିଶେଷଣକୁ (ଆଖିଛାଡ଼ି କରିବା, ଇୟାଇବା) ତ କେଉଁଠି ଅବ୍ୟୟକୁ (ଯଥା - ବାହାର ଭିତରେ କରିବା, ଉପରତଳ ହେବା ) କ୍ରିୟା ରୂପରେ ବ୍ୟବହାର କରାଯାଇଛି ।

ବିଶେଷ୍ୟକୁ ବିଶେଷଣ ରୂପରେ ପ୍ରୟୋଗର ବହୁ ଦୃଷ୍ଟାନ୍ତ ରୂଢ଼ିପ୍ରତ୍ୟୟରେ ମିଳେ, ଯଥା - 'ଅମୃତ ବଚନ', 'ପେଚାମୁହାଁ', 'ବିଷଲଡୁ', 'ନବାବର ନାତି', 'ଗଣେଶ ପେଟା', 'ଓଡ଼ିଆ ପ୍ରକୃତି'ଇତ୍ୟାଦି । ବ୍ୟକ୍ତିବାଚକ ବିଶେଷ୍ୟକୁ ଜାତିବାଚକ ରୂପରେ ବ୍ୟବହାର, ଯଥା - 'ଫକୀର ମୋହନ ହେବା', 'ନାରଦ ହେବା', 'ଇନ୍ଦ୍ର ବନିବା' ଓ ଜାତି ବାଚକ ବିଶେଷ୍ୟକୁ ସଙ୍କୁଚିତ କରି ବ୍ୟକ୍ତି ବା ନାମବାଚକ ଯଥା 'ଗାନ୍ଧୀ ବନିବା'ପ୍ରଭୃତିର ଦୃଷ୍ଟାନ୍ତ ମଧ୍ୟ ମିଳେ ।

## ବାକ୍ୟ ରଚନା ଏବଂ ଶବ୍ଦର ପ୍ରୟୋଗ

'ରୂଢ଼ିପ୍ରତ୍ୟୟ' ବାକ୍ୟାଂଶ ହୋଇଥିବା ହେତୁ ପୁରାବାକ୍ୟ ରଚନାକୁ ପ୍ରଭାବିତ କରେ ନାହିଁ । ତଥାପି ବାକ୍ୟାଂଶରେ ବ୍ୟାକରଣ ନିୟମର ବ୍ୟତିକ୍ରମ ପରିଲକ୍ଷିତ ହୋଇଥାଏ । ସବୁଠାରୁ ବ୍ୟାପକ ବ୍ୟତିକ୍ରମ-ବିଭକ୍ତି ଲୋପସ୍ଥଳରେ ଦେଖିବାକୁ ପାଉଁ । ଯଥା - 'ମୁଣ୍ଡରେ ବସେଇବା', 'ମୁଣ୍ଡରେ ମାରିବା', 'ମୁଣ୍ଡରେ ଚଢ଼େଇବା', 'ମୁଣ୍ଡରେ ଇଗାଇବା' (ପ୍ରକୃତରେ 'ମୁଣ୍ଡ ଉପରେ ବସେଇବା', 'ମୁଣ୍ଡ ତଳ କପାଳରେ ମାରିବା', 'ମୁଣ୍ଡ ଉପରେ ଚଢ଼େଇବା', 'ମୁଣ୍ଡ ବାଳରେ ଇଗାଇବା' ହେବା ଅର୍ଥରେ) ଉକ୍ତିଗୁଡ଼ିକ ରୂଢ଼ିପ୍ରତ୍ୟୟରେ ବ୍ୟବହୃତ ହେବାର ଦେଖାଯାଏ । ସେହିପରି, ଘିଅ ପରି ତରଳୁଥିବା ଝିଅର ଚରିତ୍ର 'ଝିଅଘିଅ' ମୁହଁରେ ରକ୍ତ ଲାଗିବା, 'ରକ୍ତମୁଖା', ଲୁହାରେ ତିଆରି କଣ୍ଟା, 'ଲୁହା କଣ୍ଟା', ସାଗରକୁ ମନ୍ଥି ଅମୃତ, 'ଅମୃତ ମନ୍ଥନ', ବନକୁ ଯିବା, 'ବନଗମନ', ବୋତଲରୁ ଢାଳିବା, 'ବୋତଲ ଢଳା', ପ୍ରଭୃତି ପ୍ରୟୋଗ ପ୍ରଚଳିତ ଅଛି ।

# ରୂଢ଼ିପ୍ରତ୍ୟୟରେ ସମାସ-ସଂଯୋଜନା

ରୂଢ଼ିପ୍ରତ୍ୟୟରେ ସମାସ ସଂଯୋଜନା ବିଷୟରେ ଦୁଇ ପ୍ରକାର 'ସମାସ ଶବ୍ଦ' ପାଇଥାଉଁ । ପ୍ରଥମ - ଯେଉଁ ସବୁ ଶବ୍ଦ ସଂସ୍କୃତ ସମ୍ଭୂତ, ଦ୍ୱିତୀୟ-ପରବର୍ତ୍ତୀ ସମୟରେ ପ୍ରଚଳିତ ଶବ୍ଦ । ସଂସ୍କୃତ ପରମ୍ପରାରୁ ପ୍ରାପ୍ତ ସାମାସିକ ଶବ୍ଦର ଦୃଷ୍ଟାନ୍ତ ଯଥା- 'ଅନ୍ତର ପୁଅ' (ଦାସୀ ଗର୍ଭଜାତ ପୁଅ), 'ଅନ୍ତର ମାଧିଆ' (ଅଯତ୍ନ ଭାବରେ ସମ୍ପାଦିତ), ନିର୍ବଚନୀୟ - (ଯାହା ବାକ୍ୟରେ ପ୍ରକାଶ କରାଯାଇନପାରେ), ଅନ୍ତରାଭବ ଦେହ (ପ୍ରାଣୀ ମରିବା ପରେ ଓ ପୁନର୍ଜନ୍ମ ଲାଭ କରିବା ପୂର୍ବରୁ ଯେଉଁ ଶରୀର ଧାରଣ କରେ), କଣ୍ଠ ଭୂଷଣ (କଣ୍ଠରେ ପିନ୍ଧାଯିବା ହାର - ଷଷ୍ଠୀତତ୍ ), କଣ୍ଠନାଳୀ (ତଣ୍ଟିଭିତର - ମ:ପ: ଲୋପୀ-କର୍ମଧା), କଣ୍ଠଗତ ପ୍ରାଣ (ପ୍ରାଣାନ୍ତକ ଅବସ୍ଥାପ୍ରାପ୍ତ - ବହୁବ୍ରୀହି), କଣ୍ଠାଗତ (କଣ୍ଠ ପର୍ଯ୍ୟନ୍ତ ଆସିଥିବା - ୨ୟା ତତ୍) ପ୍ରଭୃତି । ପରବର୍ତ୍ତୀ ସମୟରେ ପ୍ରଚଳିତ ଯଥା - ପର-ବାହାର ସେବା (ଦେବ ବିଗ୍ରହ ପାଖକୁ ନଯାଇ ଯେଉଁ ସେବା କରାଯାଏ), କଣ୍ଠାଝଡ଼ା (ଧାନଚକାରୁ ମଳକୁ ଯେଉଁ ଧାନ ଝଡ଼ିପଡ଼େ), ଫୁଲନାଡ଼ (ଜନ୍ମ ସମୟରେ ମାଆର ଫୁଲ ଓ ଶିଶୁର ନାଭିସଂଲଗ୍ନ ନାଡ଼ି), ଫୁଲ ପଇଞ୍ଛ (ହାତରେ ପିନ୍ଧାଯିବା ରୂପା ବା ସୁନାର ଅଳଙ୍କାର ବିଶେଷ) ଇତ୍ୟାଦି ।

ଉପରୋକ୍ତ ରୂଢ଼ିପ୍ରତ୍ୟୟ ବ୍ୟତୀତ ଅନେକ ରଢ଼ି ରହିଛି, ଯାହାକୁ ସହଜରେ ବର୍ଗୀକୃତ କରିହେବ ନାହିଁ । ପରମ୍ପରାଗତ ରୂଢ଼ିପ୍ରତ୍ୟୟ ସହ ନିଜବାଚକ ସର୍ବନାମ, କ୍ରିୟାପଦ, କୃଦନ୍ତ ସଂଜ୍ଞା ବା ବିଶେଷଣ ଏବଂ ଅବ୍ୟୟଯୁକ୍ତ ପ୍ରଚୁର ସମାସ ଶବ୍ଦ ଦେଖିବାକୁ ମିଳେ । 'ପର ଆପଣା କରିବା', 'ଆପଣା ପରଠାରୁ ଧକ୍କା ଖାଇବା', 'ଯିବା ଆସିବା କରିବା', 'ଗଣାଗୁନ୍ଥା', 'ମଲାଗଲା', 'ଚଲାବୁଲା', 'ଉଠିବା ବସିବା' ପ୍ରଭୃତି ରୂଢ଼ି ପରମ୍ପରା ଅନ୍ତର୍ଗତ ବୋଲି ଧରାଯାଇନପାରେ । ଦୁଇ ଅବ୍ୟୟ ପଦକୁ ନେଇ ଯଥା - 'ଏଣେତେଣେ', 'ଏ ଯାବତ୍ ସେ ଯାବତ୍', 'ଆଜିକାଲି ଫେରରେ ପଡ଼ିବା', 'ଚିଠି-ଦର୍ପଣ ଭଳି ହେବା', 'କଥା -ଛୁଆ ଭଳି ଫୋଡ଼ି ହେବା' ପ୍ରଭୃତି ଭିନ୍ନ ପ୍ରକାର ସମାସ ବିଶିଷ୍ଟ ରୂଢ଼ିର ମଧ ବ୍ୟବହାର ଦେଖାଯାଏ । ଉପର 'ରୂଢ଼ି' ବ୍ୟତୀତ 'ମଝିବଜାର', 'ବାସନାଭରା', 'ହଁଲୋ ନାହିଁଲୋ କରିବା', 'ମୁହଁପୋଡ଼ା', 'ଛନ୍ଦକପଟ କରିବା', 'ଚୋରଛିଣ୍ଡାଳ ମୁହଁଟାଣ', 'ସ୍ୱର୍ଣ୍ଣଜୟନ୍ତୀ' ପ୍ରଭୃତି ଅନ୍ୟ ଉଲ୍ଲେଖନୀୟ ସାମାସିକ ଶବ୍ଦରୁ ହୋଇଥିବା ରୂଢ଼ିପ୍ରତ୍ୟୟ ମଧ ମିଳିଥାଏ ।

# ରୂଢ଼ିର ଅର୍ଥ ସଂଯୋଜନା

ଭାଷାରେ ଦୁଇପ୍ରକାର ଶବ୍ଦ ବ୍ୟବହୃତ ହୋଇଥାଏ - ନିରର୍ଥକ ଓ ସାର୍ଥକ । ପ୍ରତ୍ୟେକ ଧ୍ୱନି ବା ଧ୍ୱନି ସମୂହ ନିରର୍ଥକ ହୋଇଥାଏ । ମଣିଷର ବ୍ୟବହାର ତାକୁ ଅର୍ଥ ସମନ୍ୱିତ କରିଥାଏ । କୌଣସି ବ୍ୟକ୍ତିଦ୍ୱାରା କିଛି ଧ୍ୱନି ସମୂହକୁ ପ୍ରଦତ୍ତ ସାର୍ଥକତା ଯେବେ ବୃହତ ସମୂହ ଦ୍ୱାରା ସ୍ୱୀକୃତି ପ୍ରାପ୍ତ ହୁଏ, ତା'ହେଲେ ଯାଇ ତାହା ସାର୍ଥକ ଶବ୍ଦବାଚକ ବୋଲି ଗୃହୀତ ହୁଏ ଏବଂ ଭାଷାରେ ସ୍ଥାୟୀସ୍ଥାନ ପ୍ରାପ୍ତ କରିନିଏ । ଏହି କ୍ରମ ମୂଳରୁ ଚାଲିଆସିଛି । ନୂଆ ଶବ୍ଦ ସୃଷ୍ଟି କରିବା ଓ କିଛି ନୂତନ ବା ପୂରାତନ ଶବ୍ଦକୁ ନୂଆ ଅର୍ଥ ଦେବାର କାର୍ଯ୍ୟବୃତ୍ତି ଆଜି ମଧ୍ୟ ଜ୍ଞାତ ବା ଅଜ୍ଞାତସାରରେ ହୋଇଚାଲିଛି । ଯଦି ଆମେ କିଛିଟା ସତର୍କତାର ସହିତ ଅନୁଧ୍ୟାନ କରୁ, ବିଗତ ୬୦-୭୦ ବର୍ଷ ଧରି ଏହି ଧାରା ଅଧିକ ଦ୍ରୁତ ବେଗରେ ସମ୍ପନ୍ନ ହୋଇଛି । ଜ୍ଞାନ ବିଜ୍ଞାନ କ୍ଷେତ୍ରରେ ବିକାଶ ଓ କାଳର ତ୍ୱରାନ୍ୱିତ ଗତି ସହିତ ତାଳ ଦେଇ ଭାଷାର ଅଗ୍ରଗତି ଜଣାନାହିଁ କେତେ ନୂଆ ଶବ୍ଦ, ନୂତନ ଅଭିବ୍ୟକ୍ତିକୁ ପ୍ରଚଳିତ କରାଇଛି । 'ରୁଢ଼ିପ୍ରତ୍ୟୟ' ବା ବାଗ୍‌ରୀତିର ନବୀନ ଅର୍ଥବତ୍ତା ହିଁ ଏହାର ଜୀବନୀଶକ୍ତି । କୌଣସି ଉକ୍ତିକୁ ବିଶେଷ ଅର୍ଥ ପ୍ରଦାନ କରି ସଞ୍ଜୀବିତ କଲେ ତାହା ରୂଢ଼ ହୋଇଯାଏ ଏବଂ ଉକ୍ତ ବାଗ୍‌ରୀତିକୁ 'ରୂଢ଼ି ପ୍ରତ୍ୟୟ' କୁହାଯାଏ । ସାର୍ଥକ ଓ ନିରର୍ଥକ ଶବ୍ଦ ପ୍ରୟୋଗ ଦୃଷ୍ଟିରୁ ଆମେ ରୂଢ଼ି ପ୍ରତ୍ୟୟକୁ ବିଚାର କଲେ ଦେଖିବା ଅଧିକାଂଶ ଅର୍ଥବୋଧକ ବାଗ୍‌ଧାରା ନିଜସ୍ୱ ଅର୍ଥ ଥାଇ ସୁଦ୍ଧା, ବିଶେଷ ଅର୍ଥ ପ୍ରଦାନ କରି 'ରୂଢ଼ିପ୍ରତ୍ୟୟ'ରେ ପରିଣତ ହୋଇଛି । ଯଥା-'ଗାଇଗୋଳାପି ହେବା', 'ମୁଣ୍ଡବାଳ ଛିଡ଼ା ହେବା', 'ମୁଣ୍ଡରେ ବୋଝ ବହିବା', 'ହାତ କଟିଯିବା' ଆଦିଦ୍ୱାରା ଏକ ବିଶେଷ ସ୍ଥିତି ବା କ୍ରିୟାର ପରିଚୟ ପ୍ରାପ୍ତ ହୁଏ । କିନ୍ତୁ ଶବ୍ଦର ଅର୍ଥ ଦୃଷ୍ଟିରୁ ଏଗୁଡ଼ିକ 'ରୂଢ଼ି ପ୍ରତ୍ୟୟ' ପଦବାଚ୍ୟ ନୁହେଁ । ଏଗୁଡ଼ିକୁ ପ୍ରଦତ୍ତ ବିଶେଷ ଅର୍ଥ - 'ମାରି ମାରି ଗାଇ ନାଳି କରିଦେବା', 'ଚେତା ପଶିବା', 'ଦାୟିତ୍ୱ ନେବା' ପ୍ରଭୃତିରେ ଏଗୁଡ଼ିକର ରୂଢ଼ତ୍ୱ ନିହିତ ଅଛି । ଦ୍ୱିତୀୟ ପ୍ରକାର ରୂଢ଼ିପ୍ରତ୍ୟୟରେ- ଯେଉଁଥିରେ ପ୍ରଯୁକ୍ତ ସବୁ ଶବ୍ଦ ସାର୍ଥକ ହେଲେ ମଧ୍ୟ ବାକ୍ୟାଂଶ ରୂପରେ କୌଣସି ଶାବ୍ଦିକ ଅର୍ଥ ହୋଇପାରେ ନାହିଁ, ଯଥା- 'ଅନ୍ତ ରୁ ସତ କାଢ଼ିବା', 'ଆଖିରୁ ପାଣି ମରିବା', 'କଣ୍ଢା ହୋଇଯିବା', 'ହାତ କଅଁା ହୋଇ ରହିବା' ଇତ୍ୟାଦି । ତୃତୀୟ ପ୍ରକାର - ଯେ କୌଣସି ଅର୍ଥ ହୋଇ ପାରୁନଥିବା ଶବ୍ଦ, ଧ୍ୱନି ସାମ୍ୟ, ରୂପସାମ୍ୟ ବା ଅନ୍ୟ କାରଣ ହେତୁ ବିଶେଷ ଅର୍ଥ ପ୍ରଦାନ କରାଯାଉଥିଲେ, ସେହି ରୂପରେ ତାହା ରୂଢ଼ ହୋଇଯାଏ । ଯଥା - 'ଓଃ କରିବା', 'ହେଁ ହେଁ ହେବା', 'ହୁଁ ହୁଁ କରିବା', 'ହଳ ହଳ ହେବା', 'ମା'ଲୋ ବାପଲୋ ହେବା ବା କରିବା', 'ଗଜ ଗଜ ବୋହିବା', 'ସୁର ସୁର ପିଇବା', 'ହା ହା ହସିବା' ଇତ୍ୟାଦି । ବହୁ ଦେଶଜ

ଶବ୍ଦର ଗଠନ ଏହିପରି ଭାବରେ ହୋଇ ରୂଢ଼ିରେ ପରିଣତ ହୋଇଥାଏ ।

ଅନ୍ୟଦୃଷ୍ଟିରୁ ବିଚାର କଲେ - 'ରୂଢ଼ି'ର ସୌନ୍ଦର୍ଯ୍ୟ ତା'ର ଅର୍ଥରେ ନିହିତ ଥାଏ । ଅନେକ ସମୟରେ ଉକ୍ତି ଅତି ସାଧାରଣ ଏବଂ ମାମୁଲି ଧରଣର ହୋଇଥିଲେ ମଧ ସେଥିରୁ ନିର୍ଗତ ଧ୍ୱନି ଯଦି ବିଶେଷ ଅର୍ଥ ପ୍ରତିପାଦିତ କରୁଥାଏ, ତାହା ରୂଢ଼ ହୋଇଯାଏ । ଯଥା- 'ଆଙ୍ଗୁଳି ଧରି ଠିକଣା ପାଇବା', 'କମର କସିବା', 'ଛାତି ପିଟିବା', 'ନାକ ଘସିବା', 'ଗୋଡ଼ ଧରିବା', 'ମୁଣ୍ଡ ନୁଆଁଇବା', 'ମୁଣ୍ଡ ଟୁଙ୍ଗାରିବା', 'ହାତପାତିବା' ଇତ୍ୟାଦି । ଏସବୁ ରୂଢ଼ିପ୍ରତ୍ୟୟର ଗଠନରେ ଆଡ଼ମ୍ବର, ଉତ୍କୃଷ୍ଟତା, ବ୍ୟାକରଣର ନିୟମ ବହିର୍ଭୂତ କୌଣସି ନବୀନତା ପ୍ରତି ଆସକ୍ତି ନଥାଏ । ଏତଦ୍‌ବ୍ୟତୀତ ଆଉ ଏକ ପ୍ରକାର ରୂଢ଼ିପ୍ରତ୍ୟୟ ଅଧିକ ସଂଖ୍ୟାରେ ପରିଲକ୍ଷିତ ହୁଏ, ଯାହାର କୌଣସି ଅନ୍ତର୍ନିହିତ ଶାବ୍ଦିକ ଅର୍ଥ ନଥାଏ କିମ୍ବା ଯୁକ୍ତି ସମ୍ମତ ବୋଲି ଅନୁଭୂତ ହୁଏନାହିଁ । ତଥାପି କିଛି ତାତ୍ପର୍ଯ୍ୟର ଉପଲବ୍ଧି ହୋଇଥାଏ, ଯାହାର ସୌନ୍ଦର୍ଯ୍ୟ ସେହି ଅସଙ୍ଗତ ଶବ୍ଦ ସଂଯୋଜନ ଏବଂ ଅଶୁଦ୍ଧ ପ୍ରୟୋଗରେ ନିହିତ ଥାଏ । ଯଥା - 'ଦୁଃଖ ହଜମ କରିବା', 'ତାନା ମାରିବା' (ଦୋଷ ଦେବା), 'ଘଟଛୁଟିବା', 'ନାମ ଧୋଇ ଖାଇବା', 'ପଡ଼ିମରିବା', 'ପେଟ କାଟିବା', 'ଗୋଡ଼ କଟାଡ଼ିବା', 'ବଜାର ଗରମ ହେବା', 'ବାଳ ପାଚିବା', 'ଭାଙ୍ଗ ନିଶା ଚଢ଼ିବା', 'ଆଖି ଡେଇଁବା', 'ମାଇ ଉଡ଼ାଇବା', 'ମାଟି ଚଟେଇବା' ପ୍ରଭୃତି । ବହୁ ରୂଢ଼ିପ୍ରତ୍ୟୟ ଅଛି, ଯାହାର ସଂଗତ ଅର୍ଥ ଖୋଜିଲେ ମିଳେନାହିଁ । ଯେପରି - ମାଟି ଚାଟିବା ପଦାର୍ଥ ନୁହେଁ, ଦୁଃଖ (ହଜମ ହେବା) ଖାଦ୍ୟ ନୁହେଁ । ତାନା (ଦୋଷ ) ମାରିବା ଦ୍ରବ୍ୟ ନୁହେଁ । ଘଟ ଛୁଟେ ନାହିଁ । ନାମ ଧୋଇ ଖାଇବା ବସ୍ତୁ ନୁହେଁ । ପଡ଼ି ରହିବା ମରିବା ନୁହେଁ । ପେଟ କଟାଯାଏନାହିଁ । ଗୋଡ଼ର କାମ କଟାଡ଼ିବା ନୁହେଁ । ବଜାର ଗରମ ହେବା ଦ୍ରବ୍ୟ ନୁହେଁ । ବାଳ ଫଳ ନୁହେଁ । ଭାଙ୍ଗ ଚଢ଼ିବା-କ୍ଷମତା-ବିଶିଷ୍ଟ ପ୍ରାଣୀ ନୁହେଁ । ଆଖିର ଡେଇଁବା ପାଇଁ ଗୋଡ଼ ନଥାଏ, ଉଡ଼ିବା ପାଇଁ ମାଇର ଡେଣା ନଥାଏ । ମାଟି ଚାଟିବା ବସ୍ତୁ ନୁହେଁ ।

ରୂଢ଼ିପ୍ରତ୍ୟୟରେ ଅର୍ଥବିସ୍ତାର ଓ ଅର୍ଥସଂକୋଚର ପ୍ରବୃତ୍ତି ଥାଏ । ଅର୍ଥାତ୍ କ୍ଷୁଦ୍ର ବସ୍ତୁ ବା ବର୍ଣ୍ଣନା ଦ୍ୱାରା ବୃହତ୍ କଥାକୁ ଇଂଗିତ କରାଯାଏ । ସେହିପରି ବୃହତ୍ ଓ ବିସ୍ତୃତ ବସ୍ତୁ ବା ବର୍ଣ୍ଣନା ଦ୍ୱାରା କ୍ଷୁଦ୍ର ବସ୍ତୁକୁ ଇଂଗିତ କରାଯାଏ । କେତେକ ରୂଢ଼ିପ୍ରତ୍ୟୟରେ ଏହା ଦେଖିବାକୁ ମିଳିଥାଏ । ବଡ଼କଥାକୁ ଛୋଟକରି କହିବାର ଉଦାହରଣ, ଯଥା - 'ରକ୍ତଶୋଷିବା' (ଶୋଷଣ କରିବା), 'ଲହୁ ପିଇବା' (ଦୁଃଖ ଭୋଗିବା), ଲହୁ ଛିଙ୍କା (ମୂତ ମାଡ଼ିବା), ମନ ନାଚିଉଠିବା (ବହୁତ ଖୁସୀ ହେବା), 'ଛାତି ପଥର ହେବା' (ସହ୍ୟ କରିବା), 'ବୁକୁ ଭିତରେ ଝଡ଼ ଉଠିବା' (ମନରେ ଚିନ୍ତାର ଆନ୍ଦୋଳନ ହେବା) ।

ଅତିରଞ୍ଜିତ ରୂଢ଼ିପ୍ରତ୍ୟୟ ଯଥା - 'ଚଟଣି କରିବା' (ଧ୍ୱସ୍ତବିଧ୍ୱସ୍ତ କରିବା), 'ସ୍ୱର୍ଗଠାରୁ ଗରୀୟସୀ', 'ମୁଣ୍ଡ ଆକାଶ ଛୁଇଁବା', 'ହାଡ଼ଭଙ୍ଗା ପରିଶ୍ରମ', 'ବହିର ପୋକ' (ଅତ୍ୟଧିକ ପଢ଼ିବା ବ୍ୟକ୍ତି), 'ନାଡ଼ି ନକ୍ଷତ୍ର ଚିହ୍ନିବା' (ଉତ୍ତମ ଭାବେ ଚିହ୍ନିବା), 'ନାଟକ କରିବା' (ଦୃଷ୍ଟି ଆକର୍ଷଣକାରୀ ପରିବେଶ ସୃଷ୍ଟି କରିବା), 'ଭୀମକାୟ' (ଲମ୍ବାଚଉଡ଼ାରେ ବିଶାଳକାୟ), 'ଯୁଗ ବଦଳେଇବା' (ପରିବର୍ତ୍ତନ ଆଣିବା), ଦିନରାତି ଏକ କରିବା (ବହୁତ ଚେଷ୍ଟା କରିବା), 'ଲକ୍ଷେ ଥର କହିବା' (ବହୁତ କହିବା), 'ବଉଁଶ ବୁଡ଼ିବା' (ବଂଶଧର ଅଭାବରୁ କୁଳନାଶ) ଇତ୍ୟାଦି ।

ପ୍ରସଙ୍ଗକ୍ରମେ, ଅସଙ୍ଗତ ପ୍ରୟୋଗ ହେଉ ବା ନହେଉ, ଅର୍ଥବିସ୍ତାର ବା ଅର୍ଥ ସଂକୋଚ ବିଶିଷ୍ଟ ହେଉ ବା ନହେଉ, ବିଶେଷ ଅର୍ଥସୂଚକ, ମନୋମୁଗ୍ଧକାରୀ କିଛି ରୂଢ଼ିର ଉଦାହରଣ ଦିଆଯାଇପାରେ । ଯଥା- 'ଧର୍ମକମେଇବା', 'ଧର୍ମସଂକଟ', 'ନମ୍ବରୀ', 'ଧୂଳାଇ କରିବା', 'ନମ୍ବରୀ ନୋଟ', 'ନିଲାମୀ ଘୋଡ଼ୀ', 'କଟାଘା'ରେ ଲୁଣଛିଟା', 'ଭିଜା ବିରାଡ଼ି', 'ପାଞ୍ଚକୁ ପଚିଶ କରିବା', 'ଛାଇପରି ଲାଗି ରହିବା', 'ମୁଣ୍ଡରେ ଭୂତ ଚଢ଼ିବା', 'ସୁନେଲୀ ଦିନ', 'ସୁଙ୍ଘି ସୁଙ୍ଘି ସୈନ୍ଧବ ଲୁଣ', 'ହାତର ମଇଳା', 'ଗଣ୍ଡିରୁ ଅଲଗା', 'ହଇହଲ୍ଲା କରିବା' ଇତ୍ୟାଦି ରୂଢ଼ିପ୍ରତ୍ୟୟ ଅସଂଗତ ମନେ ହେଲେ ସୁଦ୍ଧା, ବାକ୍ୟକୁ ବିଶେଷ ବ୍ୟଞ୍ଜନାରେ ସାର୍ଥକ ରୂପରେ ଅଳଙ୍କୃତ କରିଥାଏ ।

## ରୂଢ଼ିପ୍ରତ୍ୟୟରେ ଅଳଙ୍କାର-ସଂଯୋଜନା

ଅଳଙ୍କରଣର ପ୍ରବୃତ୍ତି ବହୁତ ବ୍ୟାପକ । ବିଧାତାଠାରୁ ଆରମ୍ଭ କରି ମାନବ ଓ କୀଟପତଙ୍ଗ ପର୍ଯ୍ୟନ୍ତ ସବୁଥିରେ ଏହି ସୌନ୍ଦର୍ଯ୍ୟବୃଦ୍ଧିର ଲାଳସା ପରିଲକ୍ଷିତ ହୁଏ । ପ୍ରକୃତିର ବିଭିନ୍ନ ତତ୍ତ୍ୱ ଏବଂ ପ୍ରାଣୀ ସୃଷ୍ଟିରେ ବିଧାତାଙ୍କର ସୌନ୍ଦର୍ଯ୍ୟବୋଧର ପ୍ରମାଣ ମିଳେ । ନିଜକୁ ସୁନ୍ଦର କରି ସଜାଇବାର ପ୍ରବୃତ୍ତି ଜୀବଜନ୍ତୁଙ୍କର ସୌନ୍ଦର୍ଯ୍ୟବୋଧର ପ୍ରମାଣ । ପ୍ରାଣୀ ମଧ୍ୟରେ ଶ୍ରେଷ୍ଠ ମନୁଷ୍ୟର ସୌନ୍ଦର୍ଯ୍ୟବୋଧ ଅତ୍ୟଧିକ ବିକଶିତ ଓ ବହୁମୁଖୀ ଅଟେ । ମନୁଷ୍ୟ ଯେ କେବଳ ସ୍ଥୂଳବସ୍ତୁକୁ ସୁସଜ୍ଜିତ କରିବାକୁ ଯତ୍ନ କରିଥାଏ ତା' ନୁହେଁ, ବରଂ ସୂକ୍ଷ୍ମଭାବ ଓ ବାଣୀ ପ୍ରବୃତ୍ତିକୁ ମଧ୍ୟ ଅଳଂକୃତ କରିବାର ପ୍ରୟାସ କରିଥାଏ । କେବଳ ସେତିକି ନୁହେଁ, ସ୍ୱୟଂ ଅଳଙ୍କୃତକାରୀଙ୍କୁ ମଧ୍ୟ ମନୁଷ୍ୟ ଅଳଂକୃତ କରିବାକୁ ହେଳା କରିନାହିଁ । 'ରୁଢ଼ି'ରେ ପ୍ରାପ୍ତ ଶବ୍ଦାଳଙ୍କାର ଏବଂ ଅର୍ଥାଳଂକାରର ଦୃଷ୍ଟାନ୍ତ ଏହାର ପ୍ରମାଣ ।

ଶବ୍ଦାଳଙ୍କାର ଅନ୍ତର୍ଗତ ଯମକ ଓ ଶ୍ଳେଷ ପାଇଁ ରୁଢ଼ିରେ କୌଣସି ପ୍ରୟୋଗ ଦେଖିବାକୁ ମିଳେନାହିଁ । ଅନୁପ୍ରାସର ପ୍ରୟୋଗ ଅବଶ୍ୟ ଦେଖାଯାଏ । ଯଥା - 'କନ୍ଦର୍ପ-କଳା-କୁଶଳା

ହୋଇଥିବ ବାଳା', 'କଳିଚଳଛଳିତ ହୃଦ', 'ଆନନ୍ଦ କନ୍ଦ ଚରଣେ', କୌଣସି କଥା ଉପରେ ଦୃଢ଼ତା ପ୍ରକାଶ କରିବା ପାଇଁ ବହୁଥର କୁହାଯାଇଥାଏ । ତାକୁ ଦ୍ୱିରୁକ୍ତିରୂଢ଼ି କୁହାଯାଏ । ଯଥା - 'ଅଙ୍ଗେ ଅଙ୍ଗେ ଇଙ୍ଗା ରଙ୍ଗ', 'ଅକ୍ଷରେ ଅକ୍ଷରେ', 'ଦୁଆରେ ଦୁଆରେ', 'ଶିରାରେ ଶିରାରେ', 'ଘର ଘରର ନାଗର' ଆଦି ଦୁଇଥର ଶବ୍ଦର ପ୍ରୟୋଗ କରି ଏକରୁ ଅଧିକର ବ୍ୟଞ୍ଜନା କରାଯାଇଥାଏ । 'ସୁଂଘୁସୁଂଘୁ', 'ଗୋଲ୍‌ଗୋଲ୍', 'ବୁଲିବୁଲି', 'ଆଖି ଆଖିରେ ରଖିବା' ଆଦି ଦ୍ୱିରୁକ୍ତି କଥନ ଉପରେ ଅଧିକ ଜୋର ଦିଆଯାଇଥାଏ । ଏହା ଦୃଢ଼ତା ଓ ନିଶ୍ଚୟତା ଅର୍ଥକୁ ସୂଚାଇଥାଏ । ଏଥି ସହିତ 'ବୋପାଲୋ ବୋପାଲୋ ପାଟି କରିବା', 'ତୁମେ ଆମେ, ତୁମେ ଆମେ କହିବା', ତଥା କଥାନଥା ରୂପରେ ଯଥା - 'ଗୋଲ ଗାଲ ମୁହଁ', 'ବଙ୍କା ଟଙ୍କା ଡାଳ', 'ନଗାନଗି', 'ଲଗାପଘା' ଇତ୍ୟାଦି ରୂଢ଼ିପ୍ରତ୍ୟୟରେ ଦୁଇ ଶବ୍ଦ ଅଲଗା ଅଲଗା ନିରର୍ଥକ ଶବ୍ଦ ସଂଯୋଜିତ ହୋଇ ଏକ ସମଧ୍ୱନି ବିଶିଷ୍ଟ ସାର୍ଥକ ଶବ୍ଦକୁ ରୂପାନ୍ତରିତ ହୋଇଯାଇଥାଏ ।

ଅର୍ଥାଳଙ୍କାରରେ ଅତିଶୟୋକ୍ତି, ଉପମା ଓ ରୂପକର ବିଶେଷ ପ୍ରୟୋଗ କରାଯାଇଥାଏ । ରୂଢ଼ିର ଆଧାର ହିଁ ଅତିଶୟୋକ୍ତି । ଯଦି କଥନକୁ ବଢ଼େଇ ଚଢ଼େଇ କହିବାର ପ୍ରୟୋଜନ ହୁଏ, କଳ୍ପନା ଲଗାମଛଡ଼ା ହୋଇଯାଏ । 'ଆଖିରୁ ଧାରାଶ୍ରାବଣ ଛୁଟିବା', 'ଆଖି ଜଳନ୍ତା ଅଙ୍ଗାର ଭଳି ହେବା', 'ସ୍ୱର୍ଗରୁ ପଡ଼ିବା', 'ବୁକୁ ଭିତରେ ପ୍ରୀତିର ଫଗୁ ଖେଳ ହେବା', 'ଆକାଶ ପାତାଳ ଏକା କରିବା' ପ୍ରଭୃତିକୁ 'ଅତିଶୟୋକ୍ତି ଅଳଙ୍କାର' ମଧ୍ୟରେ ଉଲ୍ଲେଖ କରାଯାଇଥାଏ । ରୂଢ଼ିରେ ଉପମା ଓ ରୂପକ ପ୍ରୟୋଗର ବିଶେଷ ମହତ୍ତ୍ୱ ମଧ୍ୟ ପରିଲକ୍ଷିତ ହୁଏ । ଯଥା - 'ଦୁଃଖର ବାଦଲ ଘେରିବା', 'ନିଆଁ ଖପର ହେବା' (କ୍ରୁଦ୍ଧ ହେବା), 'ନିଆଁ ବରଷିବା' (ବିପଦ ପଡ଼ିବା), 'ନିଆଁ ଧୂଆଁ ଉଠିଯିବା' (ସମ୍ପୂର୍ଣ୍ଣ ବିନଷ୍ଟ ହେବା ବା ତଚ୍ଛାଦର ହେବା), 'ଦରପଦୋଳିରେ ଝୁଲିବା', 'ଭାଗ୍ୟଚକ୍ର ବୁଲିବା', 'କାମବାଣ', 'ପ୍ରେମ ନୌକାରେ ଭାସିବା', 'ସଫଳତାର ମୁକୁଟ' ଆଦି ଉଲ୍ଲେଖନୀୟ । ଏ ସବୁଥିରେ ଉପମେୟକୁ ବଦଳାଇ ଉପମାନ ରୂପରେ ପ୍ରୟୋଗ କରାଯାଇଛି । ଉପମା ଓ ରୂପକ ଉପରେ ସ୍ପଷ୍ଟ ରୂପରେ ଆଧାରିତ ରୂଢ଼ି ଛଡ଼ା ଆଉ କିଛି ରୂଢ଼ି ବ୍ୟବହୃତ ହେବାର ଦେଖାଯାଏ, ଯାହା ଉପମା କିମ୍ବା ରୂପକ ଉଭୟ ହୋଇପାରେ । ବାକ୍ୟରେ ପ୍ରୟୋଗର ଆଧାର ଉପରେ ତାର ଉପମା କିମ୍ବା ରୂପକ ନିର୍ଣ୍ଣୟ କରାଯାଇଥାଏ । ଯଥା - 'ଜଳନ୍ତା ରଡ଼ ହେବା', 'ଆଖିରୁ ନିଆଁ ବାହାରିବା', 'ପୁନେଇଁ ଚାନ୍ଦ', 'ଘିଅଲଡୁ', 'ବିଦୁରଙ୍କ ଭୋଜନ', 'ଜିଭରେ ହାଡ଼ ହେବା', 'ଜିଭ ହୁଡ଼ିବା' । ଏହିପ୍ରକାର ଅନ୍ୟ ରୂଢ଼ିପ୍ରତ୍ୟୟ ମଧ୍ୟ ଦୁଇ ରୂପରେ ଗୃହୀତ ହୋଇପାରେ ।

# ରୂଢ଼ିରେ ପ୍ରତୀକ-ଯୋଜନା

ମନୁଷ୍ୟ ଜୀବନରେ ଅଗଣିତ ଚର-ଅଚର, ସଜୀବ-ନିର୍ଜୀବ ବସ୍ତୁ ଏବଂ ପ୍ରାଣୀ ସମ୍ପର୍କରେ ଆସିଥାଏ । ସେଥି ମଧ୍ୟରୁ କିଛି ମଣିଷର ପ୍ରିୟ ଓ କିଛି ଅପ୍ରିୟ । ନିଜର ଏହି ଅନୁଭୂତି ସେ ଅନ୍ୟାନ୍ୟ ପ୍ରସଙ୍ଗରେ ଉଲ୍ଲେଖ କରିଥାଏ । ସେ ପ୍ରକାର ସ୍ଥିତି ଉପସ୍ଥିତ ହେଲେ ଅବିଚ୍ଛିନ୍ନେ ସେ ଦୁହିଁଙ୍କର ସମାନତା ବା ଅସାମଞ୍ଜସ୍ୟତା ଦେଖାଇଦିଏ । ଏହି ପ୍ରତୀକମାନଙ୍କ ମଧ୍ୟରୁ ଅନେକ ରୂଢ଼ ହୋଇଯାଇଛି ଏବଂ ଦୀର୍ଘ ଅତୀତରୁ ଗୋଟିଏ ଭାବର ବ୍ୟଞ୍ଜନା ନିମନ୍ତେ ପ୍ରଯୁକ୍ତ ହୋଇ ଆସୁଅଛି । ସମୟ ଓ ପରିସ୍ଥିତି ଅନୁସାରେ କିଛି ନୂଆ ପ୍ରତୀକ ସର୍ବଦା ପ୍ରୟୋଗ ବା ବ୍ୟବହାରରେ ଆସିଥାଏ । ପ୍ରତୀକ ରୂପରେ ପଶୁ,ଅବୟବ, ରଙ୍ଗ ଇତ୍ୟାଦିର ବିଶେଷ ଉଲ୍ଲେଖ ଦେଖାଯାଏ । ଏହା ସଙ୍ଗେ ବାହ୍ୟ ଜଗତର ଅନ୍ୟାନ୍ୟ ଅନେକ ଉପକରଣ, ବସ୍ତୁ ଏବଂ ବ୍ୟକ୍ତି ମଧ୍ୟ ପ୍ରତୀକର କାର୍ଯ୍ୟ କରିଥାଆନ୍ତି ।

ପ୍ରତୀକ ରୂପରେ ରୂଢ଼ିରେ ସର୍ବାଧିକ ଉଲ୍ଲେଖ ପଶୁମାନଙ୍କ ସଂପର୍କରେ ଦେଖାଯାଇଥାଏ । ସଜୀବ ପଶୁପକ୍ଷୀ ବହୁ ପ୍ରକାରେ ମନୁଷ୍ୟର ନିକଟତମ । ତେଣୁ ସେମାନଙ୍କ ମାଧ୍ୟମରେ ମାନବସ୍ୱଭାବକୁ ସ୍ପଷ୍ଟ କରିବା ବହୁତ ସହଜ ହୋଇଥାଏ । ପ୍ରାଣୀ ମଧ୍ୟରେ ଅଜଗର ଆଳସ୍ୟର; ପେଚା ବୁଦ୍ଧିହୀନତାର; ଓଟ ଉଚ୍ଚତାର; କୁକୁର କଳହବୃତ୍ତି, ଲୋଭ ତଥା ତୁଚ୍ଛତାର; ଗଧ ନିରୀହତା ଓ ବୁଦ୍ଧିହୀନତାର; ଗୋରୁ ନିରୀହପଣର; ବିଲୁଆ ଭୟାଳୁ ମନୋବୃତ୍ତିର; ଛୁଚା ନିକୃଷ୍ଟତାର; ମାଙ୍କଡ଼ ଅଜ୍ଞାନୀ ବ୍ୟକ୍ତିର; ବଳଦ, ସଳଖ ଓ ବୋକା ପଣିଆର; ମେଣ୍ଢା ଅନ୍ଧାନୁସରଣର; ହେଟା ଧୂର୍ତ୍ତତା ଓ ଛଳ କପଟର; ମଇଁଷି ସ୍ଥୂଳବୁଦ୍ଧି, ଅରସିକତା, କଳା ଓ ମୋଟାପଣର; କୁମ୍ଭୀର ଅନ୍ୟଠୁ ଛଡ଼ାଇ ନେବାର; ବେଙ୍ଗ ସଂକୀର୍ଣ୍ଣତାର; ବାଘ ବାହାଦୁରୀର; ଷଣ୍ଢ ଉଚ୍ଛୃଙ୍ଖଳତାର; ହାତୀ ସମୃଦ୍ଧିର; ହରିଣ ଭଳପଣିଆର ପ୍ରତୀକ ରୂପେ ମାନି ନିଆଯାଇଛି ।

ଗାଈ ଓ ବାଘକୁ ଛାଡ଼ି ଦେଲେ ମଣିଷର ଧ୍ୟାନ ଅନ୍ୟ କୌଣସି ପଶୁ ପ୍ରତି ଯାଇନାହିଁ । ସେଥିପାଇଁ ରୂଢ଼ିପ୍ରତ୍ୟୟରେ ଏହି ଦୁଇ ପ୍ରାଣୀକୁ ଛାଡ଼ି ଅନ୍ୟ କେତେକ ପ୍ରାଣୀକୁ ପ୍ରତୀକ ହିସାବରେ ବ୍ୟବହାର କରାଯାଇଛି । ଓଟର 'ଉଚ୍ଚତା' ତାର ଆକାରର ବିଶେଷଣ, ତା'ର 'ସ୍ୱଭାବ' ନୁହେଁ । ଏଣୁ ରୂଢ଼ିରେ ଓଟକୁ 'ମରୁପ୍ରିୟ' ବା 'ମରୁପୋତ' କହିବା ପରିବର୍ତ୍ତେ ରୂଢ଼ିପ୍ରତ୍ୟୟରେ ଅନଙ୍ଗୀକାର-ବାଚକ ସଂଜ୍ଞା ଯଥା- 'ଓଟମୁହାଁ', 'ଓଟପେଟୁ', 'ଡେଙ୍ଗା-ଓଟିଆ' ପ୍ରୟୋଗ ହୋଇଥିବାର ଦେଖାଯାଏ । ଓଟ ମରୁଯାତ୍ରାରେ ଦୀର୍ଘଦିନ ଧରି ପାଣି ବା ଖାଦ୍ୟ ଉଦରସ୍ଥ ନକରି ବାହନ ହିସାବରେ ମରୁଚାରୀଙ୍କ ଜୀବନ ରକ୍ଷା କରେ । ଅଥଚ

ତା'ର କାର୍ଯ୍ୟକାରିତାକୁ ଉପେକ୍ଷା ଓ ଅଗ୍ରାହ୍ୟ କରାଯାଇଛି । ଅନୁରୂପଭାବେ ମାଙ୍କଡ଼ର ତୀକ୍ଷ୍ଣବୁଦ୍ଧିକୁ ଅସ୍ୱୀକାର କରି 'ବାନ୍ଦର ମୁହଁ', 'ବାନ୍ଦରାପଣ' ଭାବରେ ଗ୍ରହଣ କରାଯାଇଛି । ରୂଢ଼ିପ୍ରତ୍ୟୟରେ ମାଙ୍କଡ଼କୁ ଅଜ୍ଞାନୀ ଓ ଅନାଡ଼ି ରୂପରେ ଗ୍ରହଣ ଓ ପ୍ରୟୋଗ କରାଯାଇଛି । 'କୁକୁର ପରି ଲାଞ୍ଜ ହଲାଇବା', 'ଶ୍ୱାନ ନିଦ୍ରା', 'କୁକୁର ଲାଙ୍ଗୁଡ଼ ବଙ୍କା', 'କୁକୁର ପେଟରେ ଘିଅ', 'ଗୁହଖିଆ କୁକୁର' ପ୍ରଭୃତି କୁକୁରର ଅବିଗୁଣତକ ପ୍ରୟୋଗ କରାଯାଇ, ସ୍ୱାମୀଭକ୍ତି, ଜାଗରୁକତା, ପାଳକ, ପରିବାର ପ୍ରତି ସ୍ନେହ ଓ ସେବା ପରି ସଦ୍‌ଗୁଣକୁ ଅଗ୍ରାହ୍ୟ କରାଯାଇଛି । ସେହିପରି ହାତୀ ନିଜଗୁଣ ହେତୁ ସମୃଦ୍ଧିର ପରିଚାୟକ ନହୋଇ ଧନିକ ବ୍ୟକ୍ତିଙ୍କ ବାହନ ରୂପେ ପ୍ରଶଂସିତ ହୋଇଛି ।

ଅନ୍ୟାନ୍ୟ ଜୀବଜନ୍ତୁ ମଧ୍ୟରେ ସାପର ଭୟାନକତା ଏବଂ ଦୁଷ୍ଟତାର, ମାଛର ସ୍ନିଗ୍ଧତା ଓ ସରଳତାର, କାଉର ଶୁଚିଙ୍କଟୁ ରାଉ ରାଉ ରାବ ବିକଟାଳ କଳା ଓ ଦୁଷ୍ଟତାର, ଭ୍ରମର ସ୍ୱାର୍ଥପର ଓ ଲୋଭୀର, ପ୍ରଜାପତି ଚଞ୍ଚଳତାର, ଟିଆ ସ୍ୱାର୍ଥୀ ଓ ବେଇମାନୀର, ହଂସ ପବିତ୍ରତା ଓ ଶୁଭ୍ରତାର ପ୍ରତୀକ ହିସାବରେ ପ୍ରଯୁକ୍ତ ହୋଇଥାଆନ୍ତି । ସୀମିତ ହେଲେ ମଧ ଏମାନଙ୍କ ସମ୍ବନ୍ଧିତ ରୂଢ଼ି ଯତ୍ର-ତତ୍ର ପ୍ରାପ୍ତ ହୋଇଥାଏ ।

ଅଙ୍ଗ-ପ୍ରତ୍ୟଙ୍ଗ ହିସାବରେ ନାକ, ପେଟ, ବାହୁ, ନିଶ, ମୁଣ୍ଡ ପ୍ରତୀକ ରୂପରେ ରୂଢ଼ିପ୍ରତ୍ୟୟରେ ଗୃହୀତ ହୋଇଥାଏ । ଆଖି ନିଜ ସାଧାରଣ ଅର୍ଥ ବ୍ୟତୀତ ପରଖ, ବିଚାର, ପ୍ରମାଣର, ଅପରିବର୍ତ୍ତନୀୟତାର ଓ ଜ୍ଞାନର ଅର୍ଥରେ ପ୍ରଯୁକ୍ତ ହୋଇଥାଏ । ନାକ ଓ ନିଶ ସହିତ ଇଜ୍ଜତ୍-ସମ୍ମାନ ଓ ମାନ ଅପମାନର ଭାବ ଜଡ଼ିତ ଥାଏ ବୋଲି ତାହା ପ୍ରତୀକ ହିସାବରେ ବ୍ୟବହୃତ । ପେଟ ସହିତ ଜୀବିକାର ଘନିଷ୍ଠ ସମ୍ବନ୍ଧ ଅଛି । ଜୀବିତ ରହିବା ପାଇଁ ପାଣି ଓ ପବନକୁ ଛାଡ଼ିଦେଲେ ଖାଦ୍ୟର ଆବଶ୍ୟକତା ପଡ଼େ । ବ୍ୟକ୍ତି ପେଟପୋଇଁ କୁ ଓ ସୁ ସବୁକିଛି କରିଥାଏ । 'ରୂଢ଼ିପ୍ରତ୍ୟୟ'ରେ ଏହା ଓତପ୍ରୋତ ଭାବେ ଜଡ଼ିତ ଓ ଗୃହୀତ ହୋଇଥାଏ । 'ପେଟ ଧନ୍ଦା', 'ପେଟ ଚିନ୍ତା' 'ପେଟ ପୋଷିବା', 'ପାପୀ ପେଟ ପାଇଁ', 'ପେଟରେ ଲାଥ ମାରିବା' ପ୍ରଭୃତି ଉକ୍ତି ରୂଢ଼ିରେ ପେଟ ଜୀବିକାର ପ୍ରତୀକ ରୂପରେ ପ୍ରକାଶିତ । ବାହୁ-ଭରସା, ଜଙ୍ଘ-ପୌରୁଷ ଓ ବଳର ପ୍ରତୀକ ରୂପେ ଗୃହୀତ । 'ଆଜାନୁଲମ୍ବିତ ବାହୁ', 'ବାହୁର ଭରସା', 'ଜଂଘର ବଳ', 'ଦୃଢ଼ ଜଙ୍ଘ' ପ୍ରଭୃତି ଏହାର ପ୍ରମାଣ ।

ତୃତୀୟ ସ୍ଥାନ 'ରଙ୍ଗ' ସମ୍ବନ୍ଧୀୟ ପ୍ରତୀକ । ରୂଢ଼ିପ୍ରତ୍ୟୟରେ ଧଳା ରଙ୍ଗକୁ ପବିତ୍ରତା ଓ ଶୁଭ୍ରତାର ପ୍ରତୀକ ବୋଲି ଗ୍ରହଣ କରାଯାଇଅଛି । ନାଲି ରଙ୍ଗ ପ୍ରେମ ଏବଂ ସମ୍ପନ୍ନତାର ଭାବ ବ୍ୟକ୍ତ କରୁଥିବାରୁ ଏବଂ ସବୁଜ ପ୍ରସନ୍ନତାର ସୂଚକ ହୋଇଥିବାରୁ, ଏହି ରଙ୍ଗ ସମ୍ବନ୍ଧିତ

ପ୍ରଚୁର ରୂଢ଼ିପ୍ରତ୍ୟୟ ଦେଖିବାକୁ ମିଳିଥାଏ । କଳାରଙ୍ଗ କଳୁଷ ଏବଂ ଅପମାନର ପ୍ରତୀକ ବୋଲି ଧରାଯାଏ । 'କଳାନାଗ', 'କଳାମୁହଁ', 'ମୁହଁ କଳା କରିବା', 'କଳା ବାଦଲ ଛାଇବା' ଇତ୍ୟାଦିର ରୂଢ଼ିପ୍ରତ୍ୟୟରେ ଯଥେଷ୍ଟ ବ୍ୟବହାର ଦେଖାଯାଏ । ସେହିପରି 'ଗୋରା ମୁହଁ', 'ଧଳାଲୁଗାରେ କଳା ଛାପ', 'ଧଳାକୁ କଳା କରିବା', 'କାଉକୁ ଧୋଇଲେ କ'ଣ ବଗ ହୁଏ ?', 'କାଉ ହୋଇ ହଂସ ପରି ଚାଲିବା', 'ଶ୍ୱେତ ଶୁଭ୍ର ହିମାଳୟ' ଇତ୍ୟାଦି ଶୁଭ୍ରତାର ମହତ୍ୱ ପ୍ରତିଷ୍ଠା କରିଥାଏ ।

ଅନ୍ଧକାର ଅଜ୍ଞାନର ପ୍ରତୀକ  ହିସାବରେ ଅଭିବ୍ୟକ୍ତ । ଆଲୋକ ଅଭାବରୁ ଯେପରି ଆଖପାଖ, ପରିବେଶ ଦୃଶ୍ୟ ହୁଏନାହିଁ, ଜ୍ଞାନର ଅଭାବରୁ କୌଣସି ବସ୍ତୁର ସଠିକ୍ ପରିଚୟ ପାଇବା ସେହିପରି ସମ୍ଭବ ହୋଇନଥାଏ । 'ଅନ୍ଧକାର କଟିବା', 'ଅନ୍ଧକାରରେ ଚାଲିବା', 'ଅନ୍ଧକାର ହେବା' ଏହିପରି ସ୍ଥିତିକୁ ଇଂଗିତ କରେ । କେବଳ ଏତିକି ନୁହେଁ, 'ଅନ୍ଧକାର ଯୁଗ', 'ଅନ୍ଧକାରାଚ୍ଛନ୍ନ ମହାଦେଶ'  'ଅନ୍ଧାର କଟିବା', 'ଅନ୍ଧାରୀ ବିଲେ' ଅବସ୍ଥାକୁ ସୂଚାଇ ଥାଏ ।

ନିଆଁକୁ ନେଇ ବହୁ 'ରୂଢ଼ି ପ୍ରତ୍ୟୟ'ଦେଖାଯାଏ । ଏହାଦ୍ୱାରା ସ୍ଥୂଳ ଅଗ୍ନି, ଉତ୍ତାପ, ନିଆଁପରି ଲାଲ୍ ରଙ୍ଗ ସହିତ କ୍ରୋଧ, ବିବାଦ ଏବଂ ବିଦ୍ରୋହ ଭଳି ସୂକ୍ଷ୍ମଭାବର ବ୍ୟଞ୍ଜନାରେ ରୂଢ଼ି ପର୍ଯ୍ୟବେସିତ । 'ନିଆଁର ପିତୁଳା', 'ଅଗ୍ନିର ପତଙ୍ଗ', 'ମୁଣ୍ଡରେ ବା ତାଳୁରେ  ନିଆଁ ଲାଗିଯିବା', 'ତଳିପାରୁ ନିଆଁ ଲାଗିବା', 'ନିଆଁ ଖାଇ ଅଙ୍ଗାର ହଗିବା', 'ନିଆଁ ଗିଳା', 'ନିଆଁ ଧୂଆଁ ଉଠିଯିବା', 'ନିଆଁ ନଥାଇ ଧୂଆଁ', 'ନିଆଁ ବରଷିବା', 'ନିଆଁବାଣ', 'ନିଆଁରେ ମୁତିବା', 'ନିଆଁଲଗା', 'ନିଆଁ ଚଲା', 'ନିଆଁରେ ଖେଳିବା' ଇତ୍ୟାଦି ନିଆଁ ବିପଦ ବା ଧ୍ୱଂସର ପ୍ରତୀକ ହିସାବରେ  ଗୃହୀତ ହୋଇଛି ।

ସେହିପରି ଅନ୍ୟାନ୍ୟ ପ୍ରାକୃତିକ ତତ୍ତ୍ୱରେ ପାହାଡ଼, ନଦୀ, ମେଘ ଓ ମାଟି ପ୍ରଭୃତି ମଧ ପ୍ରତୀକ ରୂପରେ ପ୍ରଚଳିତ । ପାହାଡ଼କୁ ନେଇ 'ପାହାଡ଼ ତଳିଆ', 'ପାହାଡ଼ ତୋଡ଼', 'ପାହାଡ଼ିଆ କେଦାର', 'ପାହାଡ଼ି ଶିଶୁ', 'ମୁଣ୍ଡରେ ପାହାଡ଼ ଖସିବା', 'ପାହାଡ଼ ସହ ଟକ୍କର ଦେବା' ଆଦି ରୂଢ଼ିପ୍ରତ୍ୟୟ ଏକ ଭିନ୍ନ ରୂପରେ ପାହାଡ଼ର ଆକାରଗତ ବିଶାଳତାର ବୋଧ କରାଏ ଏବଂ ବ୍ୟକ୍ତିର ପାହାଡ଼ ସମକ୍ଷରେ ଅସମର୍ଥତାର ଭାବ ବ୍ୟକ୍ତ କରେ । 'ନଦୀ' ଜଳ ସତତ ପବାହିତ, ତା'ର ଉପଯୋଗ ସମସ୍ତେ କରିଥାଆନ୍ତି ଏବଂ ପ୍ରବାହମାନ ନଦୀ କଦାପି ସମାପ୍ତ ହୁଏନାହିଁ । ଏଣୁ ନଦୀ ବହୁତାୟତର ପ୍ରତୀକ ହୋଇଯାଉଛି । 'ଦୁଧ ଘିଅର ନଦୀ ବହିବା', 'ରକ୍ତନଦୀ', 'ବିରହନଦୀରେ ବୁଡ଼ିବା', 'ନଦୀକାନ୍ତା' (ଜାମୁଗଛ), 'ନଦୀକୂଳ ପ୍ରିୟ' (ଜଳ ବେତସ), 'ନଦୀଧର' (ଶିବ),

'ନଦୀ ନିସ୍ରାବ' (ଡାଳୁଅ ଧାନ), 'ନଦୀପତି (ସମୁଦ୍ର), 'ନଦୀଭାବ' (ସୈନ୍ଧବ ଲୁଣ), 'ନଦୀଭାଷକ' (ମାଣ ସାରୁ), 'ନଦୀ ମାତୃକ' 'ନଦୀ ରୟ' (ନଦୀପ୍ରବାହ) ପ୍ରଭୃତି ଉଦାହରଣ ନଦୀକୁ ନେଇ ରୂଢ଼ିପ୍ରତ୍ୟୟ ଗଠିତ ।

ବିଜୁଳିପ୍ରବାହର ଗତି ଅତି କ୍ଷୀପ୍ର । ଅତଏବ ବିଜୁଳୀ ତ୍ୱରିତ ଗତିର ପ୍ରତୀକ । ଯଥା - 'ବିଜୁଳି କରେଣ୍ଟ ଲାଗିବା', 'ବିଜୁଳିର ବୋତାମ୍ ଦାବିଲାମାତ୍ରେ', 'ବିଜୁଳି ଭଳି ଦୌଡ଼ିଯିବା', 'ବିଜୁଳି ପଡ଼ିଗୁଣା' (ଅଳଙ୍କାର), 'ବିଜୁଳି ପୋଖ' (ଜୁଳୁଜୁଳିଆ ପୋକ), ବିଜୁଳିବତୀ ଆଦି ରୂଢ଼ିରେ ବିଜୁଳିର ସ୍ଥୂଳ ଉପସ୍ଥିତିର ସେପରି ମହତ୍ତ୍ୱ ନାହିଁ, ଯାହାକି ତା'ର ଗତି (ନୈସର୍ଗିକ ବା ବୈଜ୍ଞାନିକ ହେଉ)ରୁ ଜାତ ହୋଇଥାଏ ।

ପଞ୍ଚଭୂତରେ ମାଟି ସର୍ବାଧିକ ସ୍ଥୂଳତତ୍ତ୍ୱ । ସଚରାଚର ବିଶ୍ୱରେ ମାଟିର ତତ୍ତ୍ୱ ବହୁସ୍ଥଳରେ ଦେଖାଯାଏ । ସ୍ଥୂଳ ଜଳ, ଅଗ୍ନି ତଥା ସୂକ୍ଷ୍ମ ବାୟୁ ଓ ଆକାଶର ତୁଳନାରେ ମାଟିକୁ ଅଧିକ ମହତ୍ତ୍ୱ ଦିଆଯାଇଛି । 'ମାଟିର ପାହାଡ଼', 'ମାଟିରେ ଛୁଇଁଲେ ସୁନା ହେବା', 'ମାଟିରେ ମିଶିବା' ପ୍ରଭୃତି ରୂଢ଼ିପ୍ରତ୍ୟୟରେ ଏକ ତୁଚ୍ଛ ଓ ମୂଲ୍ୟହୀନ ବସ୍ତୁ ହିସାବରେ ମାଟିକୁ ବ୍ୟଞ୍ଜିତ କରାଯାଇଛି । ମାଟି ନିଷ୍ପ୍ରାଣ, ଜ୍ଞାନହୀନ ଜଡ଼ ହୋଇଥିବାରୁ, 'ମାଟିର ପିତୁଳା', 'ମାଟିର ମଣିଷ', 'ମାଟି ମଟାଳ' ଆଦି ଜଡ଼ତାର ପ୍ରତୀକ ରୂପରେ ବ୍ୟବହୃତ । ଶରୀରକୁ ମାଟିର ସଂଜ୍ଞା ମଧ ଦିଆଯାଇଛି । ତାହା ସଜୀବ ହେଉ ବା ନିର୍ଜୀବ । 'ମାଟି ଭଲ ହେବା', 'ମାଟି - ମା'', 'ମାଟି ଆଟୁ', 'ମାଟି କନ୍ଦ', 'ମାଟି ଗଣ୍ଡି', 'ମାଟି ଘରା', 'ମାଟି ଟଟା', 'ମାଟି ତେଲ', 'ମାଟି ପୂରା', 'ମାଟି ବଂଶ କରଣ', 'ମାଟି ଭାଉ', 'ମାଟି ମାଟି ଲାଗିବା', 'ମାଟି ହେବା', 'ମାଟିରେ ଯିବା' ଆଦି ଶବ୍ଦ ନିର୍ଜୀବ ଶରୀରର ପ୍ରତୀକ ।

ଅତ୍ୟାଧୁନିକ କାଳରେ ପ୍ରାପ୍ତ 'ପ୍ଲୁଟୋନିୟମ, ୟୁରେନିୟମ୍ ପ୍ରଭୃତି ମୂଲ୍ୟବାନ୍ ଧାତୁ ଛାଡ଼ିଦେଲେ ଦୁନିଆର ବହୁ ପୁରାକାଳରୁ ସୁନା ସବୁଠାରୁ ମୂଲ୍ୟବାନ୍ ଓ ସ୍ଥାୟୀ ମହତ୍ତ୍ୱ ରଖୁଥିବା ଧାତୁ । ସୁନା ସବୁପ୍ରକାର ସଂପଦ ଏବଂ ସମୃଦ୍ଧିର ପ୍ରତୀକ ହିସାବରେ ସର୍ବମାନ୍ୟ । 'ସୁନା ବରଷିବା', 'ସୁନାର ଦେଶ', 'ସୁନାର ପାଚେରୀ ଛିଡ଼ା କରାଇବା', 'ସୁନାର ଲଙ୍କା', 'ସୁନା ସଂସାର', 'ସୁନା ବରଷିବା', 'ସୁନାରେ ମଣ୍ଡି ଦେବା', 'ସୁନା ଅସରଫି', 'ସୁନାଚାକରା', 'ସୁନା କୁକୁଡ଼ା ଉଡ଼େଇବା', 'ସୁନାଖିଲ', 'ସୁନାଗୋରୀ', 'ସୁନା ଛାଆଣି', 'ସୁନା ଜଙ୍ଘ', 'ସୁନା ଦୂବ', 'ସୁନା ନାକୀ', 'ସୁନା ପୁଅ', 'ସୁନା ଫଳିବା', 'ସୁନା ଫୁଟି ଅଗାଡ଼ି ହେବା', 'ସୁନା ବେଙ୍ଗ', 'ସୁନା ବେଶ' ଇତ୍ୟାଦି 'ରୂଢ଼ିପ୍ରତ୍ୟୟ'ର ସୁନା ଫଳିଲା ଭଳି ବୋଧ ହୁଏ ।

ରୂଢ଼ିପ୍ରତ୍ୟୟର ପ୍ରତୀକ ସଂଯୋଜନାରେ ଏପରି ବ୍ୟକ୍ତି ଏବଂ ସ୍ଥାନର ବ୍ୟବହାର ମିଳେ, ଯାହା ନିଜର କୌଣସି ଗୁଣ ବା ବିଶେଷ କାରଣରୁ ସେହି ଗୁଣ ବା ବିଶେଷତାର ପ୍ରତୀକ ହୋଇଯାଇଛି । ଲୋକପ୍ରିୟ ପୌରାଣିକ ପାତ୍ର ବା ଦେବଦେବୀଙ୍କ ମଧ୍ୟରୁ ଅନ୍ନପୂର୍ଣ୍ଣା-ଭୋଜନଦାତ୍ରୀ, ଲକ୍ଷ୍ମୀ-ସୌଭାଗ୍ୟ ଓ ସମୃଦ୍ଧି, ହରିଶ୍ଚନ୍ଦ୍ର-ସତ୍ୟବାଦିତା, ଭୀଷ୍ମ-ପ୍ରତିଜ୍ଞା, ରାବଣ-ଅନ୍ୟାୟ ଅବିଚାର, ଶିବ-ଭୋଳାପଣର ପ୍ରତୀକ ରୂପରେ ପରିଗଣିତ ହୋଇଥାଆନ୍ତି । ତେଣୁ ରୂଢ଼ିପ୍ରତ୍ୟୟରେ ଏହାର ବହୁଳ ଦୃଷ୍ଟାନ୍ତ ମିଳେ । ଯଥା - 'ଅନ୍ନପୂର୍ଣ୍ଣା ହେବା', 'ସୌଭାଗ୍ୟ ଲକ୍ଷ୍ମୀ', 'ଭୀଷ୍ମ ପ୍ରତିଜ୍ଞା', 'ବିଦୁରଙ୍କ ଶାଗ', 'ଶବରୀର କୋଳି', 'ଭୋଳାନାଥ ହେବା' ଇତ୍ୟାଦି ।

ଜାତିଗତ, ସ୍ଥାନଗତ ବିଦ୍ୱେଷ ଓ ପ୍ରାନ୍ତୀୟତା ଭାବନାର ପରିଚୟ ମଧ୍ୟ ରୂଢ଼ିରେ ମିଳିଥାଏ । 'ଏଲହାବାଦୀ ଖିଅର', 'ବନାରସୀ ଚାଲ ଚାଲିବା', 'ବନାରସୀ ଠଗ', 'ବାରିପଦିଆ ମୁଢ଼ି', 'କଲିକତି ଚେଙ୍କ', 'ମହାଭାରତ', 'ଲଙ୍କାକାଣ୍ଡ', 'ବିହାରୀବାବୁ', 'ଦକ୍ଷିଣୀ ଶାଢ଼ୀ' ପ୍ରଭୃତି ବ୍ୟଞ୍ଜନା ସହିତ ଶିକ୍ଷାଦୀକ୍ଷା ଅଭାବ ଓ ସଂସ୍କାରହୀନତା ହେତୁ 'ଫିରିଙ୍ଗି ବାବୁ', 'ଓଡ଼ିଆ ମେଣ୍ଢା', 'ବଙ୍ଗାଳୀ ଭାତୁଆ', 'ମରାଠି ଖଣ୍ଡ' ପରି ଅମାର୍ଜିତ ରୂଢ଼ିପ୍ରତ୍ୟୟ ମଧ୍ୟ ଦେଖିବାକୁ ମିଳେ । କହିବାକୁ ଗଲେ 'ରୂଢ଼ିପ୍ରତ୍ୟୟ' ଲିଖିତ ଓ କଥିତ ଭାଷା ବିନା ଯେ ମୂଲ୍ୟହୀନ, ଏହା କହିବାବାହୁଲ୍ୟ ।

*(ପରବର୍ତ୍ତୀ ଖଣ୍ଡରେ ଏହାର ବର୍ଦ୍ଧିତ ଆଲୋଚନା ସନ୍ନିବେଶିତ ହୋଇଅଛି ।)*





୧୯୪୭୫.* ନଅ ଗାଁ ଗଲେ ସେରେ, ଛଅ ଗାଁ ଗଲେ ସେରେ ।
(ଭାଗ୍ୟ ଅନୁସାରେ ମଣିଷ ରୋଜଗାର କରେ । ବାରଥାନ ଦୌଡ଼ିବା ବୃଥା ।
ଭିକମଗାର ଭାଗ୍ୟ ବଦଳେ ନାହିଁ ।)

୧୯୪୭୬. ନଦାନ୍ତିଆ ଛଦାନ୍ତିଆ ଭାଗ୍ୟେ ଥିଲେ ପାଇ,
ସାତ ଦାନ୍ତିଆ ଗୋସେଇଁ ଖାଇ ।

୧୯୪୭୭. ନଅରଦାସୀ ସଂସାରେ ବୁଲେ,
ରାଜା ବିଜେକଲେ କବାଟ ପଡେ ।
(ସତୀ ସାବିତ୍ରୀ, କୁଆଡେ ଯାଏ ନାହିଁ, ରାଜାଙ୍କ ପାଖରେ ଏଇ ପ୍ରମାଣ କରେ ।
ପ୍ରକୃତ ପକ୍ଷେ ସେ ବାରବୁଲି, ଅସତୀ । )

୧୯୪୭୮. ନଅର ଭିତରେ ନିତି ହାଟ ।
(ରାଜାଙ୍କ ଉଆସ ଭିତରେ ଦାସଦାସୀ ଗହଳ, କୋଳାହଳ ଲାଗି ରହିଥାଏ । )

୧୯୪୭୯. ନଅର ମଶା ହାତୀକୁ ଗିଳେ ।
(ରାଜାଙ୍କ ପାଖରେ କାମ କରୁଥିବା ଛୋଟ ଚାକିରିଆ ମଧ ବଡ ଲୋକଙ୍କୁ ଧମକାଇ
ଥାଏ । ମଶା ହାତୀକୁ ଗିଳିଲା ପରି ଏହା ଅସମ୍ଭବ ଘଟଣା । )

୧୯୪୮୦. ନଅଣ୍ଟ ବେଳେ ଅଣ୍ଟ ନାହିଁ, ବାଦୁଡିର ଥଣ୍ଟ ନାହିଁ,
ଅଭ୍ୟାଗତର କଣ୍ଟ ନାହିଁ, ଖାତକର ଆଣ୍ଟ ନାହିଁ ।

୧୯୪୮୧. ନଇଁ ତୋଳୁଥିଲା ଶାଗ
ତା ବରତନ ଆଗ ।
(ସହଜ କାମ କରୁଥିବା ବ୍ୟକ୍ତିର ମଜୁରୀ ମାଗିବା ପ୍ରତି ବ୍ୟଙ୍ଗ ।)

୧୯୪୮୨. ନଇଁ ନଇଁଆ ବାଘରେ, ନଇଁ ନଇଁ ବାଘ,
ମାରିଦେଲା ବିଧାତାଏ, ରହିଗଲା ଦାଗ ।
(ଡୁଡୁ ଖେଳର ରାହାଧରା ଗୀତ ।)

୧୯୪୮୩. ନଇଁ ନଇଁ କରି ଚାଲଇ ବୁଢୀ,
ହାତକେ ପାଛିଆ ହାତକେ ବାଡି ।

---

☆ ଦଶମ ଖଣ୍ଡ ଗ୍ରନ୍ଥର ଶେଷ କ୍ରମିକ ନମ୍ବର - ୧୯୪୭୪ ଉତ୍ତାରୁ ଏହି ଗ୍ରନ୍ଥର କ୍ରମିକ ନମ୍ବର ଆରମ୍ଭ ।

(ଗାଁରେ ପଡର ଓ ଘଷି ସାଇଁତୁଥିବା ବୁଢୀଲୋକ ।)

୧୯୪୮୪. ନଇଁ ପଡିବା ପୂରା ଚାଷ, ଛତା ଘେନି ବୁଲା ଅଧା ଚାଷ,
ପିଣ୍ଡାରେ ବସି ଯେ ପଚାରେ ଚାଷ,ତାର କାହିଁ ଚାଷରେ ଆଶ ?

୧୯୪୮୫. ନଇଁ ପଡିଲେ ଇହଡି ଯାଏ, ଆଣ୍ଡ କଲେ କଟଡା ଖାଏ ।

୧୯୪୮୬. ନଈ ଅଡଡା ଚାଷ,ଅନ୍ତୁଡି ପୁଅକୁ ଆଶ ।
ଏ ସବୁ ବୃଥା ।
(ଏ ଉଭୟ ଉପରେ ଭରସା ବୃଥା ।ଏ ନଈକୂଳ ଜମି ନଈ ବଢିଲେ ଧୋଇ ଯାଇପାରେ ।ସଦ୍ୟ ଜନ୍ମ ହୋଇଥିବା ପୁଅ ବଡ଼ ନହେଲା ପର୍ଯ୍ୟନ୍ତ ଭରସା କରିବା ବୃଥା ।)

୧୯୪୮୭. ନଈକି ମାଠିଆ ଗଡୁ,
କାନ ଫିରିଫିରା (= କାନ ପାସିଆରେ ନୁଡ଼ୁକ ଝୁଲୁଥିବା ଅଳଙ୍କାର) ପିଉଳଖଡୁ,
ତୋ ଉପରେ ଚଡକ ପଡୁ ।

୧୯୪୮୮. ନଈକି ମାଠିଆ ଗଡିଯାଉଛି,
ମାଡକୁ ଯେ ଦିହ ମୁଗୁନି ପଥର, କଟୁ ବଚନରେ ଜଳି ଯାଉଛି ।
(ଶାଶୁଘରେ ବୋହୂର ଦୁଃଖ ।)

୧୯୪୮୯. ନଈକି ଗଡିଲି, ଚାଉଳ ଧୋଇଲି, ମାଡିଲି ମୁଣ୍ଡାଗାଗର (= ମାଛ),
ବୋଉକୁ କହିବୁ, କାନ୍ଦିବ ନାହିଁଲୋ, ଜୋଇଁ ତୋ ଗୁଣ ସାଗର ।
(ଦୁର୍ଗୁଣରେ ପୂର୍ଣ୍ଣ ।)

୧୯୪୯୦. ନଈକି ଫିଙ୍ଗିଲି ବେଚ,
ମୋ ଭାଉ କାଳିଆ ନଥଚପଡ, ବହୁତ ପଥର କାଛ ।

୧୯୪୯୧. ନଈକୂଳିଆ ଚେଣ୍ଡା, ବାହା ସମର୍ଥ ଭେଣ୍ଡା,
ପୂରଦିଆ ଭଟ୍ଟା ମଣ୍ଡା, ତୋଖା ପାଣିଦିଆ ଝଣ୍ଡା,
ଛେନା ପଣାକୁ ମରିଚ ଗୁଣ୍ଡା ।

୧୯୪୯୨. ନଈକେ ବାଙ୍କ, ଦେଶକେ ଫାଙ୍କ ।
(ନାନା ଦେଶରେ ନାନା ପ୍ରକାର ଚରିତ୍ର ଓ ଚଳଣି ଦୃଷ୍ଟିଗୋଚର ହୁଏ । )

୧୯୪୯୩. ନଈ ଖଣ୍ଡି ଚାଷ, ନଈ ଖଣ୍ଡି ବାସ,
କେବେ ନ କରିବ ଆଶ ।

୧୯୪୯୪. *ସମାର୍ଥରେ* - ନଈକୂଳିଆ ଚାଷ, ନଈକୂଳିଆ ବାସ
କେବେ ନ କରିବ ଆସ ।

(ବଢ଼ିରେ, ଘରଦ୍ୱାର ବିଲର ଫସଲ ନଷ୍ଟ ହୋଇପାରେ, ମନରେ ଏଇ ଶଙ୍କା ସଦାବେଳେ ଥାଏ ।)

୧୯୪୯୫. ନଈ ଚୁଙ୍କୁଡ଼ିଆ ଦଳ (= ସରୁ ସରୁ ଦଳ ଚିଙ୍ଗୁଡ଼ି ମାଛ ରହନ୍ତି ।),
ଖାଇଲେ ଖାଇବେ କୁଆ ଶାଗୁଣା,
ହେଲେ ହେବ କିଆ ଚଳ (=ଶବକୁ ପୋତି ଉପରେ କିଆଗଛ ପୋତନ୍ତି ।) ।

୧୯୪୯୬. ନଈ ଚୁଙ୍କୁଡ଼ିଆ ଦଳ,
ଚାହିଁ ଚାହିଁ ଆସି ଦରବୁଢ଼ୀ ହେଲି, ମୁଣ୍ଡରେ ପାଚିଲା ବାଳ ।
(ବୃଦ୍ଧା ପ୍ରେମିକାର ଅନୁଶୋଚନା ।)

୧୯୪୯୭. ନଈ ତଡେ ତଡେ ଖପରା କାତି, ବରଷି ଦେଲେ ଇନ୍ଦ୍ର ଅତି ।
(ପିଲାମାନେ ନଈ କୂଳରେ ଖପରା ବା ଗୋଡ଼ି ଖେଳନ୍ତି । ବର୍ଷା ବା ନଈ ବଢ଼ିରେ ସେମାନେ ଖେଳି ପାରନ୍ତି ନାହିଁ । ଖେଳ ନ ହେଲେ ବି ବର୍ଷାହେଉ । ମରୁଡ଼ିବେଳେ ପିଲାମାନେ ଇନ୍ଦ୍ରଙ୍କୁ ପ୍ରାର୍ଥନା କରନ୍ତି - 'ଦେ ମହାପ୍ରଭୁ ଦେ ଅଢ଼ାଡ଼ି, ରାତିକି ଖାଇବୁ ଖିରୀ ଖେଚାଡ଼ି' ।)

୧୯୪୯୮. ନଈ ତଡେ ତଡେ, କିଏ ଯାଉଛ ଲୋ, ମୋଠାରୁ ବାରତା ନିଅ;
ଗୁଆ ସାତଖଣ୍ଡ,ପଇତା ଦିଖଣ୍ଡ,ବାପାଙ୍କ ହାତରେ ଦିଅ ।

୧୯୪୯୯. ନଈ ତଡର ଚାଷ,
ଗାଁ ଶେଷର ବାସ, (= ଗାଁ ମୁଣ୍ଡଘର ଚୋରକୁ)
ବୁଢ଼ା କାଳର କାଶ ! (ବୁଢ଼ା ବୟସରେ କାଶ ହେଲେ କଷ୍ଟ ହୁଏ ଏବଂ ଜୀବନ ନିର୍ବାପିତ ହେବାର ସମ୍ଭାବନା ଥାଏ ।)

୧୯୫୦୦. ନଈତଳେ ଅଙ୍କରାନ୍ତି (= ଔଷଧ ଗୁଳ୍ମ),
ପେଟପୂରା କରି ଥରେ ଖାଆନ୍ତି ।

୧୯୫୦୧. ନଈତଳେ କାଉଁରିଆ (= ନଳିତା, ଝୋଟ କାଢ଼ିଲା ପରେ ରହିବା କାଠି),
ଧାନ ସେରକରେ ପଣେ ଚକୁଳି, ପୁଅ ନାଁ ବାଉରିଆ ।

୧୯୫୦୨. ନଈତଳେ କାଉଁରିଆ,
ଯାଉଛି ପଛକେ ଏ ଘରୁ ମୁହିଁ, ଆଉ ନକର କଜିଆ ।

୧୯୫୦୩. ନଈ ତଳେ ତଳେ, କିଏ ଯାଉଛ ହୋ,
ମୋଠାରୁ ବାରତା ନିଅ;
ପାନ ବୋଡ଼ିକର (= ପାଞ୍ଚଗଣ୍ଡା କଉଡ଼ିର ମୂଲ୍ୟ) ଗୁଆ ବୋଡ଼ିକର
ବାପାଙ୍କ ଛାମୁଁରେ ଦିଅ ।

୧୯୫୦୪. ନଈ ତଳେ ତଳେ, କିଏ ଯାଉଚି ଲୋ, ଗହମ ବୁଣା ହଉଚି;
ମୋ ଭାଇଙ୍କ ମୁଣ୍ଡକୁ, ଖରା କାଟୁଚି ଲୋ, ଚାନ୍ଦୁଆ ଟଣା ହୋଉଚି ।

୧୯୫୦୫. ନଈ ତଳେ ତଳେ ବାଳିଆ,
ପାଟିଲା ବାଳରେ ପୁଅ ହେଇଚି, ନାଁ ଦେଲା ଗୋପାଳିଆ ।

୧୯୫୦୬. ନଈ ତଳେ ତଳେ ଗଲି
କିଆ ଘୋଡ ଖଣ୍ଡ ବାଉଦ କଲି, ମୁଁ ସମୁଦି ଚିନ୍ତାରେ ମଲି ।

୧୯୫୦୭. ନଈ ତଳେ ତଳେ କିଏ ଯାଉଛି ଲୋ, ରଙ୍ଗକୁଗା ଫର ଫର,
ସେଥିରୁ ଜାନିଏ ଦିଅନ୍ତା ମତେ, ଯାଆନ୍ତି ଧବଳେଶ୍ୱର ।
ଧବଳେଶୋରଙ୍କ ଖିରୀ ଖେଚାଡି, କପିଳେଶ୍ୱରଙ୍କ ଛତ୍ର,
ଭାଇ ସାପଖିଆ କି ମାଡ ମାଇଲା, ଭାଙ୍ଗିଗଲା କମ ଖଡୁ ।
କମ ଖଡୁ ରୁଆ ରୁଆ,
ଆଉ କମ ଖଡୁ ଦେବି ଲୋ ମାଗୁଣି, ବାଳିବିଶୀ ତେଉଁରିଆ ।

୧୯୫୦୮. ନଈ ତଳିଆ ଡେଣ୍ଡା, ଛାଇ ତଳିଆ ଭେଣ୍ଡା,
ଛେନା ପଣାରେ ମରିଚଗୁଣ୍ଡା ।
(ଏ ଗୁଡିକ ଭଲ କାରଣ, ନଈ କୂଳ ଡେଣ୍ଡାରେ ପାଣି ଶୁଖେ ନାହିଁ । ଛାଇତଳିଆ ଟୋକା ଅର୍‌ଦୋଳିଆ ବଢ଼ିଥାଏ । ସୁନ୍ଦର ଦିଶେ ।)

୧୯୫୦୯. ନଈତୁଠିଆ ସାହାଡା (= ବଢ଼ି ମୂଳ ଖାଇ ଚେର ମାତ୍ର ରଖିଥାଏ । ଗଛ ବଢ଼ିପାରେ ନାହିଁ ।)
କୁଶଗୋଟିଆ ବ୍ରାହ୍ମଣ,
ଖାଳୋଇ ପିଠିଆ କେଉଟ (=କେଉଟ ପିଠିରେ ଖାଳେଇ ବାନ୍ଧି ମାଛ ଧରେ ।)
ଗାଁ ଗୋଠିଆ (= ଗାଁର ଗାଈ ଜଗେ) ଗଉଡ, (=ଗାଁର ସମସ୍ତଙ୍କର ଗାଈ ଜଗେ । ଡଣକର ଚାକର ନୁହେଁ ।)
ଏ ଚାରିଙ୍କର ନାହିଁ ବରକତ ( = ଉନ୍ନତି) ।

୧୯୫୧୦. ନଈ ନଦେଖୁ ଇଙ୍ଗଳା । (ବିପଦର କୌଣସି ସଙ୍କେତ ମିଳିବା ଆଗରୁ ଅସ୍ଥିରତା ପ୍ରକାଶ ।)

୧୯୫୧୧. ନଈ ପହଁରା ମାଛଧରା । (ଦୁଇଟି କାମ ଏକାବେଳେ କରିବା ।)

୧୯୫୧୨. ନଈପାଣି ନଈରେ ଗଲା, ପିତୃଲୋକଙ୍କ ସନ୍ତୋଷ ହେଲା ।
(ଶ୍ରାଦ୍ଧ ହେଲା, କିଛି ଖର୍ଚ୍ଚ କରାଗଲା ନାହିଁ । ନଦୀ ଜଳରେ ଆଞ୍ଜୁଳି ଦେଇ ପିତୃଲୋକଙ୍କ ସନ୍ତୋଷ ବିଧାନ କରିବା ହାସ୍ୟକର । )

୧୯୫୧୩. ନଈ ପାଣି ହୁକୁ ହୁକୁ, କିଏ ସେ ନେଲା ମୋ ଚମ୍ପା ଫୁଲକୁ,

ତଳମାଳ (= ସମୁଦ୍ର କୂଳ) ରାଇଜକୁ ।

୧୯୫୧୪. ନଈ ପାଣି ଗଲା ଧାରେ,
କଜ୍ଜଳ ଲାଞ୍ଛିତ ମଉଳି ଗଲା, ମୁହଁ ମାଡି ଶୋଇବାରେ ।

୧୯୫୧୫. ନଈ ପାଣି ଗଲା ନଈରେ, ସତେ କୂଅ ପାଣି ଖାଇବି ?
ଦୀପ ଜଳୁଥିବ, ପୁଅ ଖେଳୁଥିବ; ଉଗାରିଙ୍କ ଗୁଣ ଗାଇବି ?
(ବନ୍ଧ୍ୟା ଭବିଷ୍ୟତରେ ପୁତ୍ରବତୀ ହେବା ଆଶା ଓ ଆନନ୍ଦରେ ଅଭିଭୂତା ।)

୧୯୫୧୬. ନଈ ପାଣିଗଲା ନାହାକୁ, କିଏ ପଚାରୁଛି କାହାକୁ ?

୧୯୫୧୭. ନଈ ପାଣି କଳାଡୋଳା ଛାଣିଲି ପଣତେ
ଧନ ମନ କପଟେ ଲୋ କିଣିଲି ପଣତେ ।
(ଟୋକିଟୀ ନିଜ ପଣତରେ କପଟ କରି ଅନ୍ୟର ମନ କିଣି ପାରିଛି ବୋଲି ତାର ଦର୍ପ ।)

୧୯୫୧୮. ନଈ ପାଣିକି ଗୋଳା (=ଗୋଳିଆ) ? କୂଳ କନ୍ୟା କି କଳା ?
(ତୀର୍ଥ ଜଳର ଆବିଳତା ବା କୁଳକନ୍ୟାର କାଳିମା ଦୋଷ କେହି ବାଛି ବସେ ନାହିଁ ।)

୧୯୫୧୯. *ଏକାର୍ଥରେ* - ତୀର୍ଥ ପାଣି କି ଗୋଳିଆ ? କୁଳ କନ୍ୟା କି କାଳିଆ ?

୧୯୫୨୦. ନଈ ପାଣି ନଈକି ଯା, ମୋ ଲୁଗା ଶୁଖି ଯା ।
(ଲୁଗା ଶୁଖାଇବା ପଦ । ଖଣ୍ଡିକରୁ ବିଖଣ୍ଡି ଲୁଗା ନଥିବା ଲୋକ ଓଡ଼ିଶାରେ ଅନେକ । ଗାମୁଛା ଖଣ୍ଡେ ପିନ୍ଧି ଲୋକେ ଓଦା ଲୁଗାଖଣ୍ଡି ଶୁଖେଇ ଥାଆନ୍ତି ।)

୧୯୫୨୧. ନଈ ପାଣି ନଈକୁ ଯା, ମୋ ସିଲଟ ଶୁଖି ଯା ।
(ଚାହାଳୀର ପିଲାମାନେ ପାଣି ଶୁଖେଇବାକୁ ଏଭଳି କହିଥାଆନ୍ତି । )

୧୯୫୨୨. ନଈ ବଡ଼ିକି ଦିଅଁଙ୍କ ରାଣ ।
(ଜଗନ୍ନାଥଙ୍କ ଦ୍ୱାହି, ଲଗରାଜଙ୍କ ଦ୍ୱାହି ଦେଇ କାର୍ଯ୍ୟ କରାନ୍ତି । କିନ୍ତୁ ପ୍ରକୃତି ତାହା ମାନେ - ନାହିଁ । ଦିଅଁଙ୍କ ଦ୍ୱାହିଦେଲେ ବଢ଼ି ଛାଡି ଯାଏ ନାହିଁ । )

୧୯୫୨୩. ନଈ ବନ୍ଧେ କିଏ ଯାଉଛି,
କାନ୍ଧରେ ପଡିଛି ପାଟଲା ଗାମୁଛା, ସଜ ମଲ୍ଲୀଫୁଲ ବାସୁଛି ।

୧୯୫୨୪. ନଈ ବାଙ୍କ ଯେମନ୍ତ, କୁଆଁରି ବାଙ୍କ ତେମନ୍ତ ।
(ନଈବାଙ୍କକୁ ସଳଖିବା ସହଜ ନୁହେଁ । ସେହିପରି କୁଆଁରିର ଜିଦକୁ ହିଁ ରକ୍ଷା କରିବାକୁ ହୁଏ । ତାକୁ ଏଡିଯିବା, ତେଡିବା, ସଳଖିବା ସହଜ ନୁହେଁ । )

୧୯୫୨୫. ନଈ ବାଙ୍କ, ଜୋଇଁ ବାଙ୍କ ।
(ନଦୀ ବୋହିଲା ସମୟରେ ଯେପରି ସିଧା ନ ବୋହି ବାଙ୍କି ବାଙ୍କି ଯାଏ । ଜୋଇଁ ମଧ୍ୟ ସମାନ ନ୍ୟାୟରେ ଚାଲନ୍ତି ନାହିଁ । ବରଂ ସେ ଯାହା କହନ୍ତି ତାହା ହିଁ ନ୍ୟାୟ

ବୋଲି ଧରାଯାଏ । ଜୋଇଁ ଅନ୍ୟାୟରେ ଚାଲିଲେ ତାଙ୍କୁ ଶ୍ୱଶୁର କିଛି କହି ପାରନ୍ତି ନାହିଁ । କାରଣ ଜୋଇଁଙ୍କୁ କିଛି ପ୍ରତ୍ୟୁତ୍ତର ଦେଲେ ସେ ତାଙ୍କ ପତ୍ନୀକୁ ଗଞ୍ଜଣା ଦିଅନ୍ତି ଯିଏକି ଶ୍ୱଶୁରଙ୍କର ଝିଅ ।

*ତାତ୍ପର୍ଯ୍ୟ*- ଜୋଇଁ ଭଲ କହୁ ବା ମନ୍ଦ କହୁ ତାହା ଦେବବାକ୍ୟ ପରି ଗ୍ରହଣ କରିବାକୁ ହେବ ।)

୧୯୫୨୬. ନଈ ତଡେ ତଡେ ଖପରାକାତି । ବରଷି ଦେରେ ଇନ୍ଦ୍ରପତି ।

(ବରଷା କାଳରେ ନଦୀରେ ବନ୍ୟା ଆସେ, ସେହି ସମୟରେ ବାଳକ ମାନେ ତାହା ତୀରରେ ଖପରା ଖେଳା କରି ପାରନ୍ତି ନାହିଁ । ଏବେ ବହୁଦିନ ହେଲା ବରଷା ନଥିବାରୁ ନଦୀ ଶୁଖି ଯାଇଅଛି । ତାହା ତୀରରେ ବାଳକମାନେ ଖପରା ଖେଳା କରୁଅଛନ୍ତି । ବରଷାର ଅଭାବରୁ ବେଉଷଣ ଯାକ ପୋଡି ଯାଉଅଛି । ଚାଷୀମାନେ ଅତ୍ୟନ୍ତ କାତର ହୋଇ ଇନ୍ଦ୍ରଙ୍କୁ ବରଷା ସକାଶେ ସ୍ତୁତି କରୁଅଛନ୍ତି ।)

୧୯୫୨୭. ନଈର ପାଣି ନଈରେ ଯାଉ ।
ପିତୃ ଲୋକ ସନ୍ତୋଷ ହେଉ ।

(ନଦୀ ତୀରରେ ପିତୃତର୍ପଣ କଲେ, ତର୍ପଣୋଦକ ନଦୀରେ ଏକା ବହିଯାଏ ଏବଂ ପିତୃଲୋକ ତଦ୍ୱାରା ସନ୍ତୁଷ୍ଟ ହୁଅନ୍ତି । ମନୁଷ୍ୟ ଯେଉଁ ମାର୍ଗରେ ଧନ ଉପାର୍ଜନ କରୁ ତାହା ସତ୍କାର୍ଯ୍ୟରେ ବ୍ୟୟିତ ହେଲେ, ତାହାର କେବେ ଅମଙ୍ଗଳ ହୁଏ ନାହିଁ ।

*ତାତ୍ପର୍ଯ୍ୟ*- ମନୁଷ୍ୟ ଧନୋପାର୍ଜନ କଲେ ସତ୍କାର୍ଯ୍ୟରେ ବ୍ୟୟ କରିବା ଉଚିତ୍ ।)

୧୯୫୨୮. ନଈ ବାର ବାଙ୍କରେ ଯାଏ, ନାଉରିଆ ମୁଣ୍ଡ ଖାଏ,
ସାପ ବାର ବାଙ୍କରେ ଯାଏ, ସେଇ ଗାତକୁ ଯାଏ ।

(ବାର ବାଙ୍କରେ ଯିବା ସାପର ସ୍ୱାଭାବିକ ରୀତି । ଏଥିରେ ତାର କିଛି କ୍ଷତି ହୁଏ ନାହିଁ । କିନ୍ତୁ ନୌକା ବାର ବାଙ୍କରେ ଗଲେ ବୁଡି ଯାଇପାରେ । ଯାତ୍ରୀ ଓ ନାଉରୀ ମୃତ୍ୟୁ ମୁଖରେ ପଡ଼ନ୍ତି ।)

୧୯୫୨୯. ନଈ ମୁହଁରେ ବାଲି ବନ୍ଧ ଦେବା ।

(ବୃହତ୍ ବିପଦରେ ତୁଚ୍ଛ ପ୍ରତିକାର ବୃଥା ।)

୧୯୫୩୦. *ଏକାର୍ଥରେ* - ବାଆକୁ ବତା ।

୧୯୫୩୧. ନଈ ସୁଅକୁ ବାଲିବନ୍ଧ ପକାଇବା (= ନ୍ୟାୟ) ।

(ବିପଦରୁ ରକ୍ଷା ପାଇବା ଲାଗି କ୍ଷୀଣ ପ୍ରୟାସ ବୃଥା ।)

୧୯୫୩୨. ନଈରେ ଭଲିଣି ମଲା,
ନୂଆବୋହୂ ଭାଇ ବିଦେଶ ଗଲା, ବରଁଶ ଉଚ୍ଛନ୍ନ ହେଲା ।

(ପେଟ ଦାୟରେ ପ୍ରବାସ ଯିବାକୁ ବାଧ ହେଲା । ସଂସାର ସେହି ପ୍ରବାସୀ ପୁରୁଷଟି ଉପରେ ସମ୍ପୂର୍ଣ୍ଣ ନିର୍ଭର କରୁଥିଲା । ଏବେ ଅଚଳ ।)

୧୯୫୩୩. ନଈରେ କିଏ ଯାଉଛି,
ଷାଠିଏ ହାତ ଲୁଗା ଦିଶିଯାଉଛିଲୋ, ଛତାରୁ ଜଣାଯାଉଛି ।

୧୯୫୩୪. ନଈରେ କି'ମାଛ ମଲା ।
କେଉଟ ବାପୁଡା କି ଦୋଷ କଲା ଗୋ, ଠେଙ୍ଗା ମାଡଖାଇ ମଲା ।
(ନଦୀରେ ମାଛ ମାରିଥିବାର ସନ୍ଦେହରେ ନିର୍ଦ୍ଦୋଷୀ ଓ ଅଜ୍ଞ କେଉଟକୁ ଲୋକମାନେ ବୃଥାରେ ଠେଙ୍ଗାରେ ମାରିଲେ । ଚୋର ଚୋରୀ କରିନଥିଲେ ମଧ୍ୟ ଅନୁମାନ ବା ସନ୍ଦେହରେ ତାକୁ ଶିକ୍ଷା ଦିଆଗଲେ ଏହି ଉକ୍ତିଟି ପ୍ରଯୁଜ୍ୟ ।
*ତାତ୍ପର୍ଯ୍ୟ*- ଚୋର, ମିଥ୍ୟାବାଦୀ ଏବଂ ଅପରାଧି ବ୍ୟକ୍ତି, ଅପରାଧ କରିନଥିଲେ ମଧ୍ୟ ଲୋକେ ତାକୁ ସନ୍ଦେହରେ ଅପରାଧୀ କହନ୍ତି ।)

୧୯୫୩୫. ନଈରେ କେଣ୍ଡୁଆ ଗାତ,
କେଣ୍ଡୁଆ ବୋଲି ଧରି ପକାଇଲି, ନୂଆ ସମୁଦୁଣୀ ହାତ ।

୧୯୫୩୬. ନଈରେ ଡେଙ୍ଗା ପଣସ,
ଆସ ନୂଆବୋହୂ, ବେଦୀରେ ବସ, କାଲି ଯିବ ପରବାସ ।

୧୯୫୩୭. ନଈରେ ଖେଳେ ଶେଉଳ,
ଜାଆଁଳ ମନ୍ଦା (= ଛୋଟ ଛୋଟ ମାଛ ଛୁଆ) ଜଗି ବସିଛି,
ଦେଖୁନାହୁଁ କିଲୋ ବଉଳ ?
(ଛୋଟ ଛୋଟ ମାଛ ଛୁଆଙ୍କୁ ମାଆ ଶେଉଳ ମାଛ ପୋଖରୀରେ ଖେଳାଏ, ଆପଦବିପଦରେ ରକ୍ଷା କରେ । ସେହିପରି କାହାର ବହୁ ପିଲା ହେଲେ ସେମାନଙ୍କୁ ମଣିଷ କରିବା କଷ୍ଟସାଧ ।)

୧୯୫୩୮. ନଈରେ ଗଲାଟି ଖାଇ,(= ଆଖୁ ଖାଇ ବା କପା ଖାଇ)
ଖାଇ ମଙ୍ଗ ଧରି ପହରେ କାନ୍ଦଇ ଲୋ, ମତେ କିଏ ଦେବ ଭାଇ ?

୧୯୫୩୯. ନଈରେ ଗଲାଟି ନାଆ,
ନାଆ ମଙ୍ଗ ଧରି ପହରେ କାନ୍ଦଇ ଲୋ, ମତେ କିଏ ଦେବ ମାଆ ?

୧୯୫୪୦. ନଈରେ ପଡିଛି ଝାଟି,
କାଳିଆ ବଳଦ ବାଡିରେ ପଶି, ମାଡିଦେଲା ବାଡି ଚାଟି ।

୧୯୫୪୧. ନଈରେ ପଡିଲା ବେଲ,
ମୁଁ ତ ଖୋସିଛି ମନ୍ଦାର ଫୁଲ, ତତେ ଲାଗିଅଛି ଗେଲ ।

୧୯୫୪୨. ନଈରେ ପୋତିଲି ବାଲିକରା (= ବାଲିଜିରିଡ଼ା ମାଛ), ପିମ୍ପୁଡି ଖାଇଲେ ରସ,
କଲିକତା ବାଟ ଅଢେଇ କୋଶ ।

୧୯୫୪୩. ନଈରେ ପୋତିଲି ଗିଲ,
ନଈ ଚାରିପାଖେ ମନ୍ଦାର ଫୁଲ, ଧୋବଣୀ କି ନେଲା ଚିଲ !

୧୯୫୪୪. ନଈରେ ଫାଳିଆ ବତା,
ଭାଉଜ ଗୋଡରେ ସରୁ ଅଳତା, ଭାଇ ଯାଏ କଲିକତା ।

୧୯୫୪୫. ନଈରେ ବାଳିଆ ଚହଟିଲା,
କଜଳ ସିନ୍ଦୁର ନା ଆଲୋ ରାଣ୍ଡେ, ପୁଣି ଚାଖିଆ (= କାଳିଆ) ଲେଉଟିଲା ।
(ପୁରୀର ଚାଖି ଖୁଣ୍ଟିଆ ବା ଚନ୍ଦନ ହଜୁରୀ ମଲ୍ଲବାର, ଶ୍ରୀ ଜଗନ୍ନାଥଙ୍କ ଭକ୍ତ । ସେ ଝାନସୀରାଣୀ ଲକ୍ଷ୍ମୀବାଈଙ୍କର କୁଳ ପୁରୋହିତ ଥିଲେ । ସେ ସିପାହୀ ବିଦ୍ରୋହରେ ଯୋଗ ଦେଇଥିଲେ, ବିଦ୍ରୋହ ବିଫଳ ହେବା ପରେ ସେ ଆତ୍ମ ଗୋପନ କରିଥିଲେ । ସେ ମରି ଯାଇଥିବା କଥା ପ୍ରଚାର ହେବାରୁ ତାଙ୍କ ସ୍ତ୍ରୀ ବିଧବା ହୋଇଥିଲେ । କିନ୍ତୁ ଚାଖି ଖୁଣ୍ଟିଆ ପୁରୀକୁ ଫେରି ଆସି ଇଂରେଜ ସରକାରଙ୍କ ଦ୍ୱାରା କାରାରୁଦ୍ଧ ହୋଇଥିଲେ । ସେତେବେଳେ ତାଙ୍କ ବିଧବା ସ୍ତ୍ରୀ କାଚ ଖଡୁ ପିନ୍ଧି ପୁଣି ସଧବା ହୋଇଥିଲେ । ଏହି ପ୍ରବାଦଟି ଏହି କିମ୍ବଦନ୍ତୀ ଉପରେ ଆଧାରିତ ।)

୧୯୫୪୬. ନଈରେ ବାଳିଆ ମଲା,
ଉପର ବାଳିଆ ଚହଟ ଦେଲା, ହାଣ୍ଡିଖାଇ ବୁଡିମଲା ।
(ହାଣ୍ଡିରେ ଖାଏ ବୋଲି ଯେଉଁ ସ୍ତ୍ରୀର ବଦନାମ୍ ତାକୁ ବ୍ୟଙ୍ଗ କରାଯାଇଛି ।)

୧୯୫୪୭. ନଈରେ ବାଳିଆ ବାଡେଇ ହେଲା, ଶୁକ୍ର ମଦରଙ୍ଗା ଖାଇ,
କାହା ପାଇଁ ରାମା ବାଇ ହୋଇଲୁ, ଟୋକିଟା ସାଙ୍ଗରେ ତୁହି ?
(ନଈ କୂଳରେ ଶୁଖିଲା ମଦରଙ୍ଗା ଶାଗ ଖାଇବା ପାଇଁ ବାଳିଆ ମାଛ ବାଇ । ସେହିପରି ଯୁବତୀ ସହିତ ରାମା ମାତିଛି । )

୧୯୫୪୮. ନଈ ଶୁଖିଲେ କି କରିବ ନାଆ ? ଥନ ଶୁଖିଗଲେ କି କରିବ ମାଆ ?

୧୯୫୪୯. ନଈ ସେପାଖରେ ଦୂବ,
ତୁମ ଗ୍ରାମରୁ ମୁଁ ଯାଉଛି, ମୋତେ ଭାବୁଥିବ ।

୧୯୫୫୦. ନଈ ସେ ପାଖରେ ଗଞ୍ଜେଇ ଗଛ, ଫୁଲ ଫୁଟେ ରଣ ଝଣ ।
ଟିପେଇ ମୁଣ୍ଡରେ ଟିପି ଚନ୍ଦନ, ଦାଣ୍ଡେ ଦିଶେ ଶୋଭାବନ ।

୧୯୫୫୧. ନଈ ସେ ପାରିରେ କୁଟା ବଦାଡି (= କୁଟାଗଦା), ଝିଲିମିଲି ଦୁଶେ,
ମୋ ଭାଇ ଆଣିଛି ଟିକି କନିଆଁ, ମୋରି ପରି ଦୁଶେ ।

୧୯୫୫୨. ନଈରେ ହଜେଇ ପୋଖରୀରେ ଖୋଜିଲା ପରି - ନ୍ୟାୟ ।
(ସ୍ମୃତି କ୍ଷୀଣ । ଗୋଟିଏ ସ୍ଥାନରେ ହଜାଇ ଆଉ ଗୋଟିଏ ସ୍ଥାନରେ ଖୋଜିବା ।)

୧୯୫୫୩. ନଈରେ ହିରି ହିରାଇ,
ନିଦ ବେଳେ ମୋତେ ପାହାରେ ପିଟିଲା,
ଉଠିଲା ଚିରିଚିରାଇ ।

୧୯୫୫୪. ନଈ କୂଳିଆ କ୍ଷେତ, ପର ହସ୍ତକ ବିତ୍ତ,
ଅନ୍ତୁଡ଼ିଶାଳର ପୁତ, ଘଡଘଡିଆ ବରଷା,
ଏହାଙ୍କୁ ନକରିବ ଭରସା ।

୧୯୫୫୫. ନଈ ବଢିରେ ବେଙ୍ଗ ସାପ ମୁଣ୍ଡରେ ବସିବା । ନ୍ୟାୟ ।

୧୯୫୫୬. ନଈ ପାଣି ନଈରେ ଗଲା,
ପିତୃ ଲୋକ ସନ୍ତୋଷ ହେଲା ।

୧୯୫୫୭. ନଈ ବଢିକୁ କି ଦିଅଁଙ୍କ ରାଣ ।

୧୯୫୫୮. ନଇଁ ପଡିଥିବ ଯେତେବେଳେ,
ବିଧାଏ ମାରିବ ସେତେବେଳେ ।

୧୯୫୫୯. ନଈ କୂଳିଆ ତେଣ୍ଡା, ଶଗଡ ବୁହା ଭେଣ୍ଡା,
ଛେନା ପଣାକୁ ନବାତ ଗୁଣ୍ଡା । (ଏଗୁଡିକ ଭଲ)

୧୯୫୬୦. ନଈ ମାଛ ବାଡେଇ ହେଲା,
ଓଲେଇଙ୍କ ତୁଣ୍ଡରୁ ନାଳ ବୋହିଲା ।

୧୯୫୬୧. ନଈମାଛ ନଈରେ ଗଲା,
ପଣିଆଣୀ କହୁଣାଆ ଖାଇ ମଲା ।

୧୯୫୬୨. ନଈ ପାରିଆ ବନ୍ଧୁ ବିଦାକି ହେଲେ ବି କେଉଁ ଭରସା ।

୧୯୫୬୩. ନଈ କୂଳିଆ ବନ୍ଧୁ ।
(ନଈକୂଳିଆ ବନ୍ଧୁମାନେ ସେମାନଙ୍କ ଘରକୁ କୁଣିଆ ହୋଇ ଯାଇଥିବା ବ୍ୟକ୍ତିକୁ ତଙ୍ଗାରେ ବସାଇ ଦେଇ କହନ୍ତି ''ଆଜି ରହିଥାନ୍ତ ! ନୋହିଲେ ଗାଧୋଇ ପଡି ଯାଇଥାନ୍ତ'' । ଇତ୍ୟାଦି ଯେଉଁଠାରେ ପ୍ରଥମେ କୌଣସି କାର୍ଯ୍ୟ ବାରଣ କରି ବା ନକରି ଲୋକ ଚୁପ୍ ହୋଇ ରହେ, କିନ୍ତୁ କାର୍ଯ୍ୟ ...ଲୋକ କୌଣସି ଉପାୟରେ ତାହାର କାର୍ଯ୍ୟ କରି ନେଲେ, ଚୁପ୍ ରିହଥିବା ଲୋକଟି କହେ, ଏପରି କରିଥିଲେ ଭଲ ହୋଇଥାନ୍ତା ।)

୧୯୫୬୪. ନଈ ମୁହଁରେ ଡବାଲିବନ୍ଧ ।
(ଯେତେବେଳେ ଲୋକର କ୍ରୋଧର ବେଗ ବଢ଼ିଯାଇଥାଏ । ସେତେବେଳେ ତାହାକୁ ଉପଦେଶ ଦେବାକୁ ଗଲେ ଏହାର ପ୍ରୟୋଗ ।)

୧୯୫୬୫. ନଈରେ ଚକା ପତର
ବାପଘରେ ଝିଅ ଗେଲବସର,
ମାଗୁଛି ଛାଡ଼ ପତର

୧୯୫୬୬. ନଈରେ ବାଳିଆ ସୁଅ ଯାଉଛି,
ଗୁନେଇ ଚିଙ୍ଗୁଡ଼ି କିଏ ଖାଉଛି ।

୧୯୫୬୭. ନଈ ନଦେଖି ଲଙ୍ଗଳା,
ପାଣି ନଦେଖି ହଗୁରା ।

୧୯୫୬୮. ନଈକି ମାଠିଆ ଗଡ଼ଗଲା,
ପଇମରୁ ପିଠା ପୋଡ଼ିଗଲା ।
ଦିଅର ଭାଉଜ କଥାବାରତା,
ସାନବୋହୂ କଥା ସରିଗଲା ।

୧୯୫୬୯. ନଈ ଶୁଖିଲେ କି କରିବ ନାଆ,
ଥନ ଶୁଖିଲେ କି କରିବ ମାଆ

୧୯୫୭୦. ନଈପାଣି ଗଲା ଧାରେ,
ଆଖିରୁ କଜଳ ଗଲା ଧୋଇରେ ଲୋ
ମୁହଁ ମାଡ଼ି ଶୋଇବାରେ ।

୧୯୫୭୧. ନଈପାଣି ଯାଉନାହିଁ,
କି ଯୋଗେ ପଡ଼ିଛି ଗଙ୍ଗାବାରୁଣୀ ଲୋ,
ଘରେ ମନ ରହୁନାହିଁ ।

୧୯୫୭୨. ନଈରେ କୋଚିଆ ଗାତ,
କୋଚିଆ ବୋଲି ମୁଁ ଧରି ପକାଇଲି
ହୁଆ ସମୁଦ୍ରୁଣୀ ହାତ ।

୧୯୫୭୩. ନଈ କତା ପଙ୍କ ପାଣି
ମନ ହକ ହକ ଖଟା ତୋରାଣିକି,
ପିଇଥିଲେ ଏକା ଜାଣି ।

୧୯୫୭୪. ନଈରେ କୁମ୍ଭୀର ଗାତ,
ନୂଆ ବୋହୂ ଦେଲା ପଖାଳ, ଭାତ ଲୋ,
ଧରି ନେଲା ସନ୍ନିପାତ ।

୧୯୫୭୫. ନଈରେ ବାଲିଆ ମଲା
କଛା ହଗୁରିକୁ କୁମ୍ଭୀର ନେଲା ଲୋ,
ଗାଆଁ ଯାକ ଦୂରି ହେଲା ।

୧୯୫୭୬. ନଈ ତଳେ ଅଙ୍କରାନ୍ତି,
ପେଟ ପୂରା କରି ଥରେ ଖାଆନ୍ତି,
କାଲି ହବ ସଙ୍କରାନ୍ତି ।

୧୯୫୭୭. ନଈ ଶୁଆର ଉତୁରା ଆଇଷ (=ପରମାୟୁ),
ପାଟି କଥା ପାଟିରେ ଅଛି, ଆସି ପହଞ୍ଚିଲା,
ଉଠେଇଲା ମୋ ଚଉଦ ପୁରୁଷ ବାଇଶ (ଅଶ୍ଳୀଳ ଗାଳି ) ।

୧୯୫୭୮. ନଈ ତଳେ ଗଲା ଓଧ,
ଗୋରୀ ଶୋଇଥିଲା ଗହମ ନିଦ,
ଚୋର କାଟି ନେଲା ବିଦ ।

୧୯୫୭୯. ନଈ ବଢ଼ି କି ଦିଅଙ୍କ ରାଣ ମାନିବ ?

୧୯୫୮୦. ନଈ ଭିତରେ ଯାଉଥିଲି ମୁହିଁ,
ମାଡିଲି ମୁଣ୍ଡା ଗାଗର,
ବୋଉକୁ କହିବ କାନ୍ଦିବେ ନାହିଁ,
ଛୋଇଁ ତ ଗୁଣ ସାଗର ।

୧୯୫୮୧. ନଈ ନାଗ ନାରୀ ନାଆ
ଏ ଚାରିକି ପରତେ ନ ଯା' ।

୧୯୫୮୨. ନଈ, ଓଡଣ, ପିମ୍ପୁଡି, ମୂଷା
ଏ ଚାରି ଛାଡି ଭାଙ୍ଗନ୍ତି ବସା ।

୧୯୫୮୩. ନଣନ୍ଦ ଅଲିରେ କେବେ ନ ଚଳିବୁ,
ଅଧିକେ କରିବୁ ସ୍ନେହ ।

୧୯୫୮୪. ନର ଶରୀର ଜରା ବ୍ୟାଧିର ଘର,
ଯାହା ଜାଳାରେ ସଦା ଜଳେ ଅନ୍ତର । (ନନ୍ଦକିଶୋର)

୧୯୫୮୫. ନନ୍ଦ ନନ୍ଦନ ଗୋପୀନାଥ,
ନିସ୍ତରି ଯିବା ନରେ ଚିନ୍ତ ।

୧୯୫୮୬. ନଟ ଗୋପାଳିର ଗଣ୍ଡାଇ ଆପ୍ଯ,
ଦିନେ ନୋହିଲେ ଯେ ନ ଚଳେ ଟାପୁ ।

୧୯୫୮୭. ନ ଦୁଃଖ ପଞ୍ଚଭିଃ ସହା ।
(ନ୍ୟାୟରେ ଦୁଃଖଟା ଦୁଃଖ ବୋଲି ଲାଗେନାହିଁ)

୧୯୫୮୮. ନରକେ ପଡିବ ନିର୍ଭରେ,
ଅଜାତି ହୋଇବ ଜାତିରେ ।

୧୯୫୮୯. ନଉକା ନାୟିକା ହେଲେ ବୁଡିବ ଭେଳା ।

୧୯୫୯୦. ନଡ଼ପ (=ତେଲି) ଗାଣ୍ଡିରେ ବାଣି ।
ହୁଳହୁଳି ଦେଲେ ମହାନ୍ତି ଆଣିଲୋ, ନାଚିଲେ ମୁଣ୍ଡି ତାଷୁଣି ।

୧୯୫୯୧. ନନାଙ୍କର ପାଠେ ତ ନାନୀଙ୍କର ପାଠେ ।

୧୯୫୯୨. ନନ୍ଦ ଘରେ କନ୍ଦ ପୂଜା,
ନନ୍ଦ ଖାଇଲେ କଦଳୀ ଭଜା । (ଶିଶୁ ଗୀତ)

୧୯୫୯୩. ନଜାଣି ଚଷିଲି ପଧାନ ହେତା,
ଲାଭ ଯାକ ନେଇଗଲେ ଭୋକତା ।

୧୯୫୯୪. ନ ଜାଣି ଗୋଦରୀ କରିଛି ଓଷା,
ଘରେ ଖାଉଥାଏ ଟାଙ୍ଗିଆ ପଶା ।

୧୯୫୯୫. ନଉନୁଆଣି, କଦଳୀ ଫେଣୀ, ମୋ ନଣନ୍ଦର ଓଷା,
ଟାକୁଆ ଗାଲକୁ, ବନ ହଳଦୀ, ଖୋସି ଦେଇଥାଇ ଖୋସା ।
(ରୂପହୀନା ନଣନ୍ଦର ତଥାକଥିତ ଓଷା, ବ୍ରତ ଓ ବେଶଭୂଷଣ ପ୍ରତି ତା ଭାଉଜର କଟାକ୍ଷ ।)

୧୯୫୯୬. ନଉକା ଠାରୁ ବଳି ଯାନ ନାହିଁ,
ଅନ୍ନ ଦାନ ଠାରୁ ଦାନ ନାହିଁ,
ଛାଚି ପାନ ଠାରୁ ବଳି ପାନ ନାହିଁ,
କୁକୁର କାନ ଠାରୁ ବଳି କାନ ନାହିଁ,
ଘଇତା ଆନ ଠାରୁ ବଳି ଆନ (=ମର୍ଯ୍ୟାଦା) ନାହିଁ,
ଚମ୍ପାଧାନ ଠାରୁ ବଳି ଧାନ ନାହିଁ,
ପୁରୁଷୋତ୍ତମ ଠାରୁ ବଳି ଥାନ ନାହିଁ ।

୧୯୫୯୭. ନକ ଠକ ବାହାପିଆ, ନିରି ମାଇଲରେ ପବନପିଆ ।
(ନିର୍ମାଲ୍ୟ କଣିକାଏ ଖାଇ ପବନ ପିଇ ଜୀବନ ଧାରଣ କରିଛି ବୋଲି ବାହାପିଆ ଲୋକକୁ ବୁଝାଏ । କପଟାଚାରୀ ବ୍ୟକ୍ତିଙ୍କ ପ୍ରତି କଟାକ୍ଷ । )

୧୯୫୯୮. ନକ ଠକ ବାହାପିଆକୁ, ପୁରାଣ ପଣ୍ଡା ସରି ନୁହେଁ ।
(ପୁରାଣ ପଣ୍ଡା ବହୁ ଶାସ୍ତ୍ର ପୁରାଣ ଜାଣିଥିଲେ ବି ବାହାପିଆ କଥାରେ ହାରେ କାରଣ ବାହାପିଆ ଆକାଶରୁ ତୋଳିଆଣି କଥା କହେ ।)

୧୯୫୯୯. ନକଲରେ ଅକଲ କି ?
(କପି କରୁଥିବା ଲୋକର କୌଣସି ବୁଦ୍ଧି ବା ମୌଳିକତା ପ୍ରକାଶ ପାଏ ନାହିଁ ।)

୧୯୬୦୦. ନକଲରେ ଅକଲ ନାହିଁ ।

୧୯୬୦୧. ନକଲିଆ ଭଉଣୀ ଜୋଇଁଙ୍କୁ, ନଇତୁଣ୍ଡୀ ଶାଳୀ ।

୧୯୬୦୨. ନ କାଞ୍ଜିକା କଦା ଗ୍ରାହ୍ୟା, ସଫଳା କାଞ୍ଜିକା ଗ୍ରାହ୍ୟା,
ଇତି ମାତୃ ବଚନାତ୍ ।
(ସ୍ମୃତିକାର ନୃସିଂହ ବାଜପେୟୀଙ୍କୁ କାଞ୍ଜି ଭଲ ଲାଗେ ନାହିଁ ବୋଲି ସେ ସ୍ମୃତିରେ କାଞ୍ଜି ଭୋଜନ ନିଷେଧ କଲେ । ଏଥିରେ ମା' ଦୁଃଖିତ ହେବାରୁ ମୂଳା ପ୍ରଭୃତି ପରିବା ପଡିଲେ କାଞ୍ଜି ଖାଇବାରେ ଦୋଷ ନାହିଁ ବୋଲି ଲେଖିଲେ । ସ୍ମୃତିଶାସ୍ତ୍ରକାରଙ୍କ ପ୍ରତି କଟାକ୍ଷ ।)

୧୯୬୦୩. ନ କୁପଚ୍ୟେ ହରିତକୀ ।
(ହରିଡା ଖାଇଲେ ମଣିଷର କିଛି ଅନିଷ୍ଟ ହୁଏ ନାହିଁ । )

୧୯୬୦୪. ନକଡ଼ା ଛକଡ଼ା ତିନିବାର କଡ଼ା । ଦି'ଅଣ୍ଡା ଦି'କଡ଼ା କେତେ ?
(ପୂର୍ବକାଳର ମାନସାଙ୍କ । ଉତ୍ତର ୧୦ ଗଣ୍ଡା ।)

୧୯୬୦୫. ବାମେ ଶବ ଶିବା କୁମ୍ଭଃ, ଦକ୍ଷିଣେ ଗୋ ମୃଗ ଦ୍ୱିଜାଃ,
ନକୁଳଃ ସର୍ବ କଲ୍ୟାଣୀ, ଅହି ସର୍ବତ୍ର ବର୍ଧତେ ।
(ଯାତ୍ରାରମ୍ଭରେ ବାଁପଟେ ମୃଦାର, ବିଲୁଆ, ପାଣିଭରା ମାଠିଆ ଓ ଡାହାଣରେ ଗୋରୁ, ମୃଗ, ସ୍ତ୍ରୀ, ବ୍ରାହ୍ମଣ ଦେଖିଲେ ଶୁଭ ହୁଏ । ନେଉଳ ଯେଉଁଠାରେ ଦେଖିଲେ ବି ଶୁଭ । ସାପ ଦେଖିବା ଅଶୁଭ । )

୧୯୬୦୬. ନଖବାଳ ରଖି ଭାଲୁଏ, କେତେ ଯୋଗୀ ହେଲେଣି,
ପାଣିରେ ଥାଇଣ ମାଛ ତ, କେତେ ସ୍ୱର୍ଗ ଗଲେଣି ।
(ଜଟା ଦାଢ଼ି ନଖ ବଢେଇଥିବା ଓ ସ୍ୱର୍ଗ କାମନା କରି ତୀର୍ଥ ଜଳରେ ସ୍ନାନ କରୁଥିବା ବାବାଜୀଙ୍କ ପ୍ରତି କଟାକ୍ଷ । )

୧୯୬୦୭. ନଖ ମାଜିବି, ବେଣୀ ସାଜିବି, ନିର୍ମଳ ହେବି,
ଦିଅର ସାଙ୍ଗରେ କଟକ ଯିବି ।

୧୯୬୦୮. ନଖରେ ଛିଡିବା କଥା କୁରାଡି ପର୍ଯ୍ୟନ୍ତ କିଆଁ ଯିବ ?

୧୯୬୦୯. *ଏକାର୍ଥରେ*- ସୂତା ମାଜିଲେ ସରୁ, କଥା ମାଜିଲେ ଗରୁ ।

୧୯୬୧୦. ନଖରେ ନଖ ଘଷିଲେ କଳି ହୁଏ । (ଲୋକବିଶ୍ବାସ ତଥା ଅନ୍ଧବିଶ୍ବାସ)

୧୯୬୧୧. ନଖରେ ଛିଣ୍ଡିବା କଥାକୁ, କୁରାଢି ଲୋଡା ହେଉଛି ।

୧୯୬୧୨. ନଖ ବଢିଲେ ବିରାଡି ହେଁସ ଛିଣ୍ଡାଏ ।

୧୯୬୧୩. ନ ଖାଇବୁ ବାବୁ ତୁରେ ସଭାରେ କାକରା,
ଲକ୍ଷ ଲକ୍ଷ ଶଳା ଥାଇ ମାରିବେ ଠାକରା,
ନ ଖାଇବୁରେ ବାବୁ ତୁରେ କଳଙ୍କା ଗୁଆ,
ପୁରୁଷପଣରେ ହେବୁ ମାଇପୀଚାଟୁଆ ,
ନ ଖାଇବୁରେ ବାବୁ ତୁ ହୋମତଳ ଘିଅ,
ଜାଣି ଶୁଣି ବିଭା ହେବୁ ଜନକର ଝିଅ,
ନ ଖାଇବୁ ବାବୁ ତୁରେ ସାତଦିନେ ମଣ୍ଡା,
ଗୁହାଳ କଣରେ ତଳେ କରିଦେଲେ ଗୁଣ୍ଡା ।
(ଭୋଜନ ସଭାରେ କାକରା ପିଠା, ସାତ ମଙ୍ଗଳା ପରେ ଶଶୁର ଘରେ ହେଉଥିବା ମଣ୍ଡାପିଠା, ହୋମରୁ ବଳିଥିବା ଘିଅ, ପାନରେ ବୋହୂର କଳଙ୍କା ଗୁଆ, ଲୋକ ଚଳଣି ଦୃଷ୍ଟିରୁ ନିଷିଦ୍ଧ । ସେ ସବୁ ନ ଖାଇବା ଲାଗି ମାଆ ପୁଅକୁ ବିବାହ ଆଗରୁ ଉପଦେଶ ଦେଉଛନ୍ତି ।)

୧୯୬୧୪. ନ ଖାଇଲେ କଅଣ ମରଦ ?
(ଚଉକସ ନ ଖାଇଲେ ହାତଭଙ୍ଗା କାମ ଯୁବକ ଠାରୁ କିପରି ଆଶା କରାଯିବ ?)

୧୯୬୧୫. ନ ଖା' ନ ପି' ନ ଡର ।
(ଯିଏ କାହାଠାରୁ କିଛି ଖାଏନା, କାହାଠାରୁ କିଛି ଧାରେନା, ସିଏ କାହାକୁ ଡରେ ନାହିଁ ।)

୧୯୬୧୬. ନ ଖାଇ ଛାଡିଲି ଦାନର (= ପତ୍ର ତିଆରି ପାତ) ଭାତ,
ତମରି ଉପରେ ହେତ ।

୧୯୬୧୭. ନଖାଇ ନପିଇ କଣ୍ଟିଅ ଚୋର ।

୧୯୬୧୮. ନଗରଗଡ ଛ ବାକୁଙ୍ଗା, ମନ କଲେ କଦାଣିଆ ଉଠେ ।
(ବିଲରେ ଛ ଓଡ ବାକୁଙ୍ଗା, ନ ଓଡ ଘରଗଡ ଘାସ ଉଠେ । ପୁଣି କଦାଣିଆ ଘାସ ଉଠିପାରେ ।)

୧୯୬୧୯. ନଗଲା ଜୀବନ ଯାଉନି,
କୁଣ୍ଡା ପିଠା ଖଣ୍ଡେ ଖାଉନି ।
(କାଣ୍ଡିଆ କୁଣ୍ଡାକୁ ପିଠା କରି ଖାଇ ଏତେ ଦୁଃଖରେ ବଞ୍ଚିବା ଅପେକ୍ଷା ମରିବା ଭଲ ।)

୧୯୬୨୦. ନଗଲା ଜୀବନ ହଟହଟା,
ଚାକୁଣ୍ଡା ଶାଗରେ ମେଥି ଜରଜର,
ତର୍ହିରେ ମରିଚ ଗୋଟା ଗୋଟା ।
(ଦୁଃଖ ଜୀବନ ଠାରୁ ମରିବା ଭଲ ।)

୧୯୬୨୧. ନଗଲା ଗାଆଁର ବାଟ କିଏ ?
ନା, ଏଇ ବାଟେ ବାଟେ ଯା !

୧୯୬୨୨. ନଗ୍ନ କ୍ଷପଣକ (= ବୌଦ୍ଧ ସନ୍ନ୍ୟାସୀ) ଦେଶେ, ରଜକଃ କିଂ କରିଷ୍ୟତି ?
(ଯେଉଁ ଦେଶରେ ସମସ୍ତେ ଲଙ୍ଗଳା ସେଠି ଧୋବାର କି ପ୍ରୟୋଜନ ?)

୧୯୬୨୩. ଲଙ୍ଗଳାକୁ ବାଟ ଛାଡ ।
(ଲଙ୍ଗଳା ଚାରି ଦଉଡି କଟା । ତାକୁ ବାଟ ନ ଛାଡିଲେ ଅନିଷ୍ଟ ଘଟିବାର ସମ୍ଭାବନା ।)

୧୯୬୨୪. ନ ଚ ଦୈବାତ୍ ପରଂ ବଳଂ । (ଦୈବ୍ୟ ବଳରୁ ବଳ ନାହିଁ ।)

୧୯୬୨୫. ନ ଚ ବିଦ୍ୟାସମୋ ବନ୍ଧୁଃ,ନ ଚ ବ୍ୟାଧିସମୋ ରିପୁଃ ।
(ଜଗତରେ ବିଦ୍ୟାଠାରୁ ବଡ ବନ୍ଧୁ ଓ ରୋଗଠାରୁ ବଡ ଶତ୍ରୁ ଆଉ ନାହିଁ ।)

୧୯୬୨୬. ନ ଚଳନ୍ତି ଖଳୁ ବାକ୍ୟଂ ସଜ୍ଜନାନାଂ କଦାଚିତ୍ ।
(ଭଲ ଲୋକର ଜବାବ ଟଳେ ନାହିଁ ।)

୧୯୬୨୭. ନ ଚାଳିବ କଳାସର୍ପ ନ ଚାଳିବ ଯତି,
ନ ଚାଳିବ ମଳଭାଣ୍ଡ ନ ଚାଳିବ ସତୀ ।

୧୯୬୨୮. ନ' ଛ' ତେର, ଯେବେ ଯିବ ଘର,
ତେବେ କରିବ ଜର ।
(କୌଣସି ସ୍ଥାନକୁ ଯିବାର ଛ'ଦିନ , ନ'ଦିନ ଓ ତେରଦିନ ପରେ ଘରକୁ ଫେରିଲେ ଜର ହୁଏ । ଲୋକବିଶ୍ୱାସ ତଥା ଅନ୍ଧବିଶ୍ୱାସ ।)

୧୯୬୨୯. ନଛୀ, ସବୁ ଗୁଣ ଅଛି ।

୧୯୬୩୦. ନଜାଣି ଚଷିଲି ପଧାନ ହେତା (= ଭାଗିରି ଜମି),
ଆୟ ବ୍ୟୟ ଯାକ ନେଲେ ଭୋକତା (= ଜମି ମାଲିକ),
ଆଉ ବଞ୍ଚିଥିଲା ପାଳ ଭର୍ଣେ,

ତାହା ନେଇଗଲା ଗଡ କରଣେ ।
(ମୂଲିଆର ଦୁଃଖ । ହୋତା ଜମିର ସମସ୍ତ ଆୟ ଜମି ମାଲିକ ବା ଗଡକରଣେ ନିଅନ୍ତି । ସେ କିଛି ପାଏ ନାହିଁ । )

୧୯୬୩୧. ନ ଜାଣିଲା ଲୋକ ଅନ୍ଧ ।

୧୯୬୩୨. ନ ଜାଣି ଯେ କଥା କହେ, ତା' ମୁଣ୍ଡରେ ଟାକର,
ନଦେଖି ଯେ ସାକ୍ଷୀ ହୁଏ, ତା' ମୁଣ୍ଡରେ ଟାକର,
ପଇସା ନଥାଇ ଯେ ମୂଲାଉଥାଏ, ତା' ମୁଣ୍ଡରେ ଟାକର,
ପରନାରୀକୁ ଯେ ନିଠେଇ ଚାହେଁ, ତା' ମୁଣ୍ଡରେ ଟାକର ।

୧୯୬୩୩. ନଟ ଗୋପାଳିର ଗଞ୍ଜେଇ ଆୟୁ,
ଦିନେ ନୋହିଲେ ନଟଙ୍କେ ଟାପୁ (= ପାଦ) ।

୧୯୬୩୪. ନଟାରେ ନଟା, ଜଜାଙ୍ଗ (= ବଣଗଛ) ଚଢେ କଳମ ଲଟା,
ହାତ ଦେଲେ ସେତ ଝଡି ପଡିବ,
ତୁଚ ବେଲୁ ଭାଉରି, ମୋ ଦିନ କିଏ ସାରିବ ?
ତୋ ଦିନ ମୁଇଁ ସାରିବି ଲୋ ଗୋରୀ, ତୋ ଦିନ ମୁଇଁ ସାରିବି ,
ଓଦା ଲୁଗାରେ ପାଉଁଶ ପକାଇ, ଲୁଣ ପରକାରେ ଛାରିବି ।

୧୯୬୩୫. ନଡାଗଦା ଦେଲି ଚେକି,
ଭଲାରେ ବାଣୁଆ ମାଇଲା ବାଣ,
ନାକ ଫୁଲଗୁଣା ଦେଖି ।

୧୯୬୩୬. ନଡିଆ କାଟିଲି ଚକି ଚକି କରି,
ଫିକିଦେଲି ଦୁଇ ବାହାକୁ,
ମାରବାଡ ନେଇ ମିଠାଇ ଖାଇ,
ଦାଏକ ( = ଛିଗୁଲା ଗୀତ) ମାରଲୁ କାହାକୁ ?

୧୯୬୩୭. ନଡିଆକୁ, ନ ଡିଆଁ (= ଅଠର ହାତ) ଛଡା ଇଗା ତାକୁ ।
(ଗୋଟିଏ ନଡିଆ ଗଛରୁ ଅନ୍ୟକୁ ଅଠର ହାତ ଛଡାରେ ଲଗାଇବାକୁ ହୁଏ ।)

୧୯୬୩୮. ନଡିଆ ଗଛରେ ଚଅଁର ଡେରି ଦେଇଛି,
ବୁଢାବର ବୋଲି ବାଛିବ ନାହିଁ, ଡେଙ୍ଗରେ ବଡି ଯାଇଛି ।
(ବୁଢାବର ପ୍ରତି ବ୍ୟଙ୍ଗ ।)

୧୯୬୩୯. ନଡିଆ ଗଛର ଚଅଁର,

ଶାଶୁଙ୍କ ପେଟରେ ଗୋଟିଏ ନାହିଁ, ଗାଁ ଯାକ ମୋ ଦିଅର ।
(ଗାଁର ବହୁ ଯୁବକଙ୍କୁ ଦିଅର ଲେଖା କରୁଥିବା ସ୍ତ୍ରୀ ପ୍ରତି ବ୍ୟଙ୍ଗ ।)

୧୯୬୪୦. ନ୍ଡିଆ ଗଛର ଚଅଁର,
ବେଇଗି ବେଇଗି ( = ଶୀଘ୍ର) ଚୋରାଣି ବାଡ,
ନଇଲେ କରିବି ଠେଙ୍ଗା ପାହାର ।
(କଥା କଥାରେ ଠେଙ୍ଗା ଉଠାଉଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୬୪୧. ନଡିଆ ଗଛର ଗଜା ଚଅଁର, ପବନରେ ଫରଫର,
କାହାକୁ ଜବାବ ଦେଇନ୍ତୁ ଗୋରୀ, ଯିବାପାଇଁ ତରତର ?
(ଯୁବତୀର ତର ତର ହେବା ପ୍ରତି ବ୍ୟଙ୍ଗ ।)

୧୯୬୪୨. ନଡିଆ ଗଛର ଛାଇ,
ମାଆ ପେଟର ଚ ଗୋଟିଏ ନାହିଁ, ଗାଆଁ ଯାକ ମୋର ଭାଇ ।
(ନିଜ ଭାଇ ନାହିଁ । ଗାଆଁ ଲୋକମାନଙ୍କୁ ଭାଇ ବୋଲି ଡାକୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୬୪୩. ନଡିଆ ଗଛ ବାଆ କରୁଛି, ବାଟକୁ ପଡିଛି ଛାଇ,
ବଣି ଚଢେଇର ପୁଅ ହୋଇଛି, କୁଳ ଉଦ୍ଧାରିବା ପାଇଁ ।
(ଦୁର୍ବଳ ପୁତ୍ର କୁଳ ଉଦ୍ଧାର କରିବାର ବିଶ୍ବାସ ନଥିବାରୁ କଟାକ୍ଷ କରାଯାଇଛି ।)

୧୯୬୪୪. ନଡିଆ ଗଛରେ ନଡିଆ ନାହିଁ,ଧଡିଆ ବସିଛି ଗୋଡ ଲମ୍ବାଇ ।
(ବୃଥା ଆଶାରେ ବସିଥିବା କର୍ମକୋଢି ପ୍ରତି ବ୍ୟଙ୍ଗ ।)

୧୯୬୪୫. ନଡିଆ ଗଛରେ ଛାଳିଲି ବତୀ,
ଧନ ଯାହା ଘରେ ଚାକିରୀ କରନ୍ତି,
ମୁଁ ତାହା ଘରେ ପାଣି ପୂରାନ୍ତି । (ପ୍ରେମିକାର ପ୍ରେମୋକ୍ତି ।)

୧୯୬୪୬. ନଡିଆ ପଡି ପଡି ଗଲା ବାଲିକି,
ସବୁ ଚୂଡା, ମାଠିଆ ଗୁଡ; ରଖି ଦେଇଥା କାଲିକି ।

୧୯୬୪୭. ନଡିଆ ଭାଙ୍ଗିଲି ପଡିଆରେ,
ପୁଅ ବାହାକଲି ଝିଅ ବାହାକଲି,
ପଡିଗଲି ବଡ ଅଡୁଆରେ । (ଦୁରବସ୍ଥାର କାରୁଣ୍ୟ ।)

୧୯୬୪୮. ନଡିଆ ଭାଙ୍ଗିଲି ତାଡିଆକୁ,
ଘରେ ଛନ ଛନ ବାହାରେ ମନ,
କେମନ୍ତ ଦେଖିବି କାଳିଆକୁ ? (ପ୍ରେମିକାର ମନୋଭାବ ପ୍ରକାଶ ।)

୧୯୬୪୯. ନଡିଆ ଭିତରକୁ କୋଉ ଶିରାରେ ପାଣି ପଶୁଛି, ତାହା ଜାଣିବ କିଏ?
(ଲୋକ ଚରିତ୍ର ବୁଝିବା କଷ୍ଟକର ।)

୧୯୬୫୦. ନଡିଆ ଲଗେଇ ବଙ୍ଗଳା ଯା, ଗୁଆ ଲଗେଇ ଘରେ ବସିଥା ।
(ବିନା ଯତ୍ନରେ ନଡିଆ ଗଛ ବଢେ, କିନ୍ତୁ ତୁଆଡ ନ କଲେ ଗୁଆଗଛ ମରିଯାଏ ।)

୧୯୬୫୧. ନଡିଆ, କଇଁଥ, ବେଲ, ମୂଳରେ ଶୋଇଲେ ଛାଡଭ ଗେଇ ।

୧୯୬୫୨. ନଡିଆ ଯେଉଁଥିରେ ପକାଅ ବଢିଆ ।

୧୯୬୫୩. ନ ତେଇଁବ କୂଅ, ନ ଖୋଳିବ କୂଅ,
ନ ଖାଇବ ସଞ୍ଜେ, ନ ଶୋଇବ ଗଞ୍ଜେ ।

୧୯୬୫୪. ନଣନ୍ଦ ନାରୀ, ଚଉ ପାହାରୀ,
ବସିଥାଏ ପାଆ ଭାଗେ ।
ଟିକିଏ ଟିକିଏ, ପୋଡି ଦେଉଥାଏ,
ଭାଇ ଘଇତାଙ୍କ ଆଗେ ।
(ନଣନ୍ଦର ଚୁଗୁଲିପଣ ପ୍ରତି ବ୍ୟଙ୍ଗ । ସେ ଭାଉଜର ପ୍ରତି ପଦକ୍ଷେପକୁ ଉଣ୍ଢୁଥାଏ । ଭାଉଜ ନାଁରେ ଲଥାଡୁ ସିଆଡୁ କହେ ।)

୧୯୬୫୫. ନଣନ୍ଦ ହୋଇଛି ଢଗୁଆଳି,
ଦୁଆର ମୁହଁରେ ଭିଖାରୀ ଡାକିଲେ,
ହୋଇଯାଉଥାଏ ଆଗୁଆଳୀ ।

୧୯୬୫୬. ନଣ୍ଡା ମୁଣ୍ଡରେ ଠେଙ୍ଗା ।
(ଦରିଦ୍ର ବହୁତ କ୍ଷତିଗ୍ରସ୍ତ ହେଲେ ତା ପ୍ରତି ଏହି ବ୍ୟଙ୍ଗ ପ୍ରଯୁକ୍ତ ହୁଏ ।)

୧୯୬୫୭. *ଏକାର୍ଥରେ* - ଟେଙ୍ଗା ମୁଣ୍ଡରେ ଠେଙ୍ଗା ।

୧୯୬୫୮. ନ ଚିନ୍ତିଲେ ଓଡିଆ ଘର ଛାଉଣି କରନ୍ତି ନାହିଁ ।
(ଆପଦ ପଡିଲେ ଓଡିଆ ପ୍ରତିକାର ଚିନ୍ତା କରିଥାଏ ।)

୧୯୬୫୯. ନ ତୈଳଂ ସର୍ଷପଂ ତୈଳଂ, ତୈଳଂ ଯଦ୍ ପୁଷ୍ପ ବାସିତମ୍ ।
(ସୋରିଷ ତେଲ ଓ ବାସନା ତେଲ ଅମାବାସ୍ୟା ସଂକ୍ରାନ୍ତି ଆଦି ତିଥିରେ ଲଗାଇବାକୁ ବାରଣ ନାହିଁ ।)

୧୯୬୬୦. ନଥିଲା କରି ନ କରିବ ହରି,
ନଥିଲା ଅଟେ ସବୁରି ବଇରି ।
(ନଥିଲାବାଲାକୁ କେହି ଭଲ ପାଆନ୍ତି ନାହିଁ, ଶତ୍ରୁ ପରି ବ୍ୟବହାର କରନ୍ତି ।)

୧୯୬୬୧. ନଥିଲାକୁ ଭଉଣୀ ଜୋଇଁ ଘରଡା,
ପେଲାପେଲି କରି ଦିନ ନଉଥା ।
(ଭଉଣୀ ଜୋଇଁ ସାହଯ୍ୟରେ ଚଳୁଥିବା ସ୍ତ୍ରୀଲୋକ ପ୍ରତି ବ୍ୟଙ୍ଗ । ଏଥିରେ ସଂସାର ଚଳେ ନାହିଁ ।)

୧୯୬୬୨. *ଏକାର୍ଥରେ*- ନଥିଲାକୁ ନାତୁଣୀ ଜୋଇଁ ଘରଡା,
ଟେକାଟେକି କରି ଦିନ ନଉଥା ।

୧୯୬୬୩. ନଥିଲା ଘରେ କୁକୁର ବ୍ରହ୍ମା ।
(ଦରିଦ୍ର ଘରେ ନିକୃଷ୍ଟ ଲୋକକୁ ବି ଠାକୁର ଭଳି ମାନି ଚଳେ ।)

୧୯୬୬୪. ନଥିଲା ଲୋକର ବୁଦ୍ଧିହୁଏ ନାଶ,
ଯେତେ ଫନ୍ଦାକଲେ ନ ପୂରଇ ଆଶ ।
(ଦରିଦ୍ରର ବୁଦ୍ଧି ସ୍ଫୁରେ ନାହିଁ ।)

୧୯୬୬୫. ନ ଦୁଃଖଂ ପଞ୍ଚଭିଃ ସହ ।
(ପାଞ୍ଚ ପଚିଶ ଲୋକ ମେଳରେ ଦୁଃଖ ସହି ହୁଏ ।)

୧୯୬୬୬. ନ ଦେଖିଲା ଓଉ ଛପଡା ।
(ଓଉ ପାଞ୍ଚଫଡା । ଓଉ ନ ଦେଖିଲା ଲୋକ ଏହାର ଅତି ରଞ୍ଜିତ ବର୍ଣ୍ଣନା କରିପାରେ । ଯାହା ବିଶ୍ୱାସ ଯୋଗ୍ୟ ନୁହେଁ ।)

୧୯୬୬୭. ନ ଦେଖିଲେ ଝୁରୁଥାଏ, ଦେଖିଲେ କଥା ନକହେ ।
(ଆନ୍ତରିକ ସ୍ନେହଶ୍ରଦ୍ଧା ନଥିବା ବ୍ୟକ୍ତି ପ୍ରତି କଟାକ୍ଷ ।)

୧୯୬୬୮. ନ ଦେଖିବା ଲୋକ ଦେଖ, କଉଁଥ କାଢିଛି ବେକ ।
(ଧନ, ମାନ, ଯଶ ପ୍ରତିଷ୍ଠାରେ ସଦ୍ୟ ଉପରକୁ ଉଠିଥିବା ବ୍ୟକ୍ତି ପ୍ରତି ଈର୍ଷାଳୁ ବ୍ୟକ୍ତିର ଉପହାସ ପଦ ।)

୧୯୬୬୯. ନ ଦେଖିଲା ଲୋକ ବାଟ ପଚାରି ପଚାରି ଲଙ୍କାକୁ ଯାଉଛି ।

୧୯୬୭୦. ନ ଦେବ ଧନ, କହିବ ଦିବ୍ୟ ବଚନ ।
(କର୍କଶ କଠୋର କଥା ଏ ସଂସାରରେ ଅଶାନ୍ତିର ମୂଳ କାରଣ । ତେଣୁ ସମସ୍ତଙ୍କୁ ଦିବ୍ୟବଚନ କହି ତୁଷ୍ଟ କରିବ । ଧନ ଦେଇ ସନ୍ତୁଷ୍ଟ କରିବାଠାରୁ ଏହା ଉତ୍କୃଷ୍ଟ ।)

୧୯୬୭୧. ନଦେବା ନାହିଁ ନ କରିବା,
ଦେବା ଦେବା କହୁଥିବା,ଯାବଚ୍ଚନ୍ଦ୍ର ଦିବାକରେ ।
(କେତେକ ଧାର କରଜ କରନ୍ତି, ଶୁଝନ୍ତି ନାହିଁ, ଆଜି ଦେବି, କାଲି ଦେବି କହି ଦିନ ଗଡାଉଥାନ୍ତି । ଏହିପରି ବ୍ୟକ୍ତିମାନଙ୍କ ପ୍ରତି ବ୍ୟଙ୍ଗ କରାଯାଇଛି ।)

୧୯୬୭୨. ନଦେଲା ରଣ,ପିତା ତୁଉଣ, ଝିଅ ମରଣ,
ପହିଲେ ଦୁଃଖ, ପଛକୁ ସୁଖ ।
(କରଜ ନ ମିଳିଲେ ଦୁଃଖ ଲାଗେ, ପିତା ତିଅଣ ପାଟିକୁ ଖରାପ ଲାଗେ, ଝିଅର ମୃତ୍ୟୁ ଅତି କଷ୍ଟକର । କିନ୍ତୁ ପରବର୍ତ୍ତୀ କାଳରେ ଦୁଃଖରୁ ଅବ୍ୟାହତି ମିଳେ ।)

୧୯୬୭୩. ନଦେଲେ ନ ଦେବୁ, ତୁଣ୍ଡରେ ଟିକିଏ ପଚାରୁ ଥିବୁ ।

୧୯୬୭୪. ନ ଦୋଷୋ ପଞ୍ଚଭିଃ ସହ ।
(ପାଞ୍ଚଜଣ ମିଶି କାମ କଲେ ଜଣକ ଉପରେ ଦୋଷ ପଡେ ନାହିଁ । )

୧୯୬୭୫. ନ ଦୋଷେ ମନୁରବ୍ରବୀତା ।
(ନିଜକୁ ବଡ ପଣ୍ଡିତ ମନେ କରୁଥିବା ଲୋକ, କଥା କଥାକେ ଶାସ୍ତ୍ର ବଚନର ଦୁହାଇ ଦିଏ ।)

୧୯୬୭୬. ନନାଙ୍କ ସନ୍ଧ୍ୟାରେ ସନ୍ଧ୍ୟା ।
(ନିଜେ ନକରି ଅନ୍ୟ ନାଁରେ ପାରି ହୋଇଯିବା ଲୋକ ପ୍ରତି ବ୍ୟଙ୍ଗ ।)

୧୯୬୭୭. ନନାକୁ ନାନୀ, ଭଲା ଭିଆଇଲେ ଚକରପାଣି ।
(ସ୍ତ୍ରୀ ପୁରୁଷ ସମାନ ଚରିତ୍ରର ହୋଇଥିଲେ ଏହି ଉକ୍ତିଟି ପ୍ରୟୋଗ ହୁଏ ।)

୧୯୬୭୮. *ଏକାର୍ଥରେ*- କଣାକୁ କାଣୀ,
ଭଲା ଭିଆଇଛି ଚକରପାଣି ।

୧୯୬୭୯. ନନାକୁ ଯେତେ, ନାନୀକୁ ସେତେ ।
(ଦୁଇଜଣ ବ୍ୟକ୍ତିକୁ ସମାନ କଷ୍ଟ ହେଲେ ଏହି ଉକ୍ତିଟି ପ୍ରୟୋଗ ହୁଏ । )

୧୯୬୮୦. ନନା ଗଲେ ପାଣ୍ଡିକି, ମେଖ (= କୀଳା ବା ଖିଲ) ଆଣିଲେ ଗାଣ୍ଡିକି ।
(ଭଲ କରିବାକୁ ଯାଇ ମନ୍ଦ ହେଲେ, ଏହି ଉକ୍ତିଟି ପ୍ରୟୋଗ ହୁଏ ।)

୧୯୬୮୧. ନନା ବେକ ଧରି କାନ୍ଦୁଛି, ନାନୀ ବେକ ଧରି କାନ୍ଦୁଛି ।
(ଦୁଇ ବିପକ୍ଷ ଦଳ ସଙ୍ଗେ ମିଶି ଦୁଃଖ ଜଣାଉଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୬୮୨. ନ ନିମ୍ବଂ ମଧୁରାୟତେ ।
(ଯେତେ ଉପାୟ କଲେ ବି ନିମ୍ବ ଯୋଉ ପିତାକୁ ସେଇ ପିତା ରହିଯାଏ । ସେହିପରି ଦୁଷ୍ଟ ଲୋକର ପ୍ରକୃତି କେବେହେଲେ ବଦଳେ ନାହିଁ । )

୧୯୬୮୩. ନ ନେଇ ଲାଞ୍ଚ, ବୁଣିବ ଚାଞ୍ଚ (= ଚାଞ୍ଚତା),
ଆଉ ଅନାଇବ ବରଷ ପାଞ୍ଚ ।
(କାହାର ଚାଞ୍ଚତା ବୁଣି ବରଂ ଜୀବନ ନିର୍ବାହ କରିବ, ଲାଞ୍ଚ ନେବ ନାହିଁ ।)

୧୯୬୮୪. ନନ୍ଦ, ତ୍ରିପାଠୀ, ଓତା; ଏକା ଗାତରେ ପୋତା ।
ଦାଶ, ମିଶ୍ର, କର; ଏକା ଗାତକେ ମର ।

(ମଲା ପରେ ପ୍ରତ୍ୟେକଙ୍କୁ ହୁଲ ଗାତରେ ଶୁଆଇ ପୋତି ଦିଆହୁଏ । ଏଠାରେ ଜାତି ଗୋଷ୍ଠୀର ପ୍ରଭେଦ ରହେ ନାହିଁ ।)

୧୯୬୮୫. ନନ୍ଦପୁର ଦେଶ ଯା'ନା (= ଯାଅ),
ଡୋଙ୍ଗରତା ପାନ ଖାନା (= ଖାଅ),
ନବରଙ୍ଗ ପୁରେ ନ'ଟା ରଙ୍ଗ, ଜୟପୁର କଥା କହନା ।

୧୯୬୮୬. ନନ୍ଦ ବାନ୍ଧେ କୂଅ, କୁଳ ବାନ୍ଧେ ପୁଅ,
କାମୁଡା ବାନ୍ଧେ ଗୁଅ, ପରକୁ ବାନ୍ଧେ ଝିଅ,
ଚତୁରଙ୍ଗ ବାନ୍ଧେ ଭୁଅ (=ବିନ୍ଦୁ) ।

୧୯୬୮୭. ନ ପଢ଼ି ପଣ୍ଡିତ ।
(ପୁସ୍ତକ ଗତ ବିଦ୍ୟା ଏକ ମାତ୍ର ବିଦ୍ୟା ନୁହେଁ । ସାଂସାରିକ, ସାମାଜିକ, ସାଂସ୍କୃତିକ ଅନୁଭୂତିରେ ଜଣେ ଜ୍ଞାନୀ ହୋଇପାରେ । )

୧୯୬୮୮. ନ ପଢ଼ି ପଣ୍ଡିତ ମହାମେରୁ, ବାବୁରା ବଦନ ରାଏଗୁରୁ ।
(ବିରାଟ ବପୁ ମୂର୍ଖ ରାଏଗୁରୁଙ୍କ ପ୍ରତି ବ୍ୟଙ୍ଗ । )

୧୯୬୮୯. ନ ପଶ୍ୟତି ଅରୁନ୍ଧତୀମ୍ ।
(ରାତିରେ ଅରୁନ୍ଧତୀ ନକ୍ଷତ୍ର ଦେଖିପାରୁ ନଥିବା ବ୍ୟକ୍ତିର ମୃତ୍ୟୁ ଅଳ୍ପଦିନ ମଧ୍ୟରେ ହୁଏ ବୋଲି ଲୋକବିଶ୍ୱାସ ତଥା ଅନ୍ଧବିଶ୍ୱାସ)

୧୯୬୯୦. ନପାଇ ପାଇଛି ଡାଲ, ତାର ମୁହଁଟା ଯାକ ବାଳ ।
(ଦରିଦ୍ର ଡାଲ ଖାଉଥିବା ପ୍ରତି ବ୍ୟଙ୍ଗ ।)

୧୯୬୯୧. ନପାଇ ପାଇଛି ଇଲିସି, କଣ୍ଟା ମାଛ କରି ଗିଳୁଛି ।
(ରଙ୍କ ଦିନେ ସୁଖାଦ୍ୟ ପାଇଲେ, ଆଖିବୁଜି ଗିଳିଯାଏ ।)

୧୯୬୯୨. ନବଗୁଞ୍ଜର, ଆପଣା ମନେ ଆପେ ସୁନ୍ଦର୍ ।
(ଆତ୍ମ ପ୍ରଶଂସା ପ୍ରତି ବ୍ୟଙ୍ଗ । ନବଗୁଞ୍ଜର ଅର୍ଥ - ବାଘ, ମିରିଗ ଓ ହାତୀର ପାଦ, ସାପ ଲାଙ୍ଗୁଡ଼, ମୟୂର ଗ୍ରୀବା, ଷଣ୍ଢ ଦୁଳ ପ୍ରଭୃତି ନ'ଟି ଜୀବଜନ୍ତୁ, ପକ୍ଷୀ ଓ ସରୀସୃପର ଏକ ମିଶ୍ରିତ କାଳ୍ପନିକ ରୂପ । ବନବାସ କାଳରେ ଅର୍ଜୁନଙ୍କୁ ଏହି ରୂପରେ ଶ୍ରୀକୃଷ୍ଣ ଦେଖା ଦେଇଥିଲେ ।)

୧୯୬୯୩. ନବ ଗୋପ୍ୟାନି କାରଯେତ୍ ।
(ଆୟୁ, ଧନ, ଗୃହଛିଦ୍ର, ମନ୍ତ୍ର, ମୈଥୁନ, ଔଷଧ, ଅପମାନ, ତପ, ଦାନ - ଏ ନଅଟି ବିଷୟ କାହାକୁ କିଛି କହିବ ନାହିଁ ।)

୧୯୬୯୪. ନବ ଘନ ଘନ ପଇତାଟାଏ, ଶଙ୍ଖା ବି'ମୁଠାକୁ ଘଇଚାଟାଏ ।
(ବେଶଭୂଷଣ ଲୋଭରେ ଚରିତ୍ର ହରାଉଥିବା ସ୍ତ୍ରୀଲୋକ ପ୍ରତି ବ୍ୟଙ୍ଗ ।)

୧୯୬୯୫. ନବ ଛଇଳା, ଭାବ ନଜାଣି କି କଥା କହିଲା ?

୧୯୬୯୬. ନବ ଛଇଳୀ, କଥା କହୁଥାଏ ଭଳିକି ଭଳି ।

୧୯୬୯୭. ନବରଙ୍ଗୀ, କଥା କହୁଥାଏ ଭଙ୍ଗୀ ଭଙ୍ଗୀ ।

୧୯୬୯୮. ନବ ରଙ୍ଗେଇ, ହେବା ବାହାଘର ଦେଲା ଭଙ୍ଗେଇ ।
(ଇର୍ଷାରେ କେହି ବାହାଘର ଭାଙ୍ଗି ଦିଅନ୍ତି ।)

୧୯୬୯୯. ନବଯୁବା ଝିଅ ଶୁଭା, ମୁଣ୍ଡରେ ମାରିଛି ଫୁଲ ଗୁଭା,
ଯଦି ସେ ଫୁଲ ବାସିବ, ଭେଣ୍ଡିଆ ଦେଖିଲେ ରସିବ ।

୧୯୭୦୦. ନ ବରଷେ କଳା ମେଘ, ବରଷେ ଧଉଳିଆ (= ଖରରିଆ)
ନ ପୋଷଇ ଚିକ୍କଣିଆ, ପୋଷଇ କାଳିଆ ।

୧୯୭୦୧. ନ ବାତ, ପଇସା ନଥିଲେ ନବାତ ।

୧୯୭୦୨. ନବାବଙ୍କୁ ଜବାବ ଦେବା ଲୋକ ।

୧୯୭୦୩. ନବାବ୍ ଘରେ ସାହେବ ଦ୍ୱାହି । (ବଡ ଘରେ ବଡ ଗୁମର କଥା ।)

୧୯୭୦୪. ନବାବ୍ ପୁଅକୁ ଜବାବ ଦେବା ।

୧୯୭୦୫. ନ ବ୍ରୂୟାଦ୍ ସତ୍ୟମପ୍ରିୟମ୍ ।
( ସତ କହିବ, ପ୍ରିୟ କଥା କହିବ, ଅପ୍ରିୟ ସତ୍ୟ କହିବ ନାହିଁ । )

୧୯୭୦୬. ନ ଭୂତୋ ନ ଭବିଷ୍ୟତ ।
(ଏପରି କଥା ହୋଇ ନଥିଲା କି ହେବ ନାହିଁ ।)

୧୯୭୦୭. ନ ମଲା ମାଛି,
ଏଇ ଛାର କଥା ତୋର ମନେ ଅଛି ?
ମାନ ମାରୁଥାଉ କେତେ,
ଦୁଇଜଣଙ୍କର ଏକ ମୁଖ ହେଲେ, କୋଟି ନିଧି ମିଳେ ମତେ ।
(ଛୋଟ ଛୋଟ ଭୁଲ ଭଟକା ମିଳନ ପଥରେ ବାଧା ସୃଷ୍ଟି କରିବା ଉଚିତ ନୁହେଁ ।)

୧୯୭୦୮. ନ ମରୁ ବାଳ ଜନନୀ, ନ ମରୁ ବୁଢା ଘରଣୀ ।
(ପିଲାଦିନେ ଯିଏ ମା' ହରାଏ, ବୁଢାଦିନେ ଯେ ସ୍ତ୍ରୀ ହରାଏ, ସେ ଦୁଃଖପାଏ ।)

୧୯୭୦୯. ନ ମିଥ୍ୟା ପାତକଂ ପରମ୍ ।
(ମିଛଠାରୁ ବଳି ବଡ ପାପ ନାହିଁ ।)

୧୯୭୧୦. ନ ଯଯୌ ନ ତସ୍ଥୌ ।
(ସଂଶୟରେ ପଡି କିଛି କରି ନପାରିବା । କିଂ କର୍ତ୍ତବ୍ୟବିମୂଢ଼ ଅବସ୍ଥା । 'କୁମାର ସମ୍ଭବ'ର ସମ୍ପୂର୍ଣ୍ଣ ଧାଡ଼ି - 'ଶୈଳାଧିରାଜ ତନୟା ନ ଯଯୌ ନ ତସ୍ଥୌ' ।)

୧୯୭୧୧. ନର କଙ୍କାଳ ଦେଖାଉଛି । (ଅତି ଦୁର୍ବଳ ଶରୀର ପ୍ରତି ଆକ୍ଷେପ ।)

୧୯୭୧୨. ନର କୁଞ୍ଜର ବିଷାଣହେ, ଗୋରୁ କୋଡିଏ କୁଆ ଶହେ,
ଛେଳି ମେଣ୍ଢା ବାଆର କରି, ତିରିଶ ବର୍ଷରେ ଘୋଡା ମରି,
ଷାଗୁଣା ଦୁଇଶ, ବିରାଡି ନଅ, ତିନିଶ ବର୍ଷରେ କୁମ୍ଭୀର କ୍ଷୟ
ବିଲୁଆ ଚାଳିଶ କୁକୁର କୋଡି, ପଇଁତ୍ରିଶ ବର୍ଷରେ ମାଙ୍କଡ ଝଡି ।
(ଲୋକବିଶ୍ୱାସ ତଥା ଅନ୍ଧବିଶ୍ୱାସ)

୧୯୭୧୩. ନର ମାୟା ନାରାୟଣଙ୍କୁ ଅଗୋଚର ।
(ମଣିଷର ଚରିତ୍ର ବଡ ଜଟିଳ, ଦୁର୍ବୋଧ, ଭଗବାନ ମଧ ଜାଣି ପାରନ୍ତି ନାହିଁ ।)

୧୯୭୧୪. ନ ରସି ଭ୍ରମରେ ରସିଲା,
ଜାଇ ଯୁଈଫୁଲ ପାଣିକି ପକାଇ,
ପୁରୁଣୁଘା ମୂଳେ ବସିଲା ।
(ସୁନ୍ଦରୀମାନଙ୍କୁ ଛାଡି ଅସୁନ୍ଦରୀକି ବିଭା ହେବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୭୧୫. ନ ରସି ରସିଲି,
ମୁଁହଟାଯାକ କାଠ ବରୁଣ, ମୁଁ ଚାଳିକି ରସିଲି ।

୧୯୭୧୬. ନରସିଂହ ଭୋଗ (= ଏକ ସରୁ ଧାନ) ଧାନ କି ଢିଙ୍କି ମୁଣ୍ଡାକୁ ନ ଆସେ ?
(ଯେତେ ସୁନ୍ଦର, ଗୁଣବନ୍ତ ହେଲେ ବି ଯମ ମୁହଁରେ ପଡିବାକୁ ହୁଏ ଅର୍ଥାତ୍, ମରେ ।)

୧୯୭୧୭. *ଏକାର୍ଥରେ*- ନରସିଂହ ଭୋଗ ଧାନ, ଦିନେନା ଦିନେ ଢିଙ୍କି ମୁଣ୍ଡାକୁ ଯିବ ।

୧୯୭୧୮. ନରସିଂହ ଧାନ (= ଏକ ସରୁ ଧାନ) ଖିରୀକି, କେତେ ଅନାଉଛୁ ନିରିଖି,
ଫଳ ହୋଇଛି କି ଖାଇବୁ ? ଫୁଲ ହୋଇଛିକି ନାଇବୁ ?
ତୁ ଯାହା ପାଇଁ ତହଳ ବିକଳ, ମରିଗଲେ ଅବା ପାଇବୁ ।
(ପ୍ରେମିକ ପ୍ରତି ଯୁବତୀର ବ୍ୟଙ୍ଗ କଥନ । )

୧୯୭୧୯. ନ ରହିବ ଧନ, ନ ରହିବ ଜନ, ନ ରହିବ ତୋର ମନେ,
କୀରତି ପୀରତି, ଯାହା କରିଥିବୁ, ସେଇଥିବ ସବୁଦିନେ ।
(କିର୍ତ୍ତୀ ଓ ପ୍ରୀତି ଚିରଦିନ ରୁହେ ବୋଲି ପ୍ରତିପାଦିତ ହୋଇଛି ।)

୧୯୭୨୦. ନରାଣାଂ ନାପିତୋ ଧୂର୍ତ୍ତଃ । (ଭଣ୍ଡାରି ଚତୁର ।)

୧୯୭୨୧. ନରେନ୍ଦ୍ର ଆମର ଭାଇ,
ନରେନ୍ଦ୍ରଙ୍କ ହାତୀଘୋଡା, ଆମ ଦୁଆର ବାଟେ ଯାଇ ।
(ଧନୀ କ୍ଷମତାଶାଳୀ ବ୍ୟକ୍ତି ସମ୍ପର୍କୀୟ ହୁଅନ୍ତି ବୋଲି ବାହାଦୁରୀ ମାରିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୭୨୨. *ଏକାର୍ଥରେ-* ମୋର ନିଶ ନାହିଁ,
ହେଲେ ମୋ ବନମାଳିଆ ଭାଇର ନିଶ ଅଛି ।

୧୯୭୨୩. ନରେନ୍ଦ୍ରଙ୍କ ସାଙ୍ଗେ ଶୁଖୁଆ ବଣିଜ ବାଇ ।
(ଶୁଖୁଆ ବେପାର ରାଜଯୋଗ୍ୟ ନୁହେଁ । ରାଜାଙ୍କ ସହିତ ଏହି ବେପାର କରିବା ହାସ୍ୟକର ।)

୧୯୭୨୪. *ଏକାର୍ଥରେ* - ଓଧ ସଙ୍ଗେ ବଣଭୁଆ ବାଇ ।
(ଓଧ ପୋଖରୀରେ ବୁଡି ମାଛ ଧରେ । ବଣଭୁଆ ସେପରି କଲେ ବୁଡି ମରିବା ସାର ହୁଏ ।)

୧୯୭୨୫. ନରେନ୍ଦ୍ରଙ୍କ ଘରେ ଗରିବ କୁଣିଆଁ ।
(ରାଜା ବା ବଡଲୋକମାନଙ୍କ ଘରେ ଗରିବ କୁଣିଆ ଶ୍ରଦ୍ଧା ବା ସମ୍ମାନ ଲାଭ କରେ ନାହିଁ ।)

୧୯୭୨୬. ନରେନ୍ଦ୍ର ଝରୀ (=ଗଡୁ) ନେଇଗଲେ,
ରଙ୍କ ଘଡି ଘିନି ଯାଏ ।
(ବେଳ ପଡିଲେ ରାଜା ଓ ରଙ୍କ ସମସ୍ତେ ଲୁଣ୍ଠନ କରନ୍ତି । ରାଜା ଝରୀ (ଗଡୁ) ନେଉଥିବା ବେଳେ ରଙ୍କ ଘଡି ନେଇଯାଏ । )

୧୯୭୨୭. ନରେ ବା ଗୁଞ୍ଜରେ ଅଶ୍ୱଚଥମା ହତଃ ।
(ଦ୍ୱିଅର୍ଥ ବୋଧକ ଶବ୍ଦ । ମଣିଷ ହେଉ ବା ହାତୀ ହେଉ, ଅଶ୍ୱତ୍ଥାମା ମରିଛି । ଏ ସମ୍ପର୍କରେ ଏକ କଥନ ହେଲା - ଦ୍ରୋଣଙ୍କର ଗୋଟିଏ ବୋଲି ପୁତ୍ର ଅଶ୍ୱତ୍ଥାମା । ତା ମରଣ ଖବର ଶୁଣିଲା ପରେ ଦ୍ରୋଣ ଆଉ ଯୁଦ୍ଧ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଶ୍ରୀକୃଷ୍ଣଙ୍କର ଚକ୍ରାନ୍ତରୁ ଭୀମ ଅଶ୍ୱତ୍ଥାମା ନାମକ ହାତୀକୁ ମାରିଦେଲେ । ଅର୍ଜୁନ ସେଉ ସମ୍ବାଦକୁ ବଡ଼ ପାଟିରେ ଘୋଷଣା କଲେ । ଏହାର ସତ୍ୟାସତ ଜାଣିବା ପାଇଁ ଦ୍ରୋଣ ଯୁଧିଷ୍ଠିରଙ୍କୁ ପଚାରିଲେ । ଯୁଧିଷ୍ଠିର ଉଲ୍ଲିଖିତ ପଦଟି କହିଲେ । 'ନରେ ବା ଗୁଞ୍ଜରେ' କହିଲାବେଳେ ଶ୍ରୀକୃଷ୍ଣ ପାଞ୍ଚଜନ୍ୟ ବଜାଇ ଦେଲେ । ଦ୍ରୋଣ ବୁଝିଲେ ଅଶ୍ୱତ୍ଥାମା ମୃତ । ତାଙ୍କ ପ୍ରତିଜ୍ଞା ପାଳନ କରି ସେ ଅସ୍ତ୍ରତ୍ୟାଗ କଲେ । ଅସ୍ତ୍ରତ୍ୟାଗ କରିଥିବା ଅବସ୍ଥାରେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ ବିନାଶ କଲେ । ପ୍ରକୃତ ସତ୍ୟ କ'ଣ ଜାଣିବା ସ୍ଥଳେ ଯୁଧିଷ୍ଠିର ସନ୍ଦେହଜନକ ଭାବରେ କହିଥିବାରୁ ଯୁଧିଷ୍ଠିରଙ୍କୁ ଫଳସ୍ୱରୂପ ନରକ ଦର୍ଶନ କରିବାକୁ ହୋଇଥିଲା ।)

୧୯୭୨୮. ନଳ ଆଗରେ କାହାର ବଳ ?
(ଜମି ସୀମା ପାଇଁ ବିବାଦ ଉପୁଜିଲେ ମାପ ଯୋଗେ ତାହା ନିଷ୍ପତ୍ତି ହୋଇଥାଏ । ପୂର୍ବେ ନଳମାପର ପ୍ରଚଳନ ଥିଲା )

୧୯୭୨୯. ନ ଲାଗିବାର ଗୁଡ଼ି, ବାରଖଣ୍ଡି ଭୂତି ।
(ମୂଲ ଲାଗିବାକୁ ଇଚ୍ଛା ନଥିବା ଲୋକ ଚଢ଼ା ମଜୁରୀ ଦାବୀ କରେ ।)

୧୯୭୩୦. ନ ଲାଗିଲେ ସବୁବେଳେ ଘରକି ଶୋଭେ ?
ନ ମାଠିଲେ ବୟସବେଳେ ମନକି ଲୋଭେ ?
(ସୁନ୍ଦର ଘର ଲାଗି କଠୋର ଶ୍ରମ ଏବଂ ଯୌବନ ସମୟରେ ପ୍ରସାଧନ ଆବଶ୍ୟକ । ତାକୁ ନ ପିନ୍ଧିଲେ ମନ ମାନେ ନାହିଁ ।)

୧୯୭୩୧. ନଳୀ ଗୋଡ ଘାଆ, ଦୁଆର ମୁହଁ ସାହୁ (=ମହାଜନ),
ଏ ଗୁଡିକ ଭଲ ନୁହେଁ ।
(ନଳୀ ଗୋଡରେ ଘାଆ ହେଲେ ମଣିଷ ଜଳବଳ ହୁଏ । ସେହିପରି ଦୁଆର ମୁହଁକୁ ସାହୁ ବା ମହାଜନ ଋଣ ଟଙ୍କା ମାଗି ଖାତକକୁ ବ୍ୟତିବସ୍ତ କରିପକାଏ ।)

୧୯୭୩୨. ନଳିଗଣ୍ଠିର ଘାଆ, ପଡ଼ିଶା ଘରର କଳି ।
(ପଡିଶା ଘର କଳି ନଳୀଗଣ୍ଠି ଘାଆ ପରି ଯନ୍ତ୍ରଣା ଦାୟକ ।)

୧୯୭୩୩. ନଳିତା ମୁହଁ ବଳିତା ।
(ଖୁବ ଖରା ଖାଇଲା ପରେ ବର୍ଷା ହେଲେ ନଳିତା ଫସଲ ଭଲ ହୁଏ ।)

୧୯୭୩୪. ନଳିତା ପିତା,
ପୋଖତୀଙ୍କ ପାଇଁ ଘରେ ସାଇତା ।

୧୯୭୩୫. ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟମର୍ହତି । (ସ୍ତ୍ରୀକୁ ପୂର୍ଣ୍ଣ ସ୍ୱାଧୀନତା ଦିଆଯାଏ ନାହିଁ ।
*ପୂର୍ଣ୍ଣ ଶ୍ଳୋକ* - ପିତା ରକ୍ଷତି ବାଲ୍ୟେଚ, ଭର୍ତ୍ତା ରକ୍ଷତି ଯୌବନେ,
ପୁତ୍ରୋ ରକ୍ଷତି ବାର୍ଦ୍ଧକ୍ୟେ, ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି । )

୧୯୭୩୬. ନସାଣ (= ଘା'ରୁ ପୁଜ ବୋହିବା) ପାଙ୍ଗଣ, ଲୋକର ମରଣ ।

୧୯୭୩୭. ନଷ୍ଟ ଗୁଆ ଦକ୍ଷିଣା ବୟେ,
ନଷ୍ଟ ଝିଅ ଦୋଚାରୁଣୀ ମାଏ,
ନଷ୍ଟ ବୋହୂ ପରର ଘରେ,
ନଷ୍ଟ ପୁଅ ଯେ ପରଦାରେ ।

୧୯୭୩୮. ନଷ୍ଟର ଗୁରୁ, ଦୁଷ୍ଟର ଗୋସେଇଁ ।
(ନଷ୍ଟଙ୍କ ଭିତରେ ଏକଦମ୍ ନଷ୍ଟ, ଦୁଷ୍ଟଙ୍କ ମଧରେ ମହାଦୁଷ୍ଟ ।)

୧୯୭୩୯. ନଷ୍ଟସ୍ୟ କାନ୍ୟାଗତି ?
(ପୂର୍ଣ୍ଣଶ୍ଲୋକ - 'ଭିକ୍ଷୋ! ମାଂସ ନିଷେବନଂ ପ୍ରକୁରୁଷେ?
କିଂ ତତ୍ର ମଦ୍ୟଂବିନା?
ମଦ୍ୟଂ ଚାପି ତବ ପ୍ରିୟଂ ?
କିମ ମହୋ ବରାଙ୍ଗନାଭି ସହ
ବେଶ୍ୟା ରୁଚିକରା କୁତସ୍ତବ ଧନଂ
ଦ୍ୟୁତେନ ଚୌର୍ଯ୍ୟେଣ ବା
ଦ୍ୟୁତଂ ଚୌର୍ଯ୍ୟମହୋ ତବାପି ଭବତଃ? '
ନଷ୍ଟସ୍ୟ କାନ୍ୟା ଗତିଃ ?'

(ଅର୍ଥ - ଭିକ୍ଷୁ, 'ତୁମେ ବାବାଜୀ ହୋଇ ମାଂସ ଖାଅ?' ମଦ ବିନା ଖାଲି ମାଂସରେ ମଜା କାହିଁ ? ଆଶ୍ଚର୍ଯ୍ୟ କଥା! ତୁମେ ମଦ ଖାଅ? ସୁନ୍ଦରୀ ବେଶ୍ୟାସଙ୍ଗ ବିନା ମଦ ପିଇବାରେ ମଜା କାହିଁ ? କି ଅଦ୍ଭୁତ କଥା! ତୁମେ ବେଶ୍ୟାସଙ୍ଗ ବି କର ? ପଇସା କୋଉଠୁ ପାଅ? ଜୁଆଖେଳ ବା ଚୌର୍ଯ୍ୟ ମୋର ଅର୍ଥାର୍ଜନର ଉପାୟ ।' ତୁମେ ଜୁଆ ଖେଳ, ଚୋରୀ କର! ନଷ୍ଟ ଲୋକର ଆଉ ଉପାୟ କଅଣ ?)

୧୯୭୪୦. ନଷ୍ଟାଶ୍ୱରଥ ।
(ଦୁଇଜଣ ପରସ୍ପରକୁ ସାହାଯ୍ୟ କରି ରକ୍ଷା ପାଇବା । ଦୁଇଜଣ ଲୋକ ଶିକାରକୁ ଯାଉଥିଲେ । ଜଣଙ୍କର ରଥ ଭାଙ୍ଗିଗଲା, ଆଉ ଜଣଙ୍କର ଘୋଡ଼ା ମରିଗଲା । ସେମାନେ ବିଚରାବିଚରି ହୋଇ ଜଣଙ୍କ ରଥରେ ଅନ୍ୟଜଣଙ୍କର ଘୋଡ଼ା ଲଗାଇ ଉଭୟେ ଘରକୁ ଫେରିଲେ ।)

୧୯୭୪୧. ନହ ବିରି, ନୁହେଁରେ କାଳିଆ ତୋହଗଲି,
ସୁନାଫୁଲ ବୋଲି ଗଭାରେ ଖୋସିଲି, ମୋ' କପାଳକୁ ବଣମଲ୍ଲୀ ।
(ଯାହା ଭଲ ଦିଶେ, ତାହା ଭଲ ନୋହି ପାରେ, ପରୀକ୍ଷା କଲେ ଭଲ ମନ୍ଦ ଜଣାପଡେ । ପ୍ରେମିକ ବେଇମାନ ହୋଇପାରେ । ବିବାହ ସଫଳ ହୋଇ ନ ପାରେ ।)

୧୯୭୪୨. ନହି ବନ୍ଧ୍ୟାବିଜାନାତି, ଗୁର୍ବୀ ପ୍ରସବବେଦନା ।
(ବାଞ୍ଝ କି ଜାଣେ ବିଆଣର ଦାଉ । ଏହା ମଧ ଗୋଟିଏ ପ୍ରବାଦ ।)

୧୯୭୪୩. ନହି ସୁଖଂ ଦୁଃଖୈର୍ବିନା ଲଭ୍ୟତେ ।
(ଦୁଃଖ ବିନା ସୁଖ ମିଳେ ନାହିଁ ।)

୧୯୭୪୪. ନହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ ।
(ଶୋଇଲା ପୁଅର ଭାଗ ନାହିଁ ଅର୍ଥରେ ପ୍ରଯୁକ୍ତ । ବିନ୍ୟା ଉଦ୍ୟମରେ ଶିକାର ସିଂହର ପାଟି ଭିତରେ ଆସି ପଶିଯାଏ ନାହିଁ ।)

୧୯୭୪୫. ନ ରହିବେ ଭବେ କଳି କପଟିଆ,
ପର ଘର ବୁଡା ଅସୁର ।
ଅନନ୍ତ ଯୁଗର୍ରେ ବିଜୟ ହୋଇବେ,
ସରିଯିବ ଜମ ତାଙ୍କର ॥

୧୯୭୪୬. ନକ୍ଷତ୍ରମାନଙ୍କ ଭୂଷଣ ଚନ୍ଦ୍ର
ରାଜାକୁ ଭୂଷେ ଅଟେ ନରେନ୍ଦ୍ର ।
ସ୍ତ୍ରୀରୀଙ୍କ ଭୂଷଣ ଅଟେ ନାୟକ ।
ବିଦ୍ୟାଦି ଭୂଷେ ଜଗତ ଯାକ ।

୧୯୭୪୭. ନ ଥିବେ ଓକିଲ ଲଢିବେ ମାମଲା,
ଯୁକ୍ତି ବଳେ କରିଦେବେ ଧଳା କଳା ।

୧୯୭୪୮. ନଇ କୁଠ ସାହାଡା, କଣ୍ଠ ମୋଟିଆ ବ୍ରାହ୍ମଣ,
ଗାଁ ଗୋଠିଆ ଗଉଡ, ମାଛଧରା କେଉଟ
ଏ ଚାରିଙ୍କର ନାହିଁ କରବତ ।

୧୯୭୪୯. ନ ଦେବ ଧନର ଭାର ବ୍ରାହ୍ମଣର କରେ ।
ଥିଲେ ମଧ ଦିଏ ନାହିଁ କାହାକୁ ଲୋଭରେ
କ୍ଷତ୍ରୀୟକୁ ଧନ ଭାର ଦେବା ଭଲ ନୁହେଁ,
ଅନର୍ଥକ ପଦେ ପଦେ ଖଡଗ ହସ୍ତ ହୁଏ ।
ଧନ ଭାର ଦିଅ ଯଦି ଜ୍ଞାତିଙ୍କ ଉପରେ ।
ଅଟି ଆପଣାର ବୋଲି ସବୁ ଗ୍ରାସ କରେ ।
ପୁରାତନ ଭୃତ୍ୟେ ଯଦି ନିଏ ଧନଭାର ।
ଦୋଷକଲେ ମଧ ଭୟ ନ ଥାଏ ତାହାର ॥
ଉପକାରୀ ଜନଠାରେ ଦେଲେ ଧନ ଭାର ।
ଉପକାର ଗ୍ରାସ ଦୋଷ ନ ଧରେ ମନରେ ॥
ଅପ୍ରାପ୍ତ ବୟସେ କରେ ଧନ ଭାର ଦେଲେ ।
ଉଡାଏ ସେ ବିଳାସିତା ବୃଥା ବନ୍ଧୁ ତୁଳେ ॥

୧୯୭୫୦. ନ ପୁତ୍ରସଂସ୍ପର୍ଶାତ୍ ପରଂସୁଖମ୍ ।
(ପୁତ୍ରକୁ ଆଲିଙ୍ଗନ କରିବା ଠାରୁ ବଡ ସୁଖ ନାହିଁ । )

୧୯୭୫୧. ନ ଖାଇ ଖାଇବୁ ଭାଦ୍ରବ ମାସକୁ,
ନ ମାଗି ଖାଇବୁ ପୁଷ ମାସକୁ ।

୧୯୭୫୨. ନ ଦିଶିବ ବୁଦ୍ଧି, ବିଧାତା ହେଲେ ଭଗାରୀ ।

୧୯୭୫୩. ନ କରିବି କେଭେ ଛୋଟ ଚାକିରି
ରଖିବି ବକିରି ।
ଆଣି ଛେଳି ମେଣ୍ଢା ପାଳି ଗଣ୍ଡା ଗଣ୍ଡା
କରିବି ତାହାକୁ ବିକିରି ।
ବାକି ରଖି ଦରମା ଶେଷକୁ
ମାଗି ମାଗି ହେଲି ଫକିର
ପେଟ ଗଲେ ପୋଡି, ବାପ ପୁଅ ଛାଡି
ପଳେଇ ଯାଉଛି ଆଖିରି
ବାରମାସେ ଛୁଟି ନ ମିଳିଲା ଚେରେ
ହେବଣି କେ ମୁକରି ।
ପର ଘରେ ପଶି, ଦିନ ଗଲା ଆସି
ମାଗିଲେ ହୋଇଲେ ଖିଙ୍କାରି ।
କାହାକୁ କହିବି,
ଚୋରି କରି କେତେ ଲୁଚାଇବି ନଈ ପୋଖରୀ ।

୧୯୭୫୪. ନଡିଆ ଗଛଟି ସଳଖେ ଠିଆ
ଫୁଲଟିଏ ପରି ରୋଜଗାରିଆ ।
(ଲୋକ କେତୋଟି ନଡିଆ ଗଛର ଅଧିକାରୀ ହୋଇ ଜୀବିକା ନିର୍ବାହ କରନ୍ତି । ଓଡିଶାର ଉପକୂଳ ଅଞ୍ଚଳରେ ରୋଜଗାରିଆ ପୁଅ ପରି । ଏହା ଏକ ଅର୍ଥକାରୀ ଫସଲ ।)

୧୯୭୫୫. ନଈରେ ଚକା ପଥର
ମାଡ ଖାଇ ଖାଇ ଦିହ ଢାକର,
ନେଇ ଛାଡ ବାପଘର ।

୧୯୭୫୬. ନଇଁଲେ ସମୁଦ୍ର ପାର ।

୧୯୭୫୭. ନଈ କୂଳିଆ ଗଛ, ଆଜି ନ ହେଲେ କାଲିକି ଯିବ ।

୧୯୭୫୮. ନକଲ୍ ମେଁ କ୍ୟା ଅକଲ୍ ?

୧୯୭୫୯. ନକଲୀ କଳି ଯୁଗରେ ବଢୁଛି ।

୧୯୭୬୦. ନଖକୋଣେ ଚୌରାଶିକୋଟୀ ଗଙ୍ଗା ।

୧୯୭୬୧. ନ ଖାଇ ନ ପିଇ ସଞ୍ଚଇ, ତାହାର ମୁଖେ ଅଗ୍ନିଦେଇ ।

୧୯୭୬୨. ନଗ୍ରେ ରହନ୍ତି ଦେବତା,
ଗ୍ରାମେ ରହନ୍ତି ମାନବ,
ଡେରା ଡୁଙ୍ଗରି ରାକ୍ଷସା ।

୧୯୭୬୩. ନ ଚ ତାରାଗଣୈରପି ।

୧୯୭୬୪. ନ ଚ ମୂର୍ଖୋ ଶତୈରପି ।

୧୯୭୬୫. ନ ଭୂମି କାୟତେ ମାଂସଂ ।

୧୯୭୬୬. ନଜର୍ ପଡିଲେ ପିଲାକାନ୍ଦେ ।
(ଲୋକବିଶ୍ୱାସ ତଥା ଅନ୍ଧବିଶ୍ୱାସ)

୧୯୭୬୭. ନର ଜୀବନରେ ଆଜୀବନ ଛାତ୍ର ହେଲେ,
ପର ଜୀବନରେ ଶିକ୍ଷକ ହେବ ।

୧୯୭୬୮. ନ ଖା' ନ ପାଡ' ନ ଡର ।

୧୯୭୬୯. ନଡା ନାହିଁ ଛାଞ୍ଚୁଣୀ, ନଟବର କେତେ ଠାଣି ।

୧୯୭୭୦. ନ ପଶ୍ୟତି ଅରୁନ୍ଧତୀ ।

୧୯୭୭୧. ନ ମିଥ୍ୟା ପାତକଂ ପରଂ ।

୧୯୭୭୨. ନର ମୁହେଁ ନାରାୟଣ ।

୧୯୭୭୩. ନବାବ ହେଲେ ରୁବାବ୍ (=ମନ୍ଦ ଅଭ୍ୟାସ) ବଢ଼େ ।

୧୯୭୭୪. ନବାତ୍ ଅଭାବେ ଚିନି, ଚିନି ଅଭାବେ ଗୁଡ଼ ।

୧୯୭୭୫. ନ ଭୀତୋ ବିପ୍ରଦୁର୍ଜନଃ ।

୧୯୭୭୬. ନମଃ ଶିବାୟ ।

୧୯୭୭୭. ନ ଯିବା ଗାଁକୁ ବାଟ କୁଆଡେ ?

୧୯୭୭୮. ନ ଲାଗିବାର ଗୁଡି, ବର ଖଣ୍ଡି ଭୁଡି ।

୧୯୭୭୯. ନଳୀ ଗୋଡର ଘା, ଘର ପାଖର ସା (=ପାର୍ବତ୍ୟ) ।

୧୯୭୮୦. ନଳ ରାଜାର ବିପରି ।

୧୯୭୮୧. ନରାଣାଂ ମାତୁଳା ଗତିଃ ।

୧୯୭୮୨. ନଚଳତି ଖଳୁବାକ୍ୟଂ ସଜ୍ଜନାନଂ କଦାଚିତ୍ ।

୧୯୭୮୩. ନଶ୍ୟନ୍ତି କାଳେ ବିପରୀତ ବୁଦ୍ଧିଃ ।

୧୯୭୮୪. ନଶ୍ୟନ୍ତି କାଳେ ଫଳ ମୁଦ୍‌ବହନ୍ତି ।

୧୯୭୮୫. ନ ଦେଖିଲା ରକୁଣୀ ଦେଖି ମଲା,
ଦେଖିଲା ରକୁଣୀ ମାନହାନେ ମଲା ।

୧୯୭୮୬. ନଅତ (= ନିଷ୍ଠା) ଗୁଣେ, ବରକତ (=ଉନ୍ନତି) ପଳେ ।

୧୯୭୮୭. ନରସିଂହପୁରର ଜମା କେତେ, ମାରୁ ଧରୁ ଉଠିଲା ଯେତେ ।

୧୯୭୮୮. ନଚି ଲୋ, ସବୁ ଯାଉଥାଏ ଗଚି ଲୋ ।

୧୯୭୮୯. ନରମାୟା ନାରାୟଣ ଜାଣେ ।
(ଅନ୍ତର୍ଯ୍ୟାମୀ ପରମେଶ୍ୱରଙ୍କ ବ୍ୟତୀତ ନରର କାର୍ଯ୍ୟ -କଳାପ କିମ୍ବା ଅନ୍ତର୍ଗତ ଭାବନା କେହି ଜାଣିପାରେନାହିଁ ।)

୧୯୭୯୦. ନ ଦେଇ ନାଶେ ।
(ଯିଏ ନଦିଏ ସେ ନାଶ ଯାଏ ।)

୧୯୭୯୧. ନ ମାଗିଲେ ଦେବତା ଖାଉ ନାହିଁ ।

୧୯୭୯୨. ନଈ ପାଣି ନଈରେ ଗଲା, ପିତୃଲୋକେ ସନ୍ତୋଷ ।

୧୯୭୯୩. ନବାବ ବିଚାରି ବିଚାରି କହିଲେ, ଭାତ ନ ମିଳିଲେ ପଲୋଉ ଖାଆଁ ।

୧୯୭୯୪. ନବାର କୁଟୁମ୍ବ ଦବାର ନୁହେଁ ।

୧୯୭୯୫. ନ ଦେଇ ନ ଖାଇ ନ ପିଇ ଯେତୁ ଧନ ସଞ୍ଚୟ,
ମହୁମାଛି ପରି କାଳେ ହେଁ ହତାଶ ଯେ ହୁଅଇ ।
ସେହିପରି ଧନୀ ସଞ୍ଚଇ ଧନ ଅକାଳେ ଆସି,
ଖଣ୍ଡ କେହି କରେ ହରଣ ବଳତ୍କାର ପ୍ରକାଶି ।
ଧନକୁ ଅର୍ଜନ କରିଣ ବେଶ୍ୟା ମରଇ ନିତି,
ତାହାକୁ ବଣିକ କୌଶଳେ ଉଡାଇଣ ଦିଅନ୍ତି ।
ଧନ ନୁହେଁ ସୁଖ ଦାୟକ ସାଧୁଜନ ପକ୍ଷରେ,
ଚୋର କରୁଥାଏ ଶରଧା ତାକୁ ନିତି ମନରେ ।
ଧନ, ଜନ, ଜୀବ ଯୌବନ କିଛି ନୁହଁଇ ଚିର,

ଯଶ ଅପଯଶ ଦୁଇଟି କଥା ରହେ ମାତର ।
ମହାତ୍ମା ପଦବୀ ଲଭିବୁ ମନ ମାନେ ଏ ଭବେ,
ସ୍ୱାର୍ଥକୁ ତେଜିଣ ପରାର୍ଥେ ସାଧ କରମ ଭବେ ।

୧୯୭୯୬. ନଡିଆ ତେଲର ଟାଙ୍କି
ଭଲା ଭାଇ ବୋହୂ ଆଣିଲୁ ଘରକୁ,
ମଲି ମୁଁ କୁଣ୍ଡିଆ ରାମ୍ଫି ।

୧୯୭୯୭. ନଇଁ ପଡିବ ପୂରା ଚାଷ,
ହିଡ ବସାର ଅଧାଚାଷ ।
ପିଣ୍ଡାରେ ବସି ଯେ ପଚାରେ ଚାଷ,
ତାର କାହିଁ ପାଇଁ ଚାଷରେ ଆଶ ।

୧୯୭୯୮. ନାଆ ଉପରେ ଶଗଡ ଯାଉଛି,
କେତେବେଳେ ଶଗଡ ଉପରେ ନାଆ ଯାଉଛି ।
(ବନ୍ଧୁ ବନ୍ଧୁକୁ ସାହାଯ୍ୟ କରେ । ଏହା ଦୁଇପକ୍ଷର ବିଷୟ । କେତେବେଳେ ଶଗଡରେ ନୌକା ନିଆ ହୋଇଯାଏ, ପୁଣି କେତେବେଳେ ନୌକା ଶଗଡକୁ ନଈ ପାରି କରାଏ ।)

୧୯୭୯୯. ନାଆଁକୁ ଧନ୍ୱନ୍ତରୀ, ଚିକିତ୍ସାରେ ଯମ ।
(କୁଚିକିତ୍ସକ ପ୍ରତି ବ୍ୟଙ୍ଗ ।)

୧୯୮୦୦. ନାଆଁକୁ ଭେଣ୍ଡା, ଗୋଡ ଦିଟା ଶଗଡ ଦଣ୍ଡା ।
(ଦେହ ତୁଳନାରେ ଗୋଡ ଶଗଡ ଦଣ୍ଡା ଭଳି ଅନେକ ଲମ୍ବା ।)

୧୯୮୦୧. ନାଆଁକୁ ରାଣୀ, ବୁଝିଲା ବେଳକୁ ଅନ୍ଧାର କାଣୀ ।
(ତଥା କଥିତ ଧନୀ, କ୍ଷମତାଶାଳିନୀ କିନ୍ତୁ ଦୁର୍ବଳ ଚରିତ୍ରର ସ୍ତ୍ରୀଲୋକ ।)

୧୯୮୦୨. ନଆକେ, ବୋହୂ ଭାତ ଖାଉନାହିଁ ପାଆକେ ।
(ବୋହୂ ଭାତ ନ ଖାଉଛି ବୋଲି ଗଣକକୁ ପଚରା ହେଉଛି ।)

୧୯୮୦୩. ନାଆଁ ଭାରୀ, ମଲ୍ଲ ପିଠିରେ ଗଣ୍ଡିରା ।

୧୯୮୦୪. *ଏକାର୍ଥରେ*- ନାମ ବଡା ଦରଶନ ଥୋଡା ।

୧୯୮୦୫. ନାଆଁ ପଧାନ, ଗାଆଁ ପଧାନ,
ପଧାନ ପାଖରେ ଥାଇ ପଧାନ ।

(ରାଜା ନିଯୁକ୍ତ ଗ୍ରାମର ପ୍ରଧାନ ବ୍ୟକ୍ତି । ରାଜସ୍ୱ ଅସୁଲକାରୀ କର୍ମଚାରୀ । ଗ୍ରାମ ପ୍ରଧାନଙ୍କ ପାଖରେ ରହି ପ୍ରଧାନ ବୋଲାଉଥିବା ବ୍ୟକ୍ତି ।)

୧୯୮୦୬. ନାଆଁ ମାହାନ୍ତି, ଗାଆଁ ମାହାନ୍ତି,
ମାହାନ୍ତି ପାଖରେ ଥାଇ ମାହାନ୍ତି,
ପାଞ୍ଜି ପତର ବୋହି ଥାଆନ୍ତି ।
(ସବୁ ମାହାନ୍ତି ସମାନ ନୁହନ୍ତି । ଗାଁ ମହାନ୍ତି ଶ୍ରେଷ୍ଠ, ଯାହାର ସଞ୍ଜା ମହାନ୍ତି ବା ଯେ ଛାମୁ କରଣ, କୋଠା କରଣ, ଦେଉଳ କରଣ । ଗୁମାସ୍ତା ବା ମୋହରିରଙ୍କ କାଗଜ ପତ୍ର ଯେ ବୁହନ୍ତି ସେ ଗାଁ ମାହାନ୍ତିଙ୍କ ସମାସ୍କନ୍ଧ ହୋଇ ପାରନ୍ତି ନାହିଁ ।)

୧୯୮୦୭. ନାଇକ ଜାଣି ପାଇକ ଉଠିଆ ।
(ଉପର ହାକିମ କର୍ମତତ୍ପର ହେଲେ ତଳ କର୍ମଚାରୀମାନେ କାର୍ଯ୍ୟ କରିବା ଦିଗରେ ତତ୍ପର ହୋଇଥାନ୍ତି ।)

୧୯୮୦୮. ନାଇ ଦେଖି କରି ପାଡେ ଜୁହାରା ।

୧୯୮୦୯. *ଏକାର୍ଥରେ* - ନଈ ନ ଦେଖି ଲଙ୍ଗଳା ।

୧୯୮୧୦. ନାଉ ଚୋର, କଖାରୁ ଚୋର, ହଉ ହଉ ବଡ ଚୋର ।
(ଛୋଟ ଛୋଟ ଚୋରୀ କରୁ କରୁ ଲୋକ ବଡ ବଡ ଚୋରୀ କରେ ।)

୧୯୮୧୧. ନାଉରୀ ଦୁହା ନକର (= ରାଗ କରନା) ମତେ,
ନିରାଶ କରି ନଯିବି ତତେ ।

୧୯୮୧୨. ନାଉରୀ (= ଫସଲର ଉପକାରୀ ପୋକ) ପଡିଲେ ଥୋଇବୁ କାହିଁ ?
ଗିରିଆ (= ଫସଲ ନଷ୍ଟକାରୀ ପୋକ) ପଇଲେ ରହିବ କାହିଁ ?

୧୯୮୧୩. ନାଉ ଫୁଲ ଦାଉ ଦାଉ,
କବାଟ କଣରେ କି କଥା କହୁ ଲୋ?
ଭାତ ହୋଇଗଲା ଜାଉ ।

୧୯୮୧୪. ନାଉ ଫୁଲ ଦାଉ ଦାଉ,
ଭଣ୍ଡାରୀ ଘରେ ତ ଚୋର ପଶିଲା,
ନେଇଗଲା ନୂଆବୋହୂ ।

୧୯୮୧୫. ନାକ କାଟିଲେ ବଚନ ବାହାରେ ନାହିଁ ।
(ଯେତେ କଷ୍ଟ ପାଇଲେ ବି ଦୁଃଖ ଗୁହାରି ଜଣାଏ ନାହିଁ । ନିରୀହ ବ୍ୟକ୍ତି ।)

୧୯୮୧୬. ନାକ କାଟିଲେ ମୁହଁରେ ପଡେ ।
(ମଣିଷ ନିଜେ ନିଜର ବହୁ କ୍ଷତି ସାଧନ କରେ ।)

୧୯୮୧୭. *ଏକାର୍ଥରେ*- ଆପଣା ହସ୍ତେ ଜିହ୍ୱା ଛେଦି, କେ ତାର ଅଛି ପ୍ରତିବାଦୀ ।

୧୯୮୧୮. ନାକଚଣା ବୋଲି ଖଣ୍ଡେ,
ତାକୁ ବୋହୂ ନାଉଥାଏ ଦଣ୍ଡେ,
ତାକୁ ଶାଶୁ ନାଉଥାଏ ଦଣ୍ଡେ । (ଦରିଦ୍ରର ବେଶ ଭୂଷଣ ପ୍ରତି ବ୍ୟଙ୍ଗ ।)

୧୯୮୧୯. ନାକ ଟାଉଁ ଟାଉଁ କରୁଛି, ପରର ନିରିଖି ମରୁଛି ।
(ଅନ୍ୟର ଧନ ଦେଖି ଈର୍ଷା କରୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୮୨୦. ନାକ ଧରି ଟାଣିଲେ ମୁହଁ ଆପେ ଆପେ ଆସେ ।
(ମୁଖିଆକୁ ଜବତ୍ କଲେ ତା ଦଳର ଲୋକଙ୍କୁ ଧରିବା ସହଜ ହୁଏ ।)

୧୯୮୨୧. ନାକ ନିକଟକୁ ଜିଭ ନ ଯାଏ ।
(ମଇଳା ଜାଗାକୁ ଯିବାରେ ଉତ୍ତମ ଲୋକର ସ୍ୱଭାବଗତ ସଂକୋଚ ଥାଏ ।)

୧୯୮୨୨. ନାକଫୁଲେଇର ଅଶେଷ ଗୁଣ, ହାଣ୍ଡିରେ ଖାଏ ସେ ଭାତ, ତୁଣ ।

୧୯୮୨୩. ନାକବାଳ ଧରେଇବା ।
(ଶାସ୍ତିଦେବା । ପୂର୍ବକାଳରେ ଅବଧାନମାନେ ଚାଟଶାଳୀରେ ଏହି ଦଣ୍ଡ ଦେଉଥିଲେ ।)

୧୯୮୨୪. ନାକ ବୁଡ ହେଲେ ବଡ ଲୋକ, କେଭେଁ ନ ଛାଡେ ନିଜ ଟେକ ।
(ଯେତେ ଦୁଃଖରେ ପଡ଼ିଲେ ବି ବଡ଼ଲୋକ ନିଜର ମହତ୍ତ୍ୱ ତ୍ୟାଗ କରେ ନାହିଁ ।)

୧୯୮୨୫. ନାକର ବକଳ ଛଡାଇ ଖାଏ,
କୁଟୁଣୀ (= ପରଘରେ ଧାନ କୁଟି ଚଳୁଥିବା ସ୍ତ୍ରୀଲୋକ) ଦେଖିଲେ କଟେଇ ଥାଏ ।

୧୯୮୨୬. ନାକରେ ନିଶ୍ୱାସ ଥାଉ, ମଣିଷକୁ ବିଶ୍ୱାସ ନାହିଁ ।
(ନାକରେ ନିଶ୍ୱାସ ଚାଲୁଥିବା ପର୍ଯ୍ୟନ୍ତ ମଣିଷକୁ ବିଶ୍ୱାସ ନାହିଁ । ସେ ମରିବ କି ବଞ୍ଚିବ କହିହେବ ନାହିଁ ।)

୧୯୮୨୭. ନାକରେ ନୋଲକ ନାଇ,
ବସିଥାଏ ଚାନ୍ଦମୁହାଁ, ପଲକ ପକାଏ ନାହିଁ ।

୧୯୮୨୮. ନାକରେ କଳି, ବେକରେ ମାଳି,
ହୃଦରେ କାଳୀ, ତେବେ ସେ ବୋଲାଏ ଶୁଦ୍ଧ ବଙ୍ଗାଳୀ ।
(ବଙ୍ଗାଳୀମାନେ ବୈଷ୍ଣବଙ୍କ ପରି ନାକରେ କଳି ଚିତା ଲଗାନ୍ତି । ବେକରେ ତୁଳସୀ ମାଳି ପିନ୍ଧନ୍ତି । ଏଣେ କାଳୀଙ୍କୁ ଉପାସନା କରନ୍ତି । ସେମାନେ ବାହାରେ ବୈଷ୍ଣବ, ଭିତରେ ଶାକ୍ତ ।)

୧୯୮୨୯. ନାକରେ କାଠି ପୁରାଇ ଛିଙ୍କିବା ।
(ଜାଣିଶୁଣି ବିପଦକୁ ବରଣ କରିବା ।)

୧୯୮୩୦. ନାକେଇ (=ଯାହାର ନାକ ବଡ଼) ନାକରେ ଗୁଣା,
ପାକେଇ ଖାଉଛି ଚଣା, କୁମ୍ଭାର ଉହାରେ ଚାହୁଆ ଟଣା,
ଏ ସବୁ ବିଡମ୍ବନା ।
(ଅସ୍ଥାନରେ ଉତ୍ତମ ଦ୍ରବ୍ୟର ବ୍ୟବହାର । ଏହା ନଷ୍ଟଭ୍ରଷ୍ଟ ହୋଇଥାଏ ।)

୧୯୮୩୧. ନାଗର ପୁଅ ନାଗ, ବାଘର ପୁଅ ବାଘ ।
(ବାପ ଯେମିତି, ପୁଅ ସେମିତି ।)

୧୯୮୩୨. ନାଗର ରସିକ ବିନା କେ ଚିହ୍ନଇ ରସ ?
ନହେଲେ ଭ୍ରମର ଫୁଲେ କେ ହୋଇବ ବଶ ?

୧୯୮୩୩. ନାଚି ନଜାଣି ଅଗଣାର ଦୋଷ ।
(ନିଜ ଦୋଷ ଘୋଡାଉଥିବା ବ୍ୟକ୍ତି ପ୍ରତି କଟାକ୍ଷ ।)

୧୯୮୩୪. ନାଚିଲା ଲୋକକୁ ଲାଜ ନାହିଁ, ଦେଖିଲା ଲୋକକୁ ଲାଜ ।
(ନିର୍ଲ୍ଲଜ ଯେ କୌଣସି ଲଜ୍ଜା ଜନକ କାର୍ଯ୍ୟ କରେ । ସେ କାର୍ଯ୍ୟ ଦେଖିଲେ ମର୍ଯ୍ୟାଦାବନ୍ତ ବ୍ୟକ୍ତି ଲଜ୍ଜିତ ହୁଏ । )

୧୯୮୩୫. ନାଛ (=ନାସ), ମାଛ, ସଙ୍ଗୀତ, ବାଣ, ଏ ଚାରି ଶାସନୀଙ୍କ ପ୍ରାଣ ।
(ଶାସନୀ ବ୍ରହ୍ମଣ ନାସ ଶୁଙ୍ଘନ୍ତି, ମାଛ ଖାନ୍ତି, ଓଡଶୀ ସଙ୍ଗୀତ ଆସରରେ ଯୋଗ ଦିଅନ୍ତି । ଶୀତଳ ଷଷ୍ଠୀ ଓ ଚମ୍ପକ ଦ୍ୱାଦଶୀରେ ବାଣ ପ୍ରତିଯୋଗିତା କରନ୍ତି ।)

୧୯୮୩୬. ନାଁଟି ମୋର ଘର,ନକର ମୋତେ ପର ।

୧୯୮୩୭. ନାଟୁଆଠାରୁ ଦିହୁଡିଆ (= ଯେ ଦିହୁଡି ଦେଖାଏ) ଖର ।
(ପୂର୍ବକାଳରେ ନାଟୁଆ ନାଚିଲାବେଳେ ଦିହୁଡ଼ିଆ ଆଗେ ଆଗେ ମଶାଲ ଧରି ଯାଉଥିଲା । ତା'ପରେ ନାଟୁଆ ପଛେ ପଛେ ମଶାଲ ଧରି ନଙ୍ଗଳ ପଙ୍ଗଳ ହେଉଥିଲା ।)

୧୯୮୩୮. ନାଣ୍ଡୀ ବରଗଛ ଛାଇ,
ନାଣ୍ଡିକୀ ଘେନି ମୁଁ କି ଘର କରିବି,
ନାଣ୍ଡୀ ତ ବିନ୍ଧଣା ଗାଈ (= ମାରଣା ଗାଈ) ।

୧୯୮୩୯. ନା ତନ୍ତୀ ବା ବଉଷମ କୂଳ, ନା ଏ କୂଳ ନା ସେ କୂଳ ।
(ସଂଶୟ ମଣିଷର ସର୍ବନାଶ କରେ । ଏ କୂଳକୁ ଯିବ କି ସେ କୂଳକୁ ଯିବ, ବିଚାରୁ ବିଚାରୁ ସେ ମଝି ନଈରେ ବୁଡି ମରେ ।)

*ଏକାର୍ଥରେ* - ଏ କୂଳ ହେଲା ନା ସେ କୂଳ ହେଲା
ମଝି ନଈରେ ବୁଡ଼ି ମରିଲା ।

୧୯୮୪୦. ନାଥିଆ, ଅଟୁ ତ ବିଣଲ ପାଡିଆ (= ଦୁଷ୍ଟ),
କଦଳୀ ବୋଲି କାଠିଆ, ଗଡି ଗଡି ଗଲା ମାଠିଆ ।

୧୯୮୪୧. ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ । (ଉଦ୍ଧାର ହେବାର ଅନ୍ୟ ବାଟ ନାହିଁ ।)

୧୯୮୪୨. ନାନା ମୁନିଙ୍କ ନାନା ମତ । (ବିଭିନ୍ନ ପ୍ରକାର ଲୋକଙ୍କର ବିଭିନ୍ନ ପ୍ରକାର ମତ ।)

୧୯୮୪୩. *ଏକାର୍ଥରେ* - ନାନା ମୁନୀନାଂ ମତୟଶ୍ଚ ଭିନ୍ନାଃ ।

୧୯୮୪୪. ନାଁ ନାହିଁକି ଗାଁ ନାହିଁ, ସ୍ୱର୍ଗରୁ ଗଳି ପଡ଼ିଲା କି ?
(ଜଣାଶୁଣା ନାହିଁ, ହଠାତ୍ କେହି ଆସିଗଲେ, ଏହା ପ୍ରଯୁକ୍ତ ହୁଏ ।)

୧୯୮୪୫. ନାନୀଲୋ, ତୋ କଥା ତୁ ଜାଣୁ,
ତୋ ବେଳକୁ ହାପୁରା ହାପୁରି,
ମୋ ବେଳକୁ ଛାଣୁ । (ପକ୍ଷପାତୀ ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୮୪୬. ନା ବଡ ନଅରେ (=ରାଜା ଘରେ) ସେବା,
ମାଗିଲେ ବୋଲେ ଦେବା ଦେବା ।
(ରାଜାଙ୍କ ବଡ କର୍ମଚାରୀ, କିନ୍ତୁ କୃପଣ । ଦରିଦ୍ର ମାଗିଲେ ଦେବା ଦେବା କହୁଥାଏ,
ଦିଏ ନାହିଁ । ବ୍ୟଙ୍ଗ ।)

୧୯୮୪୭. ନାମ ଚଉଧୁରୀ (= ସମ୍ମାନ ସୂଚକ ଉପାଧି) କାଞ୍ଜି ଭୋଜନ ।
(ବଡ ଲୋକର ଦରିଦ୍ର ଚଳଣୀ । ତାଲୁକର ପ୍ରଧାନ କର୍ମଚାରୀ ହେଲେ ବି ତାଙ୍କର
ଚଳଣି ଦରିଦ୍ରଙ୍କ ପରି ।)

୧୯୮୪୮. ନାମ ବଡା, ଦରଶନ ଥୋଡା ।
(ବଡ ବା ପ୍ରସିଦ୍ଧ ଲୋକର ତୁଚ୍ଛ ଚଳଣି ଦେଖିଲେ ଏହି ଉକ୍ତିର ପ୍ରୟୋଗ ହୁଏ ।)

୧୯୮୪୯. ନାରଣିଆ ବାହା ହଉଚି, ମୋ ମନ ଯାହା ହଉଚି ।

୧୯୮୫୦. *ଏକାର୍ଥରେ*- ତାହାର ଦେଖି, ମୋର ତେଢ଼ିଚି ଡାହାଣ ଆଖି ।

୧୯୮୫୧. ନାରଙ୍ଗ ପାଟଣା, ଅଘଟଣ ଘଟଣା, ମରଦଯାକଇ ବଳଦ,
ବୁଢୀଯାକ ହେଲେ ନାହୁଲୀ ଖେଣ୍ଡେଇ (=ମିଛେଇ) ଭୁଆସୁଣୀ ହେଲେ ମରଦ ।

୧୯୮୫୨. ନାରଦ ମୁନି,
ଅଇଲେ କଳି ଧୋକଡି ଘେନି,
ତିନି ଭୁବନର ବାରତା ଘେନି ।

୧୯୮୫୩. ନାରାଦ ଋଷି, କଡିରେ ବସି, ମରଇ ଋଷି ।
(ଋଷି ବସିଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।)

୧୯୮୫୪. ନାରୀକି ସୁନ୍ଦର ନାଟ, ଯୋଗୀକି ସୁନ୍ଦର ମଠ
କେଳାକୁ ସୁନ୍ଦର ହଟ, ରାଜାକୁ ସୁନ୍ଦର ଭାଟ,
ଆହୁରି ସୁନ୍ଦର ବୁଢାବୁଢୀଙ୍କର ଭେଟ ।

୧୯୮୫୫. ନାରୀଙ୍କ ମାୟା ବଡିପାଣି, ବ୍ରହ୍ମା ଯେ ନପାରିଲା ଜାଣି ।

୧୯୮୫୬. ନାରୀଙ୍କ ଅନୁସରଣିଆ ପାଏ ଦିବ୍ୟଗ୍ରାସ
ସିଂହ ଖାଏ ଭଇ ମାଉଁସ, ଷଣ୍ଢ ଚରଇ ଘାସ ।
(ସିଂହ ଦୁର୍ଗାଙ୍କ ବାହାନ, ସେ ମାଂସ ଖାଇବାକୁ ପାଏ । କିନ୍ତୁ ଶିବଙ୍କ ବାହାନ ଷଣ୍ଢ ଘାସ ଖାଏ ।)

୧୯୮୫୭. ନାରୀ ନାଶ ଯାଏ ହାଟକୁ ଯାଇ, ପୁରୁଷ ନାଶ ଯାଏ ଉପାସେ ଶୋଇ ।

୧୯୮୫୮. ନାରୀ ନାଶଯାଏ ଘାଟେ, ପାଣି ନାଶଯାଏ ଫାଟେ,
ନାମ ନାଶଯାଏ ହାଟେ, ଗୀତ ନାଶଯାଏ ବାଟେ ।

୧୯୮୫୯. ନାରୀ ରତନ,
ଯେମିତି ପୁରୁଷର ହାତ ଧରେ, ସେମିତି ଯତନ ।

୧୯୮୬୦. ନାରୀରେ ମରେ, ତହିଁରୁ ବଞ୍ଚିଲେ ସଂସାର ସାରେ ।
(ନାରୀ ଆଉ ସଂସାର ଜଞ୍ଜାଳ ପୁରୁଷକୁ ନିଃଶେଷ କରେ ।)

୧୯୮୬୧. ନାଲି କଇଁଚ ନାଲି କଇଁଚ, କଥାରେ କଥାରେ ରଖୁଛ ପେଞ୍ଚ ।

୧୯୮୬୨. ନାଲି ଚକ୍ଷୁ ଯାହାର, ରାଜ ଲକ୍ଷଣ ତାହାର,
ଯେବେ ନାହିଁ ରାଜ ଲକ୍ଷଣ, ତେବେ ଜାଣିବ ଗଞ୍ଜା ଖିଆ ଲକ୍ଷଣ ।

୧୯୮୬୩. ନାଲିଆ ଟୋକେଇ, ପୁଞ୍ଜି ପୁଞ୍ଜିକା ଲୋ,
ଶୋଲ ଶାଗ ତୋଳିବାକୁ;
ବାପ ଦେଇଅଛି, ବୁଢା ବରକୁ ଲୋ,
ଚାଳ ଧରି କାନ୍ଦିବାକୁ ।
ଚାଳ ଧରି କାନ୍ଦୁଥିଲି,
କିଏ ସେ କହିଲା ବାପା ଆସିଛି ଲୋ;
ଲୁହ ପୋଛି ପାଣି ଦେଲି,
ଶାଶୂତ କହିଲା ଭଲା,
ନିଖୁଣ୍ଟୀ ଝିଅର ଏଡେ ଗାରିମା ଲୋ,
ଲୁହ ପୋଛି ପାଣି ଦେଲା ।

୧୯୮୬୪. ନାକୁଆ ମୁହଁର ଖଇଁଚି,
ବୁଢୀ ଢଟ ପାରିଦେଇ ବସିଛି, ବୁଢା ଆସିବ କହୁଚି ।

୧୯୮୬୫. ନାକୁଆ ମୁହଁରେ ଚନ୍ଦା,
ପୋହଳା ମାଛକୁ ଏତେ ଶରଧା,
ଟଙ୍କା ମାଳ ଦେଲି ବନ୍ଧା ।
(ପୂର୍ବେ ସ୍ତ୍ରୀମାନେ ରୂପାଟଙ୍କାର ମାଳ ପିନ୍ଧୁଥିଲେ । ଦରକାର ହେଲେ ତାକୁ ବନ୍ଧା ଦେଇ ଜିନିଷପତ୍ର କିଣୁଥିଲେ ।)

୧୯୮୬୬. ନାଳେ ନାଳେ ଗଲି, ତରାଟ ଖୋସିଲି,
ତରାଟରେ ମନ ରହିଲା,
ନିକୁଞ୍ଜ ବନରେ, ଦିହ ଛୁଆଁଛୁଇଁ,
ଆଉ ଦିନେ ଭେଟ ନୋହିଲା ।

୧୯୮୬୭. ନାହଙ୍କରାତ୍ ପରୋ ରିପୁଃ ।
(ଅହଂକାର ଠାରୁ ମଣିଷର ବଡ ଶତ୍ରୁ ଆଉ କିଛି ନାହିଁ ।)

୧୯୮୬୮. ନାହାକ ପଣ୍ଡିତ ନ କହନ୍ତି ସତ,
ଦୁଆରେ ଦୁଆରେ ମାଗନ୍ତି ଭିକ ।

୧୯୮୬୯. ନାହକ, ବ୍ରାହ୍ମଣ, ବରଷା, ବଢି,
ଦକ୍ଷିଣା ପାଇଲେ ଯାଆନ୍ତି ଛାଡି ।
(ପ୍ରାପ୍ୟ ପାଇଲା ପରେ ବ୍ରାହ୍ମଣ ନାହାକ ଚାଲିଯାନ୍ତି । ଦକ୍ଷିଣା ପବନ ହେଲେ ବର୍ଷା, ନଈବଢି ଛାଡିଯାଏ । )

୧୯୮୭୦. ନାହିଆ (= ରୋଗ) ମାଇଲା ମାଛ,
ନାହିଁ କରୁ କରୁ ପଶିଯାଉଛି, ଖାଇବ ତିନ୍ତୁଳି ଛାଟ ।
(ନାହିଆ ରୋଗ ଧରିଲେ ମାଛ ସବୁ ମରିଯା'ନ୍ତି । ମାଛକୁ ରୋଗ ହେଲେ ତାକୁ ଧରିବାକୁ ନିଷେଧ କରାଯାଉଛି ।)

୧୯୮୭୧. ନାହିଁ ନାହିଁ କରୁଥିବ,
ଗନ୍ଧିଆ ତିଅଣ, ପୋଚିଆ ଭାତ, ହାଉଁ ହାଉଁ ମାରୁଥିବ ।
(ନିର୍ଲ୍ଲଜ ପ୍ରତି ବ୍ୟଙ୍ଗ ।)

୧୯୮୭୨. *ଏକାର୍ଥରେ* - ନାହିଁ ନାହିଁ ହେଉଥାଏ,
ଅଲଣା ଭାତକୁ, ଅଲଣା ତିଅଣ, ଗେବି ଗେବି ଦେଉଥାଏ ।

୧୯୮୭୩. ନାହିଁ ମାମୁଁଠାରୁ କଣାମାମୁଁ ଭଲ ।
(କିଛି ନ ମିଳିବାଠାରୁ କିଛି ମିଳିବା ଭଲ । ଇଂରାଜୀରେ - Half a loaf is better than no bread)

୧୯୮୭୪. ନାହିଲେ ତେଲ ପକାଇ ଶୋଇବା ।
(ଅତି ନିଶ୍ଚିନ୍ତ ହୋଇ ରହିବା ।)

୧୯୮୭୫. ନାହି ଲେଉଟେ, ପୀଢା ଫାଟେ ତେବେ ସେ ବ୍ରାହ୍ମଣ ଠା ନ ଉଠେ ।
(ଅତିରିକ୍ତ ଭୋଜନ ପରେ ନାହି ଲେଉଟେ ବୋଲି କୁହାଯାଏ । ବହୁତ ଖାଇ ଓଜନ ପୀଢା ଫାଟିଯାଏ । ତେବେ ବି ଲୋଭୀ ବ୍ରାହ୍ମଣ ଖାଇବା ସ୍ଥାନରୁ ଉଠେ ନାହିଁ ।)

୧୯୮୭୬. ନାହିଁ ଲୋ ଜାତି ମୋର ନାହିଁ ଲୋ ଘର, ପାଠ ପଢିଛି ବଡ ଗୁଣର ବର ।
(ଘରଦ୍ୱାର ନଥିବା ଘରେ ବିବାହିତା ସ୍ତ୍ରୀ ଦାମ୍ପତ୍ୟ ଜୀବନ ସୁଖକର କାରଣ ସ୍ୱାମୀର ବଡ଼ଗୁଣ ହେଲା ସେ ପାଠ ପଢ଼ିଛି । ତେଣୁ ଜାତିପତି, ଧନରତ୍ନ, ଘରଦ୍ୱାର ଠାରୁ ବିଦ୍ୟା ଓ ଜ୍ଞାନ ଶ୍ରେଷ୍ଠତର ।)

୧୯୮୭୭. ନାଇକ ଜାଣି ପାଇକ ଉଠିଆ ।

୧୯୮୭୮. ନାକରା ହୁଅନା ।

୧୯୮୭୯. ନାକଚ ହେଲା ।

୧୯୮୮୦. ନାକେଦମ୍ କରୁଛି ।

୧୯୮୮୧. ନାକଫୋଡା ବଳଦ ।

୧୯୮୮୨. ନାକ ବଡ ଟେକ ବଡ ।

୧୯୮୮୩. ନାକ କଟା କଲା ।

୧୯୮୮୪. ନାକ ଯାଉଛି କି ବାଳ ଯାଉଛି ?

୧୯୮୮୫. ନାକ ଚୁଁ ଚୁଁ ପିଉଳ ଗୁଣା ।

୧୯୮୮୬. ନାହିଁକୁ ଉପାୟ ନାହିଁ, ମଲାକୁ ଔଷଧ ନାହିଁ ।

୧୯୮୮୭. ନାକର ସଳଖେ ଯାଆ ଚାଲି ।

୧୯୮୮୮. ନାଗର ପୁଅ ଡେଣ୍ଡୁ ହେଲା ।

୧୯୮୮୯. ନାଜୀ ପାଜୀ ନାଶିଲେ ଜଗତ୍ ।

୧୯୮୯୦. ନାସ କରେ ନାଶ - ବାସ ବାସବାସ ।

୧୯୮୯୧. 'ନାଖ' 'ନିଆ' 'ନତୁ' ନା ଲାଖ ଛିଆଇତୁ (=ହାରାଖଣ୍ଡ) ?

୧୯୮୯୨. ନାଗରବର ପୁନାଶାନା ନାଶାନା ପୁର ବରଗନା ।
କାଳିଦାସ ବିନାଶାନା ନାଶାନା ବିଷଦାଳିକା । (ମେଷ ଯୁଦ୍ଧ)

୧୯୮୯୩. ନାତି ପଣନାତି ଯେ ଦୁହିତା ପୁତ୍ର ଯାଏ ।
ସମସ୍ତଙ୍କୁ ଲାଗେ ପାର୍ଥ ଥୋକାଏ ଥୋକାଏ ।

୧୯୮୯୪. ନାଗର ପୁଅ ନାଗ । ବାଘର ପୁଅ ବାଘ ।
(ଯାହାର ବାପ ଯେପରି ତାହାର ପୁଅ ସେହିପରି ଅଟେ । ଦେଖ ନାଗସର୍ପର ବିଷ ଯେପରି ଉତ୍କଟ, ତାହାର ପିଲାର ବିଷ ଉତ୍କଟ ଏବଂ ବାଘ ଯେପରି କ୍ରୁର, ତାର ଛୁଆ ମଧ୍ୟ ସେହିପରି କ୍ରୁର । ଏହା ଯେପରି ଲୋକରେ ଦେଖାଯାଏ । ସେହିପରି ଗୁଣୀର ପୁଅ ଗୁଣୀ ଏବଂ ଚୋରର ପୁଅ ଚୋର । ଏହି ଢଗ ଅନୁଯାୟୀ ସଂସ୍କୃତରେ ମଧ୍ୟ ଗୋଟିଏ ଢଗ ଅଛି । 'ଜନକ ସଦୃଶ କାର୍ଯ୍ୟଂ ଜନ୍ତୁ ଗୁହ୍ୟାଚେଳତି ।')

୧୯୮୯୫. ନାଗର ନଗରେ ଯାଇ ।
ଘରେ ଭାତ ନାହିଁ ଭୋକେ ଶୋଇ ।
(ଦରିଦ୍ର ବ୍ୟକ୍ତି ଭଲ ଶୁଭ୍ର ଲୁଗାପିନ୍ଧି, ସାର୍ଟ ଓ କୋଟ୍‌ରେ ଦେହ ଆଚ୍ଛାଦିତ କରି ଯୋତା ପିନ୍ଧି ଧନୀ ଭଦ୍ର ସନ୍ତାନମାନଙ୍କ ସହିତ ନଗର ଭ୍ରମଣ କରିବାକୁ ଯାଏ । ପୁନର୍ବାର ଘରକୁ ଫେରିଲା ସମୟରେ ଚାଉଳ ଶାକ ପ୍ରଭୃତି ନଥିବାରୁ ଘରେ ରନ୍ଧା ହୋଇନାହିଁ ଏଣୁ ଭୋକରେ ଶୋଇପଡେ । ଯେପରି- ଦରିଦ୍ର ବ୍ୟକ୍ତି ଆପଣା ଉଦର ପୋଷିବା ସକାଶେ କାର୍ଯ୍ୟ ନକରି ଧନୀ ଭଦ୍ର ସନ୍ତାନ ମାନଙ୍କ ସହିତ ନଗର ଭ୍ରମଣ କରିବାକୁ ଗଲେ, ସେ ଘରର ସମସ୍ତ ଲୋକେ ଅନ୍ନାଭାବରୁ ଭୋକେଇହି ବହୁକଷ୍ଟ ପାଆନ୍ତି । ଏହି ଭାବରେ ଏହି ଢଗ ବୋଲା ଯାଇଅଛି ।
*ତାତ୍ପର୍ଯ୍ୟ-* କୌଣସି ବ୍ୟକ୍ତି କାର୍ଯ୍ୟ ନକରି ବୃଥାରେ କାଳ ଯାପନ କଲେ ସେ ଗରିବ ହୋଇଯାଏ ଏବଂ ତାହାର ମର୍ଯ୍ୟାଦା କ୍ଷୁର୍ଣ୍ଣ ହୁଏ ।)

୧୯୮୯୬. ନା ବଡ ନହରେ ସେବା । ମାଗିଲେ ବୋଲେ ଦେବା ଦେବା ।
(ରାଜବାଟିରେ କାର୍ଯ୍ୟ କରୁଥିବା ଜଣେ ଉଚ୍ଚ କର୍ମଚାରୀକୁ ଦରିଦ୍ର ବ୍ୟକ୍ତିଟିଏ କିଛି ମାଗିଲେ, ତାହାକୁ ସେ ଦେବି ଦେବି ବୋଲି କାଳହରଣ କରେ, ମାତ୍ର କେବେ ଦିଏନାହିଁ । ଏପରିସ୍ଥଳେ ଏହି ପ୍ରବାଦଟି ପ୍ରଯୁଜ୍ୟ ।)

୧୯୮୯୭. ନାକରେ କଳି । ବେକରେ ମାଳି । ହୃଦରେ କାଳି ।
ତେବେ ସେ ବୋଲାଏ ଶୁଦ୍ଧ ବଙ୍ଗାଳି ।
(ବଙ୍ଗାଳିମାନେ ଶୁଦ୍ଧ ବୈଷ୍ଣବ ପରି ନାକରେ କଳି, ଟିକା ଧାରଣ କରନ୍ତି, ଗଳା ଦେଶରେ ତୁଳସୀ ମାଳି ଧାରଣ କରନ୍ତି । ମାତ୍ର ହୃଦୟରେ କାଳୀଙ୍କୁ ଉପାସନା କରନ୍ତି ।
*ତାତ୍ପର୍ଯ୍ୟ-* ବଙ୍ଗାଳିମାନେ ବାହାରେ ବୈଷ୍ଣବ ପରି ଦେଖାଉଲେ ମଧ୍ୟ ସେମାନେ କେବଳ ଶାକ୍ତ ଅଟନ୍ତି ।)

୧୯୮୯୮. ନାସିକା ବୈରୀ ଗଞ୍ଜନ ମହାପାତ୍ର,
ଟିକିଏ ଟିକିଏ ପାଞ୍ଚଣ ଉଠାଇଲେ ଯୋଡନ୍ତି କରପତ୍ର ।

୧୯୮୯୯. ନାକକୁ ବୁଲାଇ କରି ଦେଖାଇବା । ନ୍ୟାୟ ।

୧୯୯୦୦. ନାକ ନିଶ ତଳେ ଲାଗିବା । ନ୍ୟାୟ ।

୧୯୯୦୧. ନାକରେ କାଠି ପୂରାଇ ଛିଙ୍କି ହେବା । ନ୍ୟାୟ ।

୧୯୯୦୨. ନାକରେ ଲଙ୍କା ମରିଚ ପାଣି ଟେଣ୍ଡାଇବା । ନ୍ୟାୟ ।

୧୯୯୦୩. ନାକରେ ପଶି ପାଟିରେ ବାହାରିବା । ନ୍ୟାୟ ।

୧୯୯୦୪. ନାକ ବଡ ହେଲେ ଗାଲୁଆ ଲୋକ,
କେବେ ହେଁ ନଛାଡେ ଆପଣା ଟେକ ।

୧୯୯୦୫. ନାକେ ଦଉଡି ବେକେ ପଘା । ନ୍ୟାୟ ।

୧୯୯୦୬. ନାଗକୁ ବାଘ ସରି ନୁହେଁ ।

୧୯୯୦୭. ନାଗର,
ଘରେ ପଶି ଚୋର ସବୁ ନେଲାଣି,
ଜାଳୁଛି ଜାଗର ।

୧୯୯୦୮. ନାଁ ଚନ୍ଦ୍ରଟ ଚମ୍ପା,
ଦେଖିଲା ବେଳକୁ ଗୋଡହାତ କେମ୍ପା ।

୧୯୯୦୯. ନାଛ, ମାଛ, ସଙ୍ଗୀତ, ବାଣ,
ଏ ଚାରି ଶାସନୀ ବ୍ରାହ୍ମଣଙ୍କ ପ୍ରାଣ ।

୧୯୯୧୦. ନାଚି ନଜାଣି ନଚ୍ଚାର ଦୋଷ ।

୧୯୯୧୧. ନାଚୁଆ ଠାରୁ ଦିହୁଡି ଆଖର ।

୧୯୯୧୨. ନାଚୁଆଙ୍କ ଆଡୁ ତେଲ ବିଦାକି କଥା ପଚାରେ କିଏ ।

୧୯୯୧୩. ନାଚୁଆଙ୍କୁ ଦିନ ଶୁଆ ପାଏ,
ହଳୁଆ ବିଚରା ହଳଧରି ଘୁମାଉ ଥାଏ ।

୧୯୯୧୪. ନାଡୁଆ ଗାଈ, କଳିଆ ଭାଇ, ନିଲ୍ଲଜୀ ମାଈ, (ଏଗୁଡିକ ମନ୍ଦ)

୧୯୯୧୫. ନାଁ, ମଦନ ମଞ୍ଜରୀ, ଦେଖିଲେ ବାନ୍ତି ମାଡୁଛି ।

୧୯୯୧୬. ନାନା ମୁନି, ନାନା ମତ ।

୧୯୯୧୭. ନାରୀକୁ ସୁନ୍ଦର ସୁଆଗିଆ କାନ୍ତ,
ହାତୀକୁ ସୁନ୍ଦର ବଡ ବଡ ଦାନ୍ତ ।

୧୯୯୧୮. ନାଲ ଭାଜି (=କଷା ଖାସି ମାଂସ) ବୋଇତି କଖାରୁ,
ତା ମଜା କାହିଁକି ପଚାରୁ ।

୧୯୯୧୯. ନାରାମାୟା ବଡ଼ି ପାଣି,
ଏହାଙ୍କୁ ବ୍ରହ୍ମା ନପାରନ୍ତି ଜାଣି ।

୧୯୯୨୦. ନାରୀଙ୍କର ଅନୁସରଣିଆ ପାଏ ଦିବ୍ୟ ଗ୍ରାସ (=ରିଟେଫ ହେବା),
ସିଂହ ବାପୁଡ଼ା ମାଉଁସ ଖାଏ, ବୃଷଭ ଖାଅଇ ଘାସ ।

୧୯୯୨୧. ନାଁ ସିନା ବୈରୀ ଗଞ୍ଜନ ମହାପାତ୍ର,
କାହା ହାତରେ ପାଞ୍ଚଣ ଦେଖିଲେ, ଯୋଡ଼ନ୍ତି କରପତ୍ର ।
(ନାଁ ଅନୁସାରେ ଲୋକର ଗୁଣ ଜଣାପଡ଼େ ନାହିଁ ।)

୧୯୯୨୨. ନାହାକୁ କାତ, ସାପକୁ ଗାତ,
ଭାଇକୁ ଭାତ, ମାଇପକୁ ଯାତ ।

୧୯୯୨୩. ନାହା ବାଉବାଙ୍କ ଯାଏ,
ନାଉରିଆ ମୁଣ୍ଡ ଖାଏ ।

୧୯୯୨୪. ନାହିଁ କଲା ଯେତେ ବାଧେ ନାହିଁ,
ଅନୁସରଣ ତେତେ ବାଧେ ।

୧୯୯୨୫. ନାହିଁତ ନାହିଁ, ପିତଳ ଗୁଣା କାହିଁ ପାଇଁ ।

୧୯୯୨୬. ନାକ ନାହିଁ ଟୋକିର ନୋଥରେ ମନ,
ଫୁଲେଇ ନାକିର କେତେ ଠମକ ।

୧୯୯୨୭. ନାନା ବୃକ୍ଷରୁ ମଧୁଆଣି
ସଞ୍ଚଇ ନିଜ ଗୃହେ ପୁଣି
ନ ଦେଇ ନ ଖାଇ ସଞ୍ଚଇ ।
ତାହାର ମୁଖେ ଅଗ୍ନି ଦେଇ ।

୧୯୯୨୮. ନାତି - ବୁଢ଼ୀଠଉଁ ମନ ଛାଡୁ ନାହିଁ କି ଏ ଦିନରେ ?
ଆଇ - ପୁରୁଣା ହେଲେତ ବେଶି ତାଇକି ଧାନରେ ।

୧୯୯୨୯. ନାଡ଼ି ଚନ୍ଦର, ଘଡ଼ି ପନ୍ଦର ।
(ହତାଶ, ଆତଙ୍କିତ, କିଂ କର୍ତ୍ତବ୍ୟମୂଢ଼ ଅବସ୍ଥା ।)

୧୯୯୩୦. ନାରୀ ବଧ ପାପ ନ କର ରାଜା
ସରିବ ଆୟୁଷ ପାଇବୁ ସଜା

ନିର୍ଦ୍ଦୋଷୀ ଜନରେ ନାଶି ଜୀବନରେ
ନ ଟେକେ ଭୁବନେ ଅକୀର୍ତ୍ତି ଧ୍ୱଜା ।

୧୯୯୩୧. ନାରୀ ପୁରୁଷ ରୂପେ ନିଜେ ।
ନିଜକୁ କାମ ଭୋଳେ ଖୋଜେ ।
ମାୟା ଅଟଇ ଅବିନାଶି ।
କେହି ନପାରେ ତାକୁ ନାଶି ।

୧୯୯୩୨. ନାସିକା ସୁଦର୍ଶନ କହି, ଅଧର ସୁଭଦ୍ରା ଅଟଇ ।
ନୟନ ଜଗନ୍ନାଥ ଜାଣ, ବଳଭଦ୍ରଟି ଶ୍ରବଣ ।

୧୯୯୩୩. ନାମ ବିନା ସବୁ ମିଛ ମାୟା ଖେଳଘର ।
ନାମ ଏକା ବାନ୍ଧିପାରେ ଅଖିଳ ସଂସାର ॥
ନାମ ବଳେ ସାଧୁସନ୍ଥ ଭେଦିଲେ ବ୍ରହ୍ମକୁ ।
ନାମ ବଳେ ଭକ୍ତ ବୃନ୍ଦ ଗଲେ ବୈକୁଣ୍ଠକୁ ॥

୧୯୯୩୪. ନାରୀ ନଦୀ ନିଆଁ ନାଗେଶ୍ୱରଙ୍କୁ,
ନିରତରେ ଥିବ ଦକା,
ନିମିଷ ମାତ୍ରକେ ଉପୋଧ୍ ଛାଡିଣ,
ନିଶ୍ଚୟ ପକାନ୍ତି ଡକା ।

୧୯୯୩୫. 'ନାରୀକେଳ' ଫଳ ଅଟେ କଠିନ ବାହାରେ
ଅନାୟାସେ କିଏ ତାକୁ ଭାଙ୍ଗି ଅବା ପାରେ ?
ମଧ୍ୟେ ଯାହା ଥାଏ ଧଳା ତାହା ଲାଗେ ମିଠା,
ଖାଲି ଖାନ୍ତି ଅବା କରି କ୍ଷୀରୀ, ପୁରୀ, ମିଠା ।
ତାହାର ଭିତରେ ଥାଏ ଯେ ନିର୍ମଳ ଜଳ,
ଲାଗଇ ମଧୁର କେତେ, କେଶନ ଶୀତଳ ।

୧୯୯୩୬. ନାଳ ତଳେ ତଳେ କେ' କେ ଯାଉଚ ଲୋ,
ଗହମ ଚୂଣା ହୋଇଛି ।
ଭାଉନା ମୁଣ୍ଡକୁ ଖରା କାଟୁଚି ଲୋ,
ବାରିକ ଛତା ଟେକିଛି ।

୧୯୯୩୭. ନାରାୟଣ ଦୀନବନ୍ଧୁ ଗୋବିନ୍ଦ । ଅନନ୍ତ ଅଚ୍ୟୁତ ପରମାନନ୍ଦ ।
ଭବ ଶିବ ହର ଜଗଜ୍ଜୀବନ । କରି ସ୍ମରଣ ସେ କାଟଇ ଦିନ ।
ଧନ୍ୟ ତା ଜୀବନ । ଧନ୍ୟ ପିତା ମାତା ଧନ୍ୟ ସେ ଜନ ।

୧୯୯୩୮. ନାରୀ ମନ ଧନରେ,
ଚକୋର ମନ ଜହ୍ନରେ,
ବାଳୁତ ମନ ଥନରେ,
ନାଟୁଆ ମନ ଜନରେ,(=ଦେଖଣାହାରୀ)
ଦନାଇର ମନକଥା , ରହିଯାଏ ମନରେ ।

୧୯୯୩୯. ନାଭି କାଟି କରି, ଏଚୁରି ଉଛୁାଇ,
ଚନ୍ଦନ କାଠରେ ଆତରା
ତିନିପୁର ଲୋକ, ରୁଣ୍ଡ ହୋଇଛନ୍ତି,
ଦେଖ ନନ୍ଦ ଘରେ ଯାତରା ।

୧୯୯୪୦. ନାରୀ ସଙ୍ଗମ ଋତୁ ମତେ । କେବଳ ପୁତ୍ର ଜନ୍ମ ଅର୍ଥେ ।।
ବାର ମାସରେ ବାର ଥର । ଏଥୁ ଆହୁରି କର୍ମକର ।।

୧୯୯୪୧. ନ୍ୟାୟାତ୍ ପଥଃ ପ୍ରବିଚଳନ୍ତି ପଦଂ ନ ଧରାଃ ।
(ପଣ୍ଡିତ ମାନେ କଦାପି ନ୍ୟାୟ ବାଟ ଛାଡନ୍ତି ନାହିଁ । )

୧୯୯୪୨. ନିଅର୍ଜ୍ଜନିଆର ଗୁଣ୍ଡା ରୋଟ ।
(ମନୁଷ୍ୟ ଗୋଟିଏ ହେଲେ କଉଡି ଅର୍ଜିବା ଶକ୍ତି ନାହିଁ ମାତ୍ର ଖାଇଲା ସମୟରେ ନାନା ପ୍ରକାର ତରକାରୀ ସହିତ ଭୋଜନ କରିବାକୁ ହଟ କରେ ।
*ତାତ୍ପର୍ଯ୍ୟ*- ଯେଉଁ ବ୍ୟକ୍ତି ଗୋଟିଏ ବୋଲି ପଇସା ଉପାର୍ଜନ କରିପାରେନାହିଁ, ସେ ଆପଣା ଘରେ ଯାହା ମିଳେ, ସେଥିରେ ସନ୍ତୁଷ୍ଟ ହେବା ଭଲ । ମାତ୍ର ଅଧିକ ଖାଦ୍ୟ ଲୋଡ଼ିବା ଅନୁଚିତ ।)

୧୯୯୪୩. ନିଅଣ ନଥାଏ ଦିଅଣ ନଥାଏ, ମଣିଆ ମଣିଆ ଡାକ ପଡିଥାଏ ।
(ଯେଉଁଠାରେ ଦିଆନିଆ ନାହିଁ, ଏଭଳି ମିଛ ସୋହାଗ ପ୍ରତି ବ୍ୟଙ୍ଗ । )

୧୯୯୪୪. ନିଆଁ ଖାଇ ଅଙ୍ଗାର ହଗିବା । (ଯେମିତି କାର୍ଯ୍ୟ କରିବ, ସେମିତି ଫଳ ପାଇବ ।)

୧୯୯୪୫. ନିଆଁ, ନଦୀ, ନାଗ, ବାଇ (=ପାଗଳ), ଏମାନଙ୍କ ସଙ୍ଗେ ଖେଳିବ ନାହିଁ ।

୧୯୯୪୬. ନିଆଁ ନଥାଇ କି ଧୂଆଁ ? (କାରଣ ନଥାଇ କାର୍ଯ୍ୟ ଅସମ୍ଭବ ।)

୧୯୯୪୭. ନିଆଁ ନଥାଇ ଧୂଆଁ ନାହିଁ, କାରଣ ନଥାଇ କାର୍ଯ୍ୟ ନାହିଁ ।

୧୯୯୪୮. ନିଆଁ ନାହିଁ ଧୂଆଁ ହଉଚି,
ତିନି ଦିନ ହେଲା ଚୁଲୀ ଲାଗିନାହିଁ, ନିଉତି ଚବତ ଖାଉଛି ।
(ଘରର ଆର୍ଥିକ ଅବସ୍ଥା ଶୋଚନୀୟ । କିନ୍ତୁ ବାହାରେ ବାହାଦୁରୀ ଦେଖାଉଛି ।)

୧୯୯୪୯. ନିଆଁ ପାଖରେ ଜଉ ରହେ ?
(ନିଆଁ ପାଖରେ ଜଉ ରହିବ ନାହିଁ ପୋଡ଼ିଯିବ । ଶକ୍ତିଶାଳୀ ବଳବାନ ପାଖକୁ ଯାଇ କଳିଆ କରିବ ନାହିଁ ।)

୧୯୯୫୦. ନିଆଁମୀ ନାନୀ, ଦିହରେ ମାରୁଛି ଗୋବର ପାଣି ।
(ଶୁଚିବାୟୁଗ୍ରସ୍ତ ଲୋକ ବାରମ୍ବାର ଗାଧୁଏ । ଶୌଚ ହୁଏ । ବହୁ ଛୁଆଁ ଛୁତି ବାରି ପବିତ୍ର ରହିବାର ଚେଷ୍ଟା କରିବା ପ୍ରତି ବ୍ୟଙ୍ଗ । )

୧୯୯୫୧. ନିଆଁ ଲଗା ଘରେ ରହିବି ନାହିଁ,
ଖଣ୍ଡିଆ ପଥୁରି ଥୋଇବି ନାହିଁ, ତାଟିକିଲା ମାଡ ସହିବି ନାହିଁ ।
(ଅସହ୍ୟ ଅବସ୍ଥାରେ ସ୍ତ୍ରୀର ଅନୁଶୋଚନା । )

୧୯୯୫୨. ନିଆଁ ଲଗା ମନ ମୋର, ଅଇରସି ପୋଡୁଚି,
ଅଣ୍ଟାରେ ଗୁଆ ଖୋସି, ମନେ ନ ପଡୁଚି ।
(ମଣିଷ ବେଳେ ବେଳେ ନିଜକୁ ଗାଳିଦିଏ । ତାହାର ପରିପ୍ରକାଶ ।)

୧୯୯୫୩. ନିଆଁଲଗା ଜର ଆସୁଛି, ଧାନ କୁଟା ବେଳକୁ,
ନିଆଁ ଲଗା ଜର ଛାଡୁଛି, ଭାତ ଫୁଟା ବେଳକୁ ।

୧୯୯୫୪. ନିଆଁ ଲୁଣ୍ଡା, ମାରି ଦେଉଥାଏ ଫାଲୁଆଗୁଣ୍ଡା ।
(ପୂର୍ବେ କୁଟା ଲୁଣ୍ଡାରେ ନିଆଁ କୁହୁଳେଇ କୁହୁଳେଇ ଜାଳୁଥିଲେ । ଜାଳେଣୀ କାଠରେ ଲାଗିବା ପରେ କୁଟାଲୁଣ୍ଡାର କାମ ଶେଷ ହେଉଥିଲା ।)

୧୯୯୫୫. ନିଆଶ୍ରିକ ଲୋକକୁ ଈଶ୍ୱର ସାହା ।
(ନିରାଶ୍ରୟ ଲୋକକୁ ଈଶ୍ୱର ହିଁ ସହାୟକ ହୋଇଥା'ନ୍ତି ।)

୧୯୯୫୬. ନି କଉଡିଆ (=ନିର୍ଧନ) ନାଗର, କଥା ବଡ ଡାଗର (= ଲମ୍ବା ଚୌଡା) ।
(ନିର୍ଧନ ଲୋକ ଲମ୍ବାଚୌଡ଼ା କଥା କହୁଥିବା ପ୍ରତି ପ୍ରଯୋଗ କରାଯାଏ ।)

୧୯୯୫୭. ନିକଟାଇବ ଦୃଶ୍ୟନ୍ତେ କୃତାନ୍ତନଗରୀଦ୍ରୁମାଃ ।
(ଯମପୁରର ଗଛମାନ ଅତି ପାଖରେ ଥିଲା ପରି ଦିଶିଲାଣି । ଅର୍ଥାତ୍ ମୃତ୍ୟୁ ନିକଟ ହେଲାଣି ।)

୧୯୯୫୮. ନିକର କହିଲେ ନାକରେ ବାଜେ । (ହକ୍ କଥା କହିଲେ ମର୍ମକୁ ବାଧେ)

୧୯୯୫୯. ନିକରମିଆଁ ଯୁଆଡେ ଯାଏ, କର୍ମ ଧରି ସିଆଡେ ଯାଏ ।

୧୯୯୬୦. *ଏକାର୍ଥରେ* - ଯେଣେ ଯିବୁ ଯା, କର୍ମ ଘେନି ବୁଲୁଥା ।
*ସମାର୍ଥରେ* - ଅକର୍ମା ଯୁଆଡେ ଯାଏ, ଶମ୍ଭୁର ଲିଙ୍ଗ ଛାଡି ପଳାଏ ।
*ସମାର୍ଥରେ* - ଢିଙ୍କି ସ୍ୱର୍ଗକୁ ଗଲେ ଧାନ କୁଟେ ।

୧୯୯୬୧. ନିକିତି ଆଗରେ ଯୁକତି ।
(ଯେ ମଣିଷ ଚରିତ୍ର ଓଜନ କରି ଜାଣିଛି, ତା ଆଗରେ ଯୁକ୍ତିତର୍କ କରିବା ବୃଥା ।)

୧୯୯୬୨. ନିକିତି ତଉଲ ସାନ ବଡକୁ, ଭାରି ଯିଏ ସିଏ ଯାଏ ତଳକୁ ।
(ବ୍ୟଙ୍ଗକବି ଯଦୁମଣିଙ୍କ ମୌଖିକ ଉକ୍ତି । ନିକିତିର ଦୃଷ୍ଟାନ୍ତ ଦେଇ ବଡ ସାନର ମାନ ନିର୍ଦ୍ଧାରଣ । ତଉଲାରେ ଯେ ଭାରୀ ସେ ତଳକୁ ଯାଏ, ହାଲୁକା ଉପରକୁ ଉଠେ । ପର୍ବତ ଉପରକୁ ଉଠି ମୁଁ ବଡ ବୋଲି କହିବା ପ୍ରତି ବ୍ୟଙ୍ଗ ।)

୧୯୯୬୩. ନିକ୍ରିମାଦାରୀ (=ବେକାର) କି କରେ ବସି ?
ମୁହଁ ଦେଖୁଥାଏ ଦରପଣ ଘଷି ।
(ବାରମ୍ବାର ଦର୍ପଣ ଦେଖି ସଜାସଜି ହେବାଲାଗି କାମିକା ଲୋକକୁ ସମୟ ନଥାଏ । ଏହା ବେକାର ଲୋକଙ୍କ କାର୍ଯ୍ୟ ।)

୧୯୯୬୪. ନିର୍ଗନ୍ଧାଇବ କିଂଶୁକାଃ । (ପଳାଶ ଫୁଲ ରଙ୍ଗୀନ କିନ୍ତୁ ବାସହୀନ ।)

୧୯୯୬୫. ନିଗାଈତୀର (=ଯେଉଁ ସ୍ତ୍ରୀ ପୂର୍ବରୁ କେବେ ଗାଈ ପୋଷି ନାହିଁ) ଗାଈ ହୋଇଛି,
ଲାଗ୍ ଲାଗ୍ ଖୁଆଏ କୁଣ୍ଡା,
ନିବୋହୂତୀର (= ଯେଉଁ ସ୍ତ୍ରୀ ନୂଆ ହୋଇ ଶାଶୁ ହୋଇଛି) ବୋହୂ ହୋଇଛି,
ଗାଈକୁ ମାରଇ ନିତି ଖୁନ୍ଦା ।

୧୯୯୬୬. ନିଜ ଆଖିକି ଆଙ୍ଗୁଳି ପାଏନି । (ମଣିଷ ନିଜର କ୍ଷତି ଘଟାଇବାରେ ଚିର ସତର୍କ ।)

୧୯୯୬୭. ନିଜ ଗଳିର କୁକୁର ବି ବାଘ । (ସାଇର ତୁଚ୍ଛ ଲୋକବି ସ୍ୱସ୍ଥାନରେ ବଡ ବୋଲାଏ ।)

୧୯୯୬୮. ଏକାର୍ଥରେ- ଡିହ କୁଟି ଭୋଗୋ ।

୧୯୯୬୯. ଏଜନ୍- ନିଜ ଗାଁରେ କଟାସ ରାଜା ।

୧୯୯୭୦. ନିଜ ଗାଁରେ ସିଙ୍ଘାଣିନାକା । (ନିଜ ଗାଁରେ ପ୍ରତିଭାର ଆଦର ହୁଏ ନାହିଁ ।)
*ଏକାର୍ଥରେ*- ଗାଁ କନିଆଁ ସିଙ୍ଘାଣିନାକୀ ।
*ଏଜନ* - ଘରକା ମୁରଗି ଡାଲ ବରାବର ।
ବାହାରକା ମୁରଗି ଗୋଶ୍ ବରାବର ।

୧୯୯୭୧. ନିଜ ଗାଣ୍ଡିରେ ବିଶେ ଗୁହ, ପର ଗାଣ୍ଡିକି କାହିଁକି ଧୂଅ ?
(ନିଜ ଦୋଷ ଦୁର୍ବଳତା ନ ଦେଖି ପରର ଦୋଷ ବାଛିବା ।)

୧୯୯୭୨. ନିଜ ବୁଦ୍ଧିରେ ଯୋଗୀ ହେବ, ପର ବୁଦ୍ଧିରେ ରାଜା ହେବ ନାହିଁ ।
(ନିଜ ଅକଲରେ ନିଜେ ଚାଲିବା ହିଁ ଶ୍ରେଷ୍ଠ । ପର ବୁଦ୍ଧି ପ୍ରଳୟକାରୀ ।)

୧୯୯୭୩. *ଏକାର୍ଥରେ*- ନିଜ ବୁଦ୍ଧି ଠାକୁର, ପରର ବୁଦ୍ଧି କୁକୁର ।

୧୯୯୭୪. *ଏକାର୍ଥରେ*- ନିଜ ବୁଦ୍ଧିରେ ଘାସ କାଟିବ,
ପର ବୁଦ୍ଧିରେ ଘୋଡା ଚଢିବ ନାହିଁ ।

୧୯୯୭୫. *ଏକନ*- ପର ବୁଦ୍ଧି ପ୍ରଳୟ ।

୧୯୯୭୬. ନିଜ ମୁଖ ଦର୍ପଣରେ ଦେଖିବା,
ନାରୀମାନଙ୍କ କେଳିବେଶ ହେବା,
ତପସ୍ୟା, ମୈଥୁନ, ଯେ ମଳତ୍ୟାଗ,
ଏହା ନକରିବ କାହାରି ଆଗ ।

୧୯୯୭୭. ନିଜ ରକ୍ଷଣ ଅସମ୍ଭବ, ସେ କାହୁଁ ପରକୁ ରଖିବ ?

୧୯୯୭୮. ନିଜ ଦେଶ ମଶାଣିକି ଡର, ପରଦେଶ ପାଣିକି ଡର ।
(ନିଜ ଗାଁରେ କେଉଁଠି ଭୂତପ୍ରେତ ମଣିଷକୁ ଡରାଉଛନ୍ତି, ସେ କଥା ଜଣାଶୁଣା । ସେଠାକୁ ଗଲେ ଡର ମାଡ଼େ । ଅନ୍ୟ ଗାଁରେ ପାଣି କଣ୍ଡି ନଥିବାରୁ ପୋଖରୀ ନଈରେ ଗାଧୋଇବାକୁ ଡର ମାଡ଼େ ।)

୧୯୯୭୯. ନିଜେ ଗଡିଗଡି ଯାଉଛି, ସାଉଁଟା ଜୁହାର ପାଉଛି ।

୧୯୯୮୦. ନିଜେ ଗୁରୁ ନିଜେ ଚେଲା ।
*ଏକାର୍ଥରେ* - ଏକୁଟିଆ ବାରା । (ନିଜେ ହିଁ ଶ୍ରେଷ୍ଠ ।)

୧୯୯୮୧. ନିଜେ ଥିଲେ ଯୁଗ ଯାଏ, ପରପାଇଁ କାନ୍ଦୁଥାଏ ।
(ନିଜ କଥା ଆଗ । ମଣିଷ ଭଲ ଭାବେ ନିଜେ ରହିଥିଲେ ପରର ସେବା କରୁଥାଏ ।)

୧୯୯୮୨. *ସମାର୍ଥରେ* - ନିଜେ ବଞ୍ଚିଲେ ବାପର ନାମ ।

୧୯୯୮୩. ନିଜେ ରାନ୍ଧି ନିଜେ ଖାଏ, ପରଶଂସା କରୁଥାଏ ।
(ସ୍ୱାର୍ଥପର ପ୍ରତି ବ୍ୟଙ୍ଗ ।)

୧୯୯୮୪. ନିତି ଉପାସିଆ ଯମଚରାସିଆ (= ଯାହାର ସମସ୍ତେ ମରିଯାଇଛନ୍ତି),
ମାତା ରସିଆ, ହରିଦାସିଆ, ବାବାଜୀ ହୁଅନ୍ତି ଚାରି ପାଣିଆ ।
(ବାବାଜୀ ଚାରି ପ୍ରକାର ଯଥା ଯାହାକୁ ଖାଇବାକୁ ମିଳେ ନାହିଁ । ଯାହାର ସମସ୍ତେ ମରି ହଜି ଯାଇଛନ୍ତି, ମାତା ପ୍ରତି ଯାହାର ଲୋଭ ଅଛି, ଈଶ୍ୱରଙ୍କ ପ୍ରତି ଯାହାର ଭକ୍ତି ଅଛି ।)

୧୯୯୮୫. ନିତି କଳହ ହୋଇଲେ ଘର ଯାଏ ଭାଙ୍ଗି ।

୧୯୯୮୬. ନିତି ଖଡୁ ବାହୀ,ପିଉଳ ଚନ୍ଦେଇ,
କେତେ ଅନାଉଛୁ ଟୋକାରେ;

ଦିନ ଷୋଳଘଡି, ପାଇଟି ସାରିଲି,
ତୋ ଘରେ ଶୋଇଛି ଏକାରେ ।

୧୯୯୮୭. ନିତି ଦେଖି ଯେ ପଚାରୁଥାଏ, ତା ଠାରେ କି ଭରସା ଥାଏ ?

୧୯୯୮୮. ନିତି ପଖାଳୁଆ ସାଇ ରସିକ, କଖାରୁ ଫୁଲକୁ ପାରୁଡା ପୋକ ।
(ସାହୀ ରସିକ ପ୍ରତି ବ୍ୟଙ୍ଗ ।)

୧୯୯୮୯. ନିତି ମାଗନ୍ତାକୁ ଦିଅନ୍ତା ନାହିଁ, ନିତି ମକୁକୁ ଚାହାଁନ୍ତା ନାହିଁ ।
ତିନି କୁଣିଆକୁ ସେରନ୍ତା ନାହିଁ, ନିତି ବାଟକୁ ଡରନ୍ତା ନାହିଁ ।

୧୯୯୯୦. ନିତି ହାଟୁଆ ଶାକର ଖାଏ, ନିତି ହାଟୁଆ କାଙ୍କର ଖାଏ ।
(ବ୍ୟବସାୟୀ ଖରା, କାକର ଖାଏ ଆଉ ଖଜା, ଶାକର ବି ଖାଏ ।)

୧୯୯୯୧. ନିତି କ୍ଷେତି ପକ୍ଷେ ଗାଈ, ଯେ ନ ଦେଖି ତାର ଯାଇ ।
(ପ୍ରତିଦିନ ଚାଷଜମି ଦେଖିବ । ୧୫ ଦିନେ ଅତତଃ ଥରେ ଗୋରୁ ଗାଈଙ୍କର ଭଲ ମନ୍ଦ ବୁଝିବ । ନହେଲେ ସବୁଯିବ ।)

୧୯୯୯୨. ନିତେଇ ମା ଧୋବଣୀକି, କିଟେଇ ମା ସଉରୁଣୀ ।
(ତନ୍ତ୍ରଯୁଗର ଦୁଇଟି ନାରୀ, ଅଘଟଣ ଘଟାଉଥିଲେ । ଦୁଷ୍ଟ ଚରିତ୍ରର ଦୁଇଜଣ ନାରୀ ଏକାଠି ହେଲେ ଏହି ଉକ୍ତିଟି ପ୍ରଯୋଗ ହୁଏ ।)

୧୯୯୯୩. ନିଦ୍ କାଏଁ ଜାନେ ଇଟା ବୁଦା, ଭୋକ କାଏଁ ଜାନେ କଷାପିତା ।
(ନିଦ କି ଜାଣେ ଇଟା ବୁଦା, ଭୋକ କି ଜାଣେ କଷା ଓଦା ।)

୧୯୯୯୪. ନିଦ ନ ଆସେ ଯୋଗୀକି, ନିଦ ନ ଆସେ ଭୋଗୀକି ।
(ଯୋଗୀ ଜିତନିଦ୍ର । ଭୋଗଲିପ୍ସାରେ ଥିବା ଲୋକକୁ ନିଦ ଲାଗେ ନାହିଁ ।)

୧୯୯୯୫. ନିଦ ନ ମାଡେ ରୋଗୀକୁ, ନିଦ ନ ମାଡେ ଯୋଗୀକୁ ।
(ରୋଗ ଯନ୍ତ୍ରଣା ଯୋଗୁଁ ରୋଗୀ ଶୋଇ ପାରେ ନାହିଁ । ଯୋଗୀ ଜିତନିଦ୍ର ।)

୧୯୯୯୬. ନର୍ଧନସ୍ୟ କୁତୋ ବୁଦ୍ଧିଃ, ନିର୍ବୁଦ୍ଧେସ୍ତୁ କୁତୋ ବଳମ୍ ?
(ଧନ ନଥିବା ଲୋକର ବୁଦ୍ଧି ହଜିଯାଏ । ନିର୍ବୁଦ୍ଧିଆର ବଳ ନଥାଏ ।)

୧୯୯୯୭. ନିନା ମନ କଲେ କେବେ କେବେ, ନନୀ ମନ କଲେ ଏବେ ।
(ଜଣକର କାମନା କାମନାରେ ରହିଯାଏ, କାର୍ଯ୍ୟରେ ପରିଣତ ହୋଇପାରେ ନାହିଁ । ଆଉ ଜଣଙ୍କର କାମନା ସଙ୍ଗେ ସଙ୍ଗେ କାର୍ଯ୍ୟରେ ପରିଣତ ହୁଏ । ନାରୀ କାମନା କଲେ ତତ୍‌କ୍ଷଣାତ୍ କାର୍ଯ୍ୟରେ ପରିଣତ ହୁଏ । ମାତ୍ର ପୁରୁଷ କାମନା କଲେ କାର୍ଯ୍ୟରେ ପରିଣତ ହେବା ସହଜ ନୁହେଁ ।)

୧୯୯୯୮. ନିର୍ବାଣ ଦୀପେ କିମୁ ତୈଳ ଦାନମ୍, ଚୌରେ ଗତେ ବା କିମୁ ସାବଧାନମ୍,

ବୟୋଗତେ କି ବନିତା ବିଳାସଃ, ପୟୋଗତେ କିଂ ଖଳୁ ସେତୁବନ୍ଧଃ ।
(ଛିଞ୍ଚିଲା ଦାପରେ ତେଲ ଢାଳି କି ଲାଭ ? ଚୋରୀ ହୋଇଗଲା ପରେ ସାବଧାନ ହେବା ବୃଥା । ବୟସ ଗଡିଗଲା ପରେ ସ୍ତ୍ରୀ ସଙ୍ଗମ ସୁଖକର ହୁଏ ନାହିଁ । ପାଣି ବୋହିଗଲା ପରେ ବନ୍ଧ ବନ୍ଧେଇ କି ଲାଭ ?)

୧୯୯୯୯. ନିର୍ବାଣୀ ଆଷତାରେ ସମସ୍ତେ ମାଝିକ ।
(ବହୁ ମାଝିକ ହେବା ଫଳରେ ଯାତ୍ରା ଭାଙ୍ଗେ । )

୨୦୦୦୦. ନିରିମାଖି, ଆପଣା କଥାକୁ ଆପେ ସାକ୍ଷୀ ?

୨୦୦୦୧. ନିମ୍ବ ପିତା, ଦେହକୁ ହିତା ।
(ନିମ୍ବ ପିତା ହେଲେ ମଧ ଦେହ ପ୍ରତି ହିତକର । )

୨୦୦୦୨. ନିମୁଣ୍ଡୀ (= ଅନାଥ) ଲୋ,
ତୋର କେହି ନାହିଁ ? ମୋର କେହି ନାହିଁ, ମୋଡିମାଡି ହୋଇ ଶୋ ।

୨୦୦୦୩. ନିମୂଳୀ (= ଯାହାର କେହି ନାହିଁ) ଚେଡୀ (= ଦାସୀ),
ହଳଦୀ ନଥାଇ କାଢଇ ପେଡି ।
(ଶାଶୁ ବହୁକୁ ଲକ୍ଷକରି କହୁଅଛି – 'ମାଥା ମୁଣ୍ଡିହଳଦୀ ଖଣ୍ଡେ ଦେଇ ନାହିଁ, ପେଡ଼ି କାଢ଼ି ଦେଖୁଚୁ କ'ଣ?' - ଦାରିଦ୍ର୍ୟ ଯୋଗୁଁ ବୋହୂକୁ ଶାଶୁର ଅବମାନନା ।)

୨୦୦୦୪. ନିରସ୍ତେ ପାଦପେ ଦେଶେ,ଏରଣ୍ଡୋଽପି ଦ୍ରୁମାୟତେ ।
(ଯେଉଁ ଦେଶରେ ଗଛ ନାହିଁ, ସେ ଦେଶର ଲୋକେ ଗବ ଗଛକୁ ବଡ ଗଛ ବୋଲି କହିଥାନ୍ତି ।)

୨୦୦୦୫. ନିରି ମାଇଲ (= ନିର୍ମାଲ୍ୟ), କାହିଁ କଥା ନେଇ କାହିଁ ଥୋଇଲ ?
(ନିରିମାଇଲ ଅର୍ଥାତ୍ ନିର୍ମାଲ୍ୟ ପରସର ପାଟିରେ ଦେଇ ଦୁଇବନ୍ଧୁ ନିର୍ମାଲ୍ୟ ବସନ୍ତି ।)

୨୦୦୦୬. ନିର୍ଲ୍ଲଜ ଗାଏ, ସଇଜ ବାଏ, ଅତି ଅଲାଜୁକି ନାଚି ନାଚି ଯାଏ ।
(ପୂର୍ବେ ଗାଇବା, ବଜାଇବା, ନାଚିବା ଅସମ୍ମାନଜନକ ଥିଲା । ଏବେ ଏହା ସମ୍ମାନଜନକ । )

୨୦୦୦୭. ନିର୍ଲଜ ଘରେ ଥୋବରା କୁଣିଆଁ ।
(ଚର୍ଚ୍ଚା କରିବା ଲୋକ ଯେମିତି, ଅତିଥି ମଧ ସେମିତି ।)

୨୦୦୦୮. ନିଲଜ ପଟ୍ଟୁ, ପିତା ଡିଅଣକୁ କୋଚିଲା ଚଟ୍ଟୁ ।
(ଡିଅଣ ଯେମିତି ପିତା, କୋଚିଲା କାଠରେ ତିଆରି ଚଟୁ ସେମିତି ପିତା । ଦୁଇ ମନ୍ଦ ପ୍ରକୃତିର ସଙ୍ଗମ ।)

୨୦୦୦୯. ନିଲଜ ମୁଁହରେ ବାଳ, ତହିଁ ବରଡା ଲୁଣ୍ଡାରେ ଢାଳ ।
(କେବଳ ନିଶଦାଢି ରଖି କେହି ସମ୍ମାନର ପାତ୍ର ହୁଏନାହିଁ । ସନ୍ୟାସୀର ଭେକ

କାହାକୁ ପ୍ରକୃତ ସନ୍ୟାସୀ କରି ନପାରେ । ସାଧାରଣ ଲୋକ ପରି ଅପକର୍ମ ଯେ କରେ ସେ ଲାଞ୍ଛନା ପାଇଥାଏ ।)

୨୦୦୧୦. ନିଇଜ ନାଉ ନା ସଇଜ ନାଉ,
ଟେକାଟେକି କଲେ ପିରିଣ୍ଡାକୁ (= ଚାଳ ଉପରେ) ଯାଉ ।
(ଟେକାଟେକି କଲେ ଛୋଟ ଲୋକ ନିଜକୁ ବଡ ମନେ କରେ । ମନେ ମନେ ଆକାଶକୁ ଉଠିଗଲା ବୋଲି ଭାବେ । ଏହା ସେ ଛୋଟଲୋକ ପ୍ରତି କଟାକ୍ଷ ।)

୨୦୦୧୧. ନିଶକ ପଲୀ,ଗୋଚିନା ଉପରେ ସିନ୍ଦୁର କଲି । (ରସିକ ପ୍ରତି ବ୍ୟଙ୍ଗ ।)

୨୦୦୧୨. ନିଶା ପାଣିରେ କି ଶୋଷ ଯାଏ ?
(ନିଶା ପାଣିରେ ମଦ ପିଇଲେ ଶୋଷ ବଢେ, ମରେ ନାହିଁ ।)

୨୦୦୧୩. ନିତି ଅଳସୁଆ, କୃଷିକି ନାଶଇ, ରଷିକି ନାଶଇ ଦାସୀ ।
•ହସାହସି ପାଠ, ବିନେମତା (= ବିନମ୍ରତା) ନାଶେ,
ଚୋରକୁ ନାଶଇ ଖାଣି (=କାଣ) ।
(ବଡି ଭୋରୁ ଉଠୁ ନଥିବା ଚାଷୀ ଚାଷ କରିପାରେ ନାହିଁ । ଦାସୀ ଋଷିଙ୍କ ଯୋଗ ଭ୍ରଷ୍ଟ କରିପାରେ । ସ୍ଥାନ କାଳ ପାତ୍ର ବିବେଚନା ନ କରି ଉଦ୍ଧତ ଲୋକ ହସେ । )

୨୦୦୧୪. ନିଶୁଆ ଚେଲୀ, ନା ଯାଉଛି ପେଲି ।
(କିଛି କ୍ଷମତା ବା ଶକ୍ତି ଥିଲେ ଲୋକେ ବାଟ ଛାଡ଼ି ଦିଅନ୍ତି ।)

୨୦୦୧୫. ନିସତକୁ (= ନିରୁପାୟ) ଭଉଣୀ ଜୋଇଁ ଭଇ,
ପେଲାପେଲି କରି କାଟୁଥା କାଳ ।

୨୦୦୧୬. ନିଷର୍ମାର କୁକର୍ମ ସାର । (ଇଂରାଜୀରେ-Idle mind is the devil's den)

୨୦୦୧୭. ନିଯତି କେନ ବାଧତେ ? (ନିୟତି ବା ଭାଗ୍ୟ ଉପରେ ବଳ କାହାର ?)

୨୦୦୧୮. ନିୟତି ନ ପୁରିଲେ ଡିରଣ ହଲେ ନାହିଁ । (କାଳ ନ ପୂରିଲେ କେହି ମରେ ନାହିଁ ।)

୨୦୦୧୯. *ଏକାର୍ଥରେ*- ଦଣ୍ଡେ ନିମିଷେ ଥିଲେ ପ୍ରାଣ, ନେଇ ନପାରେ ଜନ୍ତୁରାଣ ।

୨୦୦୨୦. ନିତି ମୂଲିଆ ମୂଲେ ଯାଉ । ଦିନେ ନଗଲେ ଭୋକେ ଶୋଉ ।
(ନିତି କଷ୍ଟରେ ପଡି ଉଦର ପୋଷିବା ଲୋକ, ଦିନେ କାମକୁ ନଗଲେ, ସେହିଦିନ ଯାକ ଅନାହାରୀ ହୁଏ । ଅତଏବ କାଠ ବିକ୍ରୟରେ ଜୀବନ ପୋଷିବା ଲୋକେ, ବଢେଇ, କମାର ପ୍ରଭୃତି ଦୈନିକ ପରିଶ୍ରମୀ ମାନେ ଏବଂ ଦୈନିକ ମୂଲିଆ ମାନେ, ଦିନେ ସେମାନଙ୍କ ନିଜ ନିଜ କାର୍ଯ୍ୟ ନକଲେ ସେହିଦିନ ଅନାହାରୀ ରହନ୍ତି ।)

୨୦୦୨୧. ନିଆଁ, ନାଗ, ନଈ, ବାଇ, ଏହାଙ୍କ ସାଙ୍ଗରେ ଖେଳିବ ନାହିଁ ।

୨୦୦୨୨. ନିଆଁ ପାଖରେ ଜଉ ରଖିବା । ନ୍ୟାୟ ।

୨୦୦୨୩. ନିଆଁ ନଥାଇ ଧୂଆଁ । ନ୍ୟାୟ ।

୨୦୦୨୪. ନିୟତ ଗୁଣେ ବରକତ ।

୨୦୦୨୫. ନିୟାମୀ ନାରୀ, କାଠରେ ଛିଞ୍ଚୁଛି ଗୋବର ପାଣି ।

୨୦୦୨୬. ନିଆଁଲଗା ଜର ଆସୁଛି, ଧାନକୁଟା ବେଳକୁ ।
ନିଆଁଲଗା ଜର ଛାଡୁଛି, ଭାତଫୁଟା ବେଳକୁ ।

୨୦୦୨୭. ନିଆଁଗିଳା ସାହାସା (=ମିଥ୍ୟାବାଦୀ)

୨୦୦୨୮. ନିଆଁ ପୋଇବ ଯେ ଧୂଆଁ ସହିବ ସେ ।

୨୦୦୨୯. ନିଆଁ ଡରଇ ପାଣିକୁ,
ପଣ୍ଡିତ ଜନ ମୂରୁଖକୁ ଡରେ, ଖାତକ ଡରେ ସାହୁକାରକୁ ।

୨୦୦୩୦. ନିଉଛୁଣା ସାଆନ୍ତର ଭଣ୍ଡାରି ଉପରେ ତୋଡ,
ଅଇଁଠା ପତର ପଛେ ଉଠାଇବାକୁ, ଆଗକରି ଗୋଡ ମୋଡ ।

୨୦୦୩୧. ନିକିମା ଦାରୀ କି କରେ ବସି,
ମୁହଁ ଦେଖୁଥାଏ ଦର୍ପଣ ଘଷି ।

୨୦୦୩୨. ନିକିତି ତଉଲା ସାନ ବଡକୁ,
ଭାରି ହୁଏ ଯେହୁ ଯାଏ ତଳକୁ ।

୨୦୦୩୩. ନିକିତି ଆଗରେ କି ଯୁକୁତି ।

୨୦୦୩୪. ନିକାଞ୍ଚନେ ବସି ଜପତପ କଲି
ହରିଙ୍କି ପାଇବା ପାଇଁ,
ଝୋଲା ସଜ କଲି, ଜଟ ବଢାଇଲି,
ଦୁନିଆଁ ଠକିବା ପାଇଁ ।

୨୦୦୩୫. ନିଖକୁ (=ଉକୁଣିର ଡିମ୍ବ) ନଖ ।

୨୦୦୩୬. ନିଜ ରକ୍ଷଣ ଅସମ୍ଭବ, ସେ କାହୁ ପରକୁ ରଖିବ ।

୨୦୦୩୭. ନିଜ ପୁଅ ସୁନ୍ଦର ।

୨୦୦୩୮. ନିଜ ଗୋଡରେ ଠିଆ ହେବା କଥା ।

୨୦୦୩୯. ନିଜ ବଳଦକୁ ଗୋସେଇଁଖିଆ ଗାଳି ଦେବା । ନ୍ୟାୟ ।

୨୦୦୪୦. ନିଜକୁ ଖାଏ ବଗଲା (=ଦେବୀ) ବଂଶ ଖାଏ ଚଣ୍ଡି ।

୨୦୦୪୧. ନିଜ ପସନ୍ଦରେ କିଣିବ,
ବେପାରି କଥାରେ କିଣିଲେ,
ଫେରି ଆସି ଘରେ ଭାଳିବ ।

୨୦୦୪୨. ନିଜ ରୋଚକ ଖାଇବ,
ଦାଣ୍ଡ ରୋଚକ ପିନ୍ଧିବ ।

୨୦୦୪୩. *ଏକାର୍ଥରେ-* ଆପ ରୁଚି ଖାନା, ପର ରୁଚି ପେହେନା ।

୨୦୦୪୪. ନିଜ ପ୍ରଶଂସା ନିଜ ତୁଣ୍ଡରେ ଗାଏ,
ସେ ଲୋକ କି ଆଦର ପାଏ ।

୨୦୦୪୫. ନିଜ ଦେହକୁ ନିଜେ ନ ଜଗିଲେ,
ଲକ୍ଷେ ବଇଦ କି କରିବେ ।

୨୦୦୪୬. ନିତି ହାଟୁଆ ଶାକର ଖାଏ,
ଦିନିକିଆ ହାଟୁଆ ଟାକର ଖାଏ ।

୨୦୦୪୭. ନିତି ମାଗନ୍ତାକୁ ଦିଅନ୍ତି ନାହିଁ,
ନିତି ମଲୁକୁ ଚାହାନ୍ତି ନାହିଁ ।

୨୦୦୪୮. ନିତି ଓପାସିଆ, ଯମ ଡରାସିଆ (=ଭଣ୍ଡାରୀ) ମାତା ରସିଆ,
ହରି ଦାସୀଆ, ବାବାଜୀ ନୁହଁନ୍ତି ।

୨୦୦୪୯. ନିତି ମୂଳିଆର (=ସବାରି କାନ୍ଧେଇଲା ବାଲା) ଚବିଶ ଏକାଦଶୀ ।

୨୦୦୫୦. ନିଧନୀ ତହିଁରେ ପୁଣି କରମ ବୋଡି ।

୨୦୦୫୧. ନୀପ (=କଦମ୍ବ) ମୂଳରେ କାଳିଆ କାହ୍ନୁ,
ପାଶୋର ଯିବକି ଗୋପୀଙ୍କ ମନୁ ।

୨୦୦୫୨. ନିମ ଗଛରେ କି ଆମ୍ବ ଫଳିବ ।

୨୦୦୫୩. ନିମକ ସଚା କୁତା, ନିମକହାରମ ତୋତା ।

୨୦୦୫୪. ନିରୋଗୀ ଲୋକ ନିଜେ ଚାଉଁ ଚାଉଁ,
ତାକୁ ଜାଣିବ ଚିନ୍ତାଳ ।
ଘର କାମ ଛାଡି ପଞ୍ଚରଙ୍ଗ ରସା,
ତାକୁ ଜାଣିବ ଛିଣ୍ଡାଳ ।
ସଉଦା ନକରି ହାଟ ଭ୍ରମଣି,
ତାକୁ ଜାଣିବ ଝଟାଳ ।

ଗାଧୁଆ ତୁଠରେ ନହର ପହର,
ତାଙ୍କୁ ଜାଣିବ ବିଟାଳ ।

୨୦୦୫୫. ନିରେଖି ଚାହୁଁନୁ କେତେ,
ମୋର ବିନୋଦିଆ ତୋଠାରୁ ସୁନ୍ଦର,
ଚାକର ରଖିବ ତୋତେ ।

୨୦୦୫୬. ନିରେଙ୍ଗଷ କୋଳି ବହୁତ ଫଳିଲେ,
ମାରୁ ମହର୍ଗ ପଡେ ।

୨୦୦୫୭. ନିଲ୍ଲଜ ପେଟୁ, କଲୁରି ବେଣ୍ଟକୁ କୋଚିଲା ଚଟୁ ।

୨୦୦୫୮. ନିଶରଣ ବେଳେ ମହାପ୍ରଭୁ ଗଧପାଦ ଧରିଥିଲେ ।

୨୦୦୫୯. ନିଶାଖାଇ ନିଶାପରେ ବସିବା । ନ୍ୟାୟ ।

୨୦୦୬୦. ନିଜ କଲା କର୍ମ ଭୋଗ ନିଜେ କର
ଏଡିକି ପାରେଣ ବ୍ରହ୍ମା ହରିହର ।

୨୦୦୬୧. ନିରାକାର, ନିର୍ବିକାର, ପୁରୁଷ ଉତ୍ତମ,
ନିଜ ରୂପ ନିଜେ ରଚି ଶ୍ରୀକ୍ଷେତ୍ର ଶୋଭନ,
ବାମେ ନିଜେ ହୋଇ ଉଭା, ଦକ୍ଷିଣେ ଅଗ୍ରଜ ଶୋଭା
ମଧ୍ୟେ ଭଗନୀ, ଉର୍ଦ୍ଧ୍ୱେ ପତିତପାବନ ଉଭା ।

୨୦୦୬୨. ନିଜେ ବଞ୍ଚି ଅନ୍ୟକୁ ବଞ୍ଚାଅ ।
( ଏହା ହେଉଛି ଅତୀତ ଉତ୍କଳର ରାଜା ମାନଙ୍କର ନିତୀ । ରାଜ ଚକ୍ରବର୍ତ୍ତୀ କଳିଙ୍ଗ ସମ୍ରାଟ ଖାରବେଳଙ୍କର ଏହି ନିତୀ ସମଗ୍ର ଭାରତ ବର୍ଷରେ ଆଦର୍ଶ ହୋଇଥିଲା । )

୨୦୦୬୩. ନିଲ୍ଲଜାକୁ ଲଜ୍ଜା ଗଲା କି ଛାଡି
କି ବେଲଜ୍ଜା କଥା କହିଲା ହୁଡି ।

୨୦୦୬୪. ନିଜ କାଖରେ ଗନ୍ଧ ନାହିଁ, ପର କାଖରେ ଗନ୍ଧ ।

୨୦୦୬୫. ନିଜେ ଯେବେ ନିଜର ଆୟତ୍ତ ହୋଇଥାନ୍ତା ଜୀବ
କିମ୍ପାଁ ଜନ୍ମ ମୃତ୍ୟୁ ଘଟନ୍ତା ତାହାର ?
ତେବେ - ଅଟେ ଏହି ଦେହ ଈଶ୍ୱର ଆୟତ୍ତ
ଦେହ ପରମାତ୍ମା - ଆତ୍ମା ଅଟେ ସାରଥି ତାହାର ।

୨୦୦୬୬. ନିନ୍ଦନା ଧରମେ ଆଉ
କରମ ଲିଖନ ଆଉ, କରି ପାରିବା କେହୁ ।

୨୦୦୬୭. ନିଜ ପୁଅ ହାତରେ, ପର ପୁଅ ଭାତରେ ।

୨୦୦୬୮. ନିଜେ ଖାଉଛି ଖୁଆଉଛି । ମରୁଛି ପୁଣି ମାରୁଅଛି ॥
ଦୁଃଖବା ସୁଖ ଅଛି ଯାହା । ଆମ୍ଭର ନିଜ ଭାବ ତାହା ॥

୨୦୦୬୯. ନିଜର ଭାର୍ଯ୍ୟାଙ୍କ ନାରୀ ଜନ, ନିଜ ଅର୍ଜିତ ଯେତେ ଧନ ।
ଅଳ୍ପ ସୁନିଦ୍ରା, ସୁ-ରମଣ, ଅଳ୍ପ କଥନ ଭୋଜନ ।
ଦାତାର ସ୍ୱେଚ୍ଛାଦାନ ଘେନି, ସନ୍ତୋଷ ଲଭନ୍ତି ସୁଜ୍ଞାନୀ ।

୨୦୦୭୦. ନିର୍ଧନିୟା ଧନ ଦେଖିଲେ,ଦିନରେ ଦେଖେ ତାରା ।

୨୦୦୭୧. ନିଜର ଧର୍ମକର୍ମ ନାହିଁ, ପରର ଦେଖି ହାଇଁ ହାଇଁ ।

୨୦୦୭୨. ନିଜ ଅଙ୍ଗ ପରିଷ୍କାର କରି ଶୁଚି ହୁଏ,
ସାନବଡ ସମସ୍ତଙ୍କୁ ସମଭାବେ ଚାହେଁ,
ପରଷିବା ବେଳେ ପକ୍ଷପାତ ଯେ ନକରେ,
ସ୍ୱାମୀପୁତ୍ର ସମସ୍ତଙ୍କୁ ବାଢେ ସମାନରେ,
ଏମନ୍ତ ନାରୀର ଗୃହ ମୁହିଁ (= ମହାଲକ୍ଷ୍ମୀ) ନ ଛାଡଇ,
ତାର ଦୁଃଖ ନୟନରେ ଲବେ ନ ଦେଖଇ ।

୨୦୦୭୩. ନିଶାଗମେ ଜ୍ୟୋତ୍ସ୍ନା ଘୋଟିଯାଏ ମହୀ
ସବର ଅଙ୍ଗରେ ସେ ଜ୍ୟୋତ୍ସ୍ନା ପଡ଼ଇ,
କି ଅପୂର୍ବ ସୁଖ ମନରେ ଭଜଇ
ସ୍ୱର୍ଗ (ସହ) ବାସ ସୁଖ ନୁହେଁ ତା ସମ ।

୨୦୦୭୪. ନିକଉଡ଼ିଆ ହାଟ ଯାଏ, ପିଚାପଶା ମାଡ଼ ଖାଏ ।

୨୦୦୭୫. ନି କଉଡ଼ିଆ କଉଡ଼ି ଦେଖିଲେ, ଦିନରେ ଦେଖେ ତରା ।

୨୦୦୭୬. ନିୟତି ! କେ ପାରେ ବର୍ଣ୍ଣି ମହିମା ତୁମ୍ଭର,
ନିଖିଳ ସଂସାର ଶାସୁ ଅଛି ତୋହ କର
ତବ ଚକ୍ରେ ପଡ଼ି ସୂର୍ଯ୍ୟଚନ୍ଦ୍ର ତାରାଗଣ
ଶୂନ୍ୟେ ଦେଶେ କରୁଛନ୍ତି ସଦା ବିଚରଣ ।

୨୦୦୭୭. ନିମ୍ବର ବୁକେ ଚନ୍ଦନ
ଦେବତା ଗଢିଲାଲୋ ନାରୀ ଜୀବନ
ନାରୀ ଜୀବନ ଲୋ ଦେଲା ତହିଁ ଯଉବନ ।

୨୦୦୭୮. ଗୁରୁଙ୍କର ଶିଷ୍ୟ ଯେବେ କୁଚଳ ଦେଖିଲେ,
ସେ ସର୍ବ ଲୋକ ପଡନ୍ତି ନର୍କେ ଜାଣ ଭଲେ ।

୨୦୦୭୯. ନୀଳ ମାଧବ ।
( ଏହାର ଅର୍ଥ - 'ନୀଳ' ହେଲା ଜଗନ୍ନାଥ ଯାହା କାଳିଆ
ନାମରେ ଦୃଶ୍ୟ । 'ମା' - ହେଉଛନ୍ତି ସୁଭଦ୍ରା କାଳିଆଙ୍କ ଭଗିନୀ । 'ଧବ' ବା
ଧବଳ ବର୍ଣ୍ଣ ବଡଭାଇ ବଳଭଦ୍ର ଯାହାଙ୍କ ବର୍ଣ୍ଣ ଧବଳ । ଅତଏବ କଳା , ହଳଦିଆ
ଓ ଧଳା ଯଥାକ୍ରମେ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର । )

୨୦୦୮୦. ନୀର କ୍ଷୀର ପରା ଅଭେଦ, ବଜ୍ରପରା ଦୃଢତର,
ଚନ୍ଦ୍ରମା ପରା ନିର୍ମଳ,ଅମୃତ ପରା ମଧୁର ।
(ପ୍ରୀତିବନ୍ତ ଜନ ଏହି ରୂପରେ ଜନ୍ମ ହୋଇଥାନ୍ତି ।)

୨୦୦୮୧. ନୀଳଚକ୍ରେ ହୋ ଦେଖ ଉଡୁଛି ବାନା ।
ପତିତ ପାବନ ନାମଟି ଯାର ନାଁ ॥
ଆସ ଆସ ବୋଲିତ ପାତକୀମାନଙ୍କୁ ।
ତାକୁ ଅଛି ପରା ସଙ୍ଗାତ ଅନା ॥

୨୦୦୮୨. ନୀତି ଶାସ୍ତ୍ରେ ଲିହିଛନ୍ତି ଧାତା
ବିପଦେ ଧୈର୍ଯ୍ୟ ଅଭ୍ୟୁଦୟେ କ୍ଷମା
ସଦୟା କରି ବାକ୍ ପଟୁତା ଯୁଦ୍ଧ ବିକ୍ରମ
ଚଳ ସେହି ନିତୀ ଅନୁସରି ।

୨୦୦୮୩. ନୀଚ ପାଇଲେ ଅଧିକାର, ଗୁରୁଙ୍କୁ (ଋଷିଙ୍କୁ) ବୁହାଇଲେ ଭାର ।
(ରାଜା ନହୁଷ, କ୍ଷମତାରେ ଦର୍ପିତ ହୋଇ, ଋଷି ବା ଗୁରୁଜନ ମାନଙ୍କୁ ପାଲିଙ୍କି
ବୁହା କାମରେ ଖଟାଇ ଥିଲେ । ଶେଷରେ ଅଭିଶପ୍ତ ହୋଇ ଅଜଗର ସାପରେ
ପରିଣତ ହୋଇଥିଲେ ।)

୨୦୦୮୪. ନୀଚ ଚାଳୀ ଘରେ ପଶ, ଉଚ୍ଚ ଚାଳୀ ପିଣ୍ଡାରେ ବସ ।
(ଚାଳ କୁଡିଆରେ ରହୁଥିବା ଲୋକ ପିଣ୍ଡା ନଥିବାରୁ ଘରେ ବସେ । ଧନୀଲୋକ
ଉଚ୍ଚ ପିଣ୍ଡାରେ ନିଜର ଅହଂକାର ଦେଖାଏ ।)

୨୦୦୮୫. ନୀଳ କାଉ ହୁଏ କି ନୀଳା ସମାନ ?
ଛେଳି ପାଦେ ହୁଏ କି ଧାନ ମର୍ଦ୍ଦନ ?

୨୦୦୮୬. ନୁଖୁରା ମୁଣ୍ଡରେ ମହଣ,
ବୁଢୀ ସୁନ୍ଦାଣି ଦେଖିବ କଅଣ ?
(ବୃଦ୍ଧାର ବେଶ ପ୍ରସାଧନ ପ୍ରତି ବ୍ୟଙ୍ଗ ।)

୨୦୦୮୭. ନୁହ ନ କାନ୍ଦି ମୁଁ, ନହୁ କାନ୍ଦୁଛି ଲୋ,
କି ପୁଅ ମୁଁ ବାହା କଲି ।
ବୋହୂ ଆସି ଘରେ, ଗୋଡ ଦଉଁ ଦଉଁ,
ନିନ୍ଦାରେ ମୁଁ ବୁଡିଗଲି ।

୨୦୦୮୮. ନୁହନ୍ତି ଏମାନେ ମଧୁମାଛି
ମଧୁ ଦେଖିଲେ ପଡିବେ ଡେଇଁ ।
ଏହି ଜଗତରେ ବିଷ୍ଣୁ ଭକତଙ୍କୁ
କେ କି ପାରିଛି ଜିଣି କାହିଁ ?
ସାତ୍ୱିକ ପ୍ରେମରେ ଚିର ଯାହାଙ୍କର
ନିରତେ ରହିଛି ମଜି
କୃତ୍ରିମ ପ୍ରେମ କି ସହଜରେ ତାଙ୍କୁ
ଟାଣିନେବ କରି ରାଜି ।

୨୦୦୮୯. ନୂଆ ଆଟିକାରେ, ଖଇ ଭାଜିଲିଲୋ,
ଆପଣା ଗୁରୁବାରକୁ ;
ମାଳୀଘର ଝିଅ, ଫୁଲ ଗୁନ୍ଥୁଛି ଲୋ,
କାଳିଆ ଭୟା ବାଳକୁ;
କାଳିଆ କାଳିଆ, ନଈରେ ବାଳିଆ, ପିଟି ହେଉଅଛି,
ଶୁକ୍ର ମଦରଙ୍ଗା ଖାଇ;
ରାଜଘର ପୁଅ, ଖୋଜି ହେଉଅଛି,
ବିଜୁଳି କନିଆଁ (= ବିଜୁଳିବତୀ କନ୍ୟା) ପାଇଁ ।
(ବିଜୁଳିବତୀ କନ୍ୟା ଲୋକଗଳ୍ପର ଏକ ପ୍ରସିଦ୍ଧ ଗଳ୍ପ ।)

୨୦୦୯୦. ନୂଆଖିଆ ଦିନ ଯାଇ ପହଞ୍ଚିଲି, ବନମାଳୀପୁର ହାଟେ ।
କିଣି ଆଣିଥିଲି ପନି କରିବା, ମାଇଲି ବରଷ କେତେ ।
(ପୂର୍ବେ ପ୍ରାଚୀନଦୀ କୂଳରେ ବନମାଳୀପୁର ହାଟ ଓଡ଼ିଶାରେ ଏକମାତ୍ର ପ୍ରସିଦ୍ଧ ହାଟ ଥିଲା । ଦୂରଦୂରାନ୍ତରୁ ଲୋକେ ଆସି ସଉଦା ବର୍ଷ ବର୍ଷ ପାଇଁ ନେଇ ଯାଉଥି

ରଖିଥିଲେ । ଏହି ବନମାଳୀପୁର ହାଟ ସମ୍ପର୍କରେ ଆଉ ଏକ ପ୍ରବାଦ ଦୃଷ୍ଟିଗୋଚର ହୁଏ । ତାହାହେଲା-

'ପୁଅ ନାହିଁ, ପୁଅ ମା' ପେଟରେ,
ବାପ ଖଡୁ ଗଢ଼ଉଛି ବନମାଳୀପୁର ହାଟରେ ।')

୨୦୦୯୧. ନୂଆ ଡାହାଣୀ ଗୁହ ଖାଇ ଶିଖିବା ।
(ନୂଆ ହାକିମଙ୍କ ମିଜାସ କଡା । ନୂଆ ଆସନ, ପଦ, ପଦବୀ ଲୋଭରେ ମଣିଷ ଗର୍ବିତ । ତାଠାରୁ ଉଦାର ବ୍ୟବହାର ମିଳେ ନାହିଁ । ଡାହାଣୀ ଗୋଡ ଟେକି ହାତରେ ଚାଛି ମଇଳା ଚରି ଖାଇ ଶିଖିବା ।)

୨୦୦୯୨. ନୂଆ ତେଲଘଡି କାଣ୍ଡି,
ତୁମେ ଚାଲିଥିବ କଲିକତା ବାଟ, ମୋ ମନ ହେଉଛି ଘାଣ୍ଟି ।

୨୦୦୯୩. ନୂଆ ନୂଆ ଦିନାକେତେ,
ନୂଆ ଦେଖି ପୁରୁଣା ପାସୋରି ଦେଇ,ଦୂର କରିଦେଇ ମତେ ।

୨୦୦୯୪. ନୂଆ ନୂଆ ଦିନାକେତେ ବଡ ଆଦର,
ନୂଆରୁ ପୁରୁଣା ହେଲେ ତୁଠ ପଥର ।

୨୦୦୯୫. ନୂଆ ନୂଆ ଶାଗ, ନୃପତି ଅନୁରାଗ,
ନାତି ନାତୁଣୀ ଠାରେ ବୁଢାର ସରାଗ । (ଏ ଗୁଡିକ ସବୁ ଭଲ । )

୨୦୦୯୬. ନୂଆ ନୂଆ ଦିନାକେତେ,
ନୂଆ ଯୋଉଠୁ ପୁରୁଣା ହେଲା,
ନିମ ଦଉତା (= ଅବ୍ୟବହାର୍ଯ୍ୟ) କଲା ମତେ ।

୨୦୦୯୭. ନୂଆ ନୂଆ ଆଦର, ନୂଆ ଦେଖିଲେ ପୁରୁଣା ଦୂର ।

୨୦୦୯୮. ନୂଆ ନୂଆ ଆଦର । ପୁରୁଣା ହେଲେ କରନ୍ତି ଦୂର ।
(ଲୋକେ ନୂତନ ଅଳଙ୍କାର ବହୁ ଶ୍ରଦ୍ଧାରେ ଧାରଣ କରନ୍ତି, ନୂତନ ଖାଦ୍ୟ ପଦାର୍ଥ ପାଇଲେ ଯେତେ ମୂଲ୍ୟ ହେଉ, ତାହା କ୍ରୟକରି ଭୋଜନ କରନ୍ତି । ନୂତନ ଯାନ ବାହନ ପ୍ରଥମେ କ୍ରୟକଲେ ଅନେକ ଦିନ ପର୍ଯ୍ୟନ୍ତ ତହିଁରେ ଯାତାୟାତ କରନ୍ତି । ବହୁ ଦିନପରେ ପୁତ୍ର ଜନ୍ମିଲେ ତାହାକୁ ବହୁ ଶ୍ରଦ୍ଧାରେ ପାଳନ କରନ୍ତି ଏବଂ ଘରକୁ ନୂତନ କରି ବନ୍ଧୁ ଆସିଲେ ତାହା ଦ୍ୱାରା କୌଣସି କଠିନ କାର୍ଯ୍ୟ ନକରାଇ ତାହାକୁ ବହୁ ଆଦରରେ ପାଳନ୍ତି । ଉକ୍ତ ବନ୍ଧୁମାନେ ପୁରୁଣା ହେଲେ ସେମାନଙ୍କ ପ୍ରତି ପୂର୍ବପରି ଆଦର କରନ୍ତି ନାହିଁ ।)

୨୦୦୯୯. ଚୂଆ ଖୋରାରର ଜଳ,
ହେଉ ପଛକେ କାଳିଆ ବର, ବଚନତ ଗଙ୍ଗା ଜଳ ।
(ରୂପ ଅସୁନ୍ଦର ହେଲେ ମଧ ଗୁଣ ଚମତ୍କାର । ତେଣୁ ଗ୍ରହଣଯୋଗ୍ୟ ।)

୨୦୧୦୦. ଚୂଆ ଯୋଗୀ ଭିଖେ ବାଇ, ପାଉକି ନପାଉ ବୁଲୁଥାଇ ।

୨୦୧୦୧. ଚୂଆ ପୋଖରୀ ପଙ୍କ, ପେଟ ମୁଦାକରେ ଲେଖୁଛି ଅଙ୍କ ।

୨୦୧୦୨. ନେଇଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ ।

(*ଏ ସଂପର୍କରେ ଗୋଟିଏ ଗଳ୍ପ* – ଜଣେ ରାଜା ଥିଲେ । ଥରେ ସେ ତାଙ୍କ ମନ୍ତ୍ରୀଙ୍କୁ ପଚାରିଲେ, ଦୁନିଆଁରେ ସବୁ ଠାରୁ ଉତ୍ତମ ବିଦ୍ୟା କଣ ? 'ନେଇଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ' ବୋଲି ମନ୍ତ୍ରୀ କହିଲେ । ମନ୍ତ୍ରୀଙ୍କ କଥା ପରଖିବାକୁ ରାଜା ଅନ୍ଧାରି ବିଜେ କଲେ । କୁମ୍ଭାରଶାଳରେ ଯାଇ ପହଞ୍ଚିଲେ । ସେଦିନ 'ହାଣ୍ଡିପୋଡ଼ା ଭାଟି'ରୁ ସବୁ ହାଣ୍ଡି କାଢ଼ି କୁମ୍ଭାର ଚଳୁ ଉପର ଯାଏ ହାଣ୍ଡିଚକ ସଜାଇ ରଖିଥାଏ । ହାଣ୍ଡି ଚୋରି କରିବା କଥା ମନରେ ପାଞ୍ଚି, ଥୁଆ ହୋଇଥିବା ହାଣ୍ଡିର ତଳପଟୁ ହାଣ୍ଡି କାଢ଼ିବାକୁ ଆରମ୍ଭ କଲେ । ପୁରା ଥାକ ହାଣ୍ଡିଚକ ଧଡ଼୍‌ଧଡ଼୍ ହୋଇ ଅଜାଡ଼ି ପଡ଼ି ଭାଙ୍ଗିଗଲା । ଏ ଶବ୍ଦରେ କୁମ୍ଭାର ଉଠିପଡ଼ି 'ଚୋର ଚୋର' ବୋଲି ପାଟି କଲା । ସାଇ ପଡ଼ିଶା ଜମିଗଲେ । ଅନ୍ଧାରରେ ରାଜାଙ୍କୁ ଚୋର ଭାବି ନିସ୍ତୁକ ମାଡ ମାରିଲେ । ଶେଷକୁ ଜଣେ ରାଜାଙ୍କୁ ଚିହ୍ନି ପାରି ତାଙ୍କ ଗୋଡ଼ତଳେ ପଡ଼ିଲା । ରାଜା ତାକୁ ଏକଥା ପ୍ରଘଟ ନକରିବାକୁ କହି ନଅରକୁ ବାହୁଡ଼ିଗଲେ ।

ତା'ପରଦିନ ସଭାରେ ରାଜା ମନ୍ତ୍ରୀଙ୍କୁ ସବଂଶେ ଶୂଳିଦେବାକୁ ହୁକୁମ ଦେଲେ । ମନ୍ତ୍ରୀଙ୍କୁ ସପରିବାର ନେଇ କଟୁଆଳ ପୁଅ ଶୂଳି ପଦାକୁ ଗଲା । ମନ୍ତ୍ରୀଙ୍କ ସବା ସାନବୋହୂ ପେଟରେ ଥାଆନ୍ତି । ମନ୍ତ୍ରୀ କଟୁଆଳ ପୁଅକୁ କହିଲେ, ସମସ୍ତଙ୍କୁ ଶୂଳୀ ଦେଇ ସାନବୋହୂକୁ ଛାଡ଼ିଦିଅ । ନହେଲେ ସ୍ତ୍ରୀ ଓ ବାଳହତ୍ୟା ଦୋଷ ଲାଗିବ । କିନ୍ତୁ ସାନବୋହୂ ରାଜି ହେଲା ନାହିଁ । କଟୁଆଳ ପୁଅ ମନରେ ଦୟା ହେଲା । ସମସ୍ତଙ୍କୁ ରାତାରାତି ରାଜ୍ୟ ଛାଡ଼ି ଚାଲିଯିବାକୁ କହିଲା । ମନ୍ତ୍ରୀ ସପରିବାରେ ରାଜ୍ୟଛାଡ଼ି ପଳେଇଲେ । ତା'ପରଦିନ କଟୁଆଳ ପୁଅ ଚଢ଼େଇଟିଏ ମାରି ରାଜାଙ୍କୁ ରକ୍ତ ଦେଇ ପ୍ରତିଜ୍ଞା ପାଳନ କଲା ।

ଆଉ ଏକ ରାଜ୍ୟରେ ପହଞ୍ଚି ମନ୍ତ୍ରୀ ପରିବାର ସହିତ ଶାନ୍ତିରେ ରହିଲେ । ସାନବୋହୂର ଠିକ୍ ସମୟରେ ସୁନ୍ଦର ପୁଅଟିଏ ଜନ୍ମହେଲା । ବଡ ହୋଇ ପାଠ ପଢ଼ି ଖୁବ ହୁସିଆର ହେଲା । ଥରେ ଚାଟଶାଳୀରେ ସେ ଟୋକାର ଖଡ଼ି ଚୋରିଗଲାରୁ ସାଙ୍ଗ ପିଲାଙ୍କୁ ଗୋଟେଇ ଆଣିବାକୁ କହିଲା । ସେମାନେ ଟୋକାଟିକୁ ଟାପରା କଲେ । ଘରକୁ ଫେରି କବାଟ କିଳି ରୋଷରେ ନଖାଇ ନପିଇ ବସି ରହିଲା । ମନ୍ତ୍ରୀ

(ଅଜା) ଆସି ବହୁତ ଡାକିଲେ । ଟୋକା ଭିତରୁ କହିଲା, ସାଙ୍ଗ ପିଲାମାନେ 'କୁଆଡୁ ଅଇଲା' ବୋଲି କାହିଁକି କହିଲେ । ସେ କଥା କହିବାକୁ ସତ୍ୟ ନ କଲେ କବାଟ ଖୋଲିବ ନାହିଁ । ଅଜା ସତ୍ୟ କଲାରୁ କବାଟ ଖୋଲି ବାହାରକୁ ଆସିଲା । ମତାଙ୍କ ଠାରୁ ସବୁ ଶୁଣି ଟୋକା ଯେଉଁ ରାଇଜରୁ ଆସିଥିଲା ସେଠାକୁ ଯିବାକୁ ଅଡି ବସିଲା । କାହାରି କଥା କିଛି ନଶୁଣି ସେଇ ରାଜ୍ୟର ମାଲୁଣୀ ଘରେ ପହଞ୍ଚିଲା । ସେ ମାଲୁଣିକୁ ଗୁଡାଏ ଟଙ୍କା ସୁନା ଦେଇ ତା ଘରେ ଧରମ ପୁଅ ହୋଇ ରହିଲା । ପୁଣି ଏକଥା କାହାରିକୁ ନ କହିବାପାଇଁ ସତ୍ୟ କରାଇନେଲା ।

ବୁଲାବୁଲି କରି ସେଠାକାର ହାଲଚାଲ ସବୁ ବୁଝୁଥାଏ । ରାତିରେ ଚୋରି କରେ । ସେ ରାଜ୍ୟର ସାଧବଘରର ପୁଅ ବଣିଜ କରିବାକୁ ଯାଇ ସାତବର୍ଷ ହେଲା ଘରକୁ ଫେରିନଥାଏ । ଏକଥା ଜାଣି ବାକ୍ସରେ ଟଙ୍କାସୁନା ଭର୍ତ୍ତିକରି ସାଧବ ଘରେ ପହଞ୍ଚିଲା । ନିଜକୁ ସାଧବ ପୁଅ ବୋଲାଇ ତା'ର ଦୁଇ ଆଖି ଅନ୍ଧ ହୋଇଯିବା କଥା କହିଲା । ତାର କାନ୍ଦ ଏବଂ ଦୁଃଖ କଥା ଶୁଣି ସମସ୍ତେ କାନ୍ଦିଲେ । ଏତେ ଦିନ ପରେ ପୁଅ ଫେରିଥିବାରୁ ଖୁସି ହେଲେ । ପୁଅ ସାମନାକୁ ବତୀ ଆଣିଲେ ଆଖି ଫୁଟିଯିବ ବୋଲି କହିବାରୁ ରାତିରେ ସେ ରହିଥିବା ଘରକୁ କେହି ବତୀ ନିଅନ୍ତି ନାହିଁ । ସାଧବ ଅନ୍ଧାର ଘରେ ତା' ପୁଅକୁ ତାର ସଞ୍ଚିତ ଧନ କଥା କହି ଚାବିପେଟ୍ଟା ଧରାଇ ଦେଇ କହିଲା, ତୋତେ ସଂସାର ଦାୟିତ୍ୱ ଦେଇ ମୁଁ ମୁକ୍ତି ପାଇବାକୁ ଚାହେଁ ।

ରାତି ହେଲାରୁ ଟୋକା ସିନ୍ଧୁକ ବାକ୍ସ ଖୋଲି ସୁନା, ରୁପା, ଟଙ୍କା, ମୋହର ସବୁ କାଢିଲା ଆଗରୁ ବନ୍ଦୋବସ୍ତ କରି ରଖିଥିବା ଦଶଜଣ ଲୋକଙ୍କ ମୁଣ୍ଡରେ ସେସବୁ ଲଦି ମାଲୁଣୀ ଘରୁ ଚମ୍ପଟ କଲା ।
ତା'ପରଦିନ ସକାଳେ ସାଧବ ଘରେ ସମସ୍ତେ ଦେଖିଲେ ପୁଅ ଫୁଅ କେହିନାହାନ୍ତି କି ଟଙ୍କା ସୁନା କିଛି ନାହିଁ । ସିନ୍ଧୁକ ବାକ୍ସ ସବୁ ମେଲା । ଏକଥା ରାଜ୍ୟଯାକ ରାଷ୍ଟ୍ର ହୋଇଗଲା । ରାଜ୍ୟସାରା ଚାରିଆଡେ ନିତି ଚୋରି ହେଉଥାଏ । ରାଜା ଡେଙ୍ଗୁରା ଦିଆଇଲେ-ଚୋରକୁ ଯେ ଧରିଦେବ, ସେ ଶହେ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ପାଇବ । ଟୋକା ମାଲୁଣୀଠୁଁ ସବୁ ଖବର ପାଏ ।

ରାଜାଙ୍କ ଗୁରୁଗୋସେଇଁ ଚୋର ଧରିବା ଭାର ନେଲେ । ଟୋକା ମାଲୁଣୀଠୁଁ ଗୁରୁଗୋସେଇଁଙ୍କ ସବୁ ମର୍ମର କଥା ଯୋଗାଡ କଲା । ନିତି ସନ୍ଧ୍ୟାରେ ଗୋସେଇଁ ପୋଖରୀରେ ଲଙ୍ଗଳା ହୋଇ ମନ୍ତ୍ର ସାଧନା କରନ୍ତି । ସେଦିନ ଲଙ୍ଗଳା ହୋଇ ଜପ କରୁଥିଲାବେଳେ ଟୋକା ଗୋସେଇଁଙ୍କ ସବୁଯାକ ଲୁଗାପଟା ନେଇ ପଳେଇଲା । ନାହାକ ସାଜି, ଚିତା ଚନ୍ଦନ ମାରି, କାଖରେ ପୋଥି ଜାକି ଗୋସେଇଁ ଘରେ

ପଡ଼ଥିଲା । ଗୋସେଇଁ ଭାରିଜାଙ୍କ ପୂରା ବିଶ୍ୱାସ ଜନମେଇ କହିଲା, ରାତିରେ ଗୋଟାଏ ଆଚମ୍ୱିତ କଥା ଘଟିବ । ବାଡିଦୁଆରେ ବାଳମୁକୁଳା କରି ଲଙ୍ଗଳା ହୋଇ ଗୋଟାଏ 'ମଡା ଚଣ୍ଡିଆ' ଆସି ଦୁଆର ବାଡେଇବ, ଗୋସେଇଁଙ୍କ ଭଳି ଗଳାରେ କହିବ-ସେ ଗୋସେଇଁ । କବାଟ ଖୋଲିଦେଲେ ବଂଶଯାକଙ୍କୁ ନିପାତ କରିଦେବ । ଏଣୁ ତାକୁ ଜବଦ କରିବାକୁ ଆଗରୁ ପାଣି ଫୁଟେଇ ରଖି ଜଗିଥିବ । ମଡାଚଣ୍ଡିଆ କବାଟ ବାଡେଇଲା ମାତ୍ରେ ତା'ଉପରକୁ ଗରମ ପାଣି ଛାଟି ଟେକା ପକାଇବ, ତାହେଲେ ସେ ପଳାଇବ ।

ଏଣେ ଗୋସେଇଁ ଜପସାରି ଦେଖିଲେ ଲୁଗାପଟା ନାହିଁ । ମୁକୁଳା ବାଳ, ଉଭା ଲଙ୍ଗଳା ହୋଇ ଅନ୍ଧାରରେ ଘର ବାଡିଆଡୁ ଆସି କବାଟ ବାଡେଇଲେ । ଭାରିଯା ଜଳା କବାଟ ବାଟେ ଦେଖି ଭୂସକିନା କବାଟ ଖୋଲି ଗରମପାଣି ବାଲି ଟେକା ଛାଟିଲା । ଗୋସେଇଁ ଅଚେତ । ବଟୀ ଲଗେଇ ଗୋସେଇଁଙ୍କୁ ଚିହ୍ନି ପାରିଲେ । ତହିଁ ଆରଦିନ ରାଜା ସବୁ ଖବର ପାଇ କଟୁଆଳଙ୍କୁ ଚୋର ଧରିବାକୁ ହୁକୁମ ଦେଲେ । କଟୁଆଳ ବୁଦ୍ଧି ବାହାର କରି ହଡିକାଠ ଗୋଟାଏ ତିଆରି କରି ରାତିଯାକ ନଅର ପାଖେ ପହରା ଦେଉଥାଆନ୍ତି ।

ଟୋକା ମାଲୁଣୀଠୁଁ ସବୁ ଖବର ପାଇ ସଜ୍ଜସୁବୁରା କରି ରଖିଥାଏ । ମାଲୁଣୀ ନଅର ପଛପଟେ ଆସିଲାବେଳେ ବାଡିଦୁଆର ଚଳିବାଟ ଖିଳୁଳି ମେଲାରଖି ଆସିଥାଏ । ଟୋକା ସେ ପଟେ ନଅରରେ ପଶିଲା । ଦେହଯାକ ସୁନା ଗହଣା ଛାଇ ପାଟ ଶାଢୀ ପିନ୍ଧିଲା । ଝିଅ ବେଶରେ ଲୋଟା ହାତରେ ଧରି ଦାଣ୍ଡକବାଟ ଖୋଲି ବାହାରିଲା । କଟୁଆଳ ପହରାରେ ଥାଇ ତାକୁ ଦେଖି ଏତେ ରାତିରେ କୁଆଡେ ବୋଲି ପଚାରିଲେ । ନିଜକୁ କେମାଦେଈ କହି ପୋଖରୀ ପାଣି ମାଡିବାରୁ ବାହାକୁ ନଉଠେଇ ବାହାରି ଆସିବା କଥା କହିଲା । ସେ ପାଇଖାନା ସାରି ଆସିବା ଯାଏ ତାକୁ ଜଗିବାକୁ ନେହୁରା ହେଲା । କଟୁଆଳ କେମାଦେଈ କଥା ଟାଳିନପାରି ଜଗିଲେ । ପାଣିସାରି କଟୁଆଳ କଣ ପାଇଁ ପହରା ଦେବା କଥା ପଚାରିଲା । କଟୁଆଳଠୁଁ ସବୁଶୁଣି ଟୋକା କହିଲା ହଡିକାଠରେ କେମିତି ଚୋରଧରା ପଡିବ, ମୋତେ ଟିକିଏ ଦେଖାଇ ଦିଅନ୍ତୁ । କଟୁଆଳ ହଡିକାଠରେ ଗୋଡହାତ ଭର୍ତ୍ତିକଲା ମାତ୍ରେ ଟୋକା ଖିଲବାଡେଇ ଚୁ କଲା । ସକାଳେ ରାଜ୍ୟସାରା ପ୍ରଘଟ ହୋଇଗଲା । ରାଜା ଜାଣିଲେ, କେମାଦେଈ ମୋଟେ ରାତିରେ ପୋଖରୀ ପାଣି ଯାଉନାହାନ୍ତି । କଟୁଆଳ ଲାଜରେ ମୁହଁ ଟେକି ପାରିଲେ ନାହିଁ । ନିଜେ ରାଜା ଚୋର ଧରିବାକୁ ରାତିରେ ଘୋଡସବାର ହୋଇ ଚାରି ହତିଆର ବାନ୍ଧି ବାହାରିଲେ । ଟୋକା ଆଗରୁ ମାଲୁଣୀଠୁଁ ଖବର ପାଇଥିଲା । ଚିରାକନା ପିନ୍ଧି ବୁଢୀବେଶ ହୋଇ ଡିଙ୍କିରେ

ଗୋଟାଏ ଛକି ପକାଇ ମାଣ୍ଡିଆ ପେଶୁଥାଏ । ଘୋଡା ଚଢି ରାଜା ପହଞ୍ଚି କିଏ ବୋଲି ପଚାରିଲେ । ଟୋକା କହିଲା, ମୋର ଘର ନାହିଁକି କେହି ନାହାନ୍ତି । ମୁଁ ମାଣ୍ଡିଆ ପେଷିଲାବେଳେ ଆଠ ଦଶଜଣ ଚୋର ଘୋଡା ଚଢି ନଅରରେ ଚୋରି କରିବାକୁ ବାହାରିଗଲେ । କହି ଯାଇଛନ୍ତି, ଚୋରିକରି ଫେରିଲେ ମାଣ୍ଡିଆ ଜାଉ ଖାଇ କରି ଯିବେ । ସେ ଚୋରଙ୍କୁ ଧରେଇଦେଲେ ରାଜା ବୁଢୀ ପାଇଁ ଘରଦୁଆର ତୋଳାଇ ବହୁତ ଟଙ୍କା ସୁନା ଦେବେ କହିଲେ । ବୁଢୀବେଶୀ ଟୋକା ରାଜାଙ୍କୁ ତା ବେଶରେ ବସି ମାଣ୍ଡିଆ ପେଷିବାକୁ କହିଲା । ଆଉ ରାଜାଙ୍କ ପାଗପୋଷାକ ନିଜେ ପିନ୍ଧି ଚୋର ଧରିବାକୁ ବାହାରିଲା । ରାଜା ତାର ଚିରା ପୋଷାକ ପିନ୍ଧି ମାଣ୍ଡିଆ ପେଷି ବସିଲେ । ଟୋକା ରାଜାଙ୍କ ପାଗପୋଷାକ ପିନ୍ଧି ଚାରି ହତିଆର ବାନ୍ଧି ଘୋଡା ଚଢି ଯାଇ ସିଂହଦୁଆରେ ପହଞ୍ଚିଲା । ଜଗୁଆଳିଯାକ ବିଚାରିଲେ ରାଜା ଆସିଛନ୍ତି । ସେ ଜଗୁଆଳିଙ୍କି କହିଲା, ଫରଚା ହେବା ଆଗରୁ ଗୋଟାଏ ବୁଢୀ ଆସି ସିଂହ ଦୁଆରେ ପହଞ୍ଚିବ । ସେ ଅସଲ ଚୋର । ତାକୁ ବାନ୍ଧି ସକାଳେ ଦରବାରକୁ ଆଣିବ । ତାର ମୁଣ୍ଡକାଟ ହେବ । ଏକଥା କହି ଟୋକା ଘୋଡାରୁ ଓହ୍ଲାଇ ଭିତରକୁ ଯାଇ ଘର ଭିତରେ କବାଟ କିଳି ପଶିଲା ।

ସିନ୍ଦୁରା ଫାଟିଲା । ଚୋରଙ୍କୁ ନ ଦେଖି ରାଜା ସେଇ ଚିରାକନା ପିନ୍ଧି ସିଂହ ଦୁଆରେ ପହଞ୍ଚିଲେ । ରାଜାଙ୍କୁ ଚିହ୍ନି ନପାରି ଜଗୁଆଳିମାନେ ତାଙ୍କୁ ବନ୍ଦୀ ଘରେ ପକାଇଦେଲେ । ପରେ ରାଜାଙ୍କୁ ଗଛା ବାରି ଫିଟେଇ ଦେଲେ ।
ଭିତରୁ ବନ୍ଦ ଘର ବାଡେଇଲେ । ଟୋକା ଭିତରୁ କହିଲା, ରାଜା ନିଜେ ବିଜେ କଲେ କବାଟ ଖୋଲିବ । ରାଜା ଖବରପାଇ ଆସି କବାଟ ବାଡେଇଲେ । ଟୋକା ଭିତରୁ କହିଲା ରାଜା ତା'ଜୀବନ ଦାନ ଦେବେ ସତ୍ୟ କଲେ କବାଟ ଖୋଲିବ । ରାଜା ସତ୍ୟ କଲେ ।

ଟୋକା କବାଟ ବନ୍ଦ କରି ଘରେ ଥାଏ । କବାଟ ବାଡେଇବାରୁ ଟୋକା ଭିତରୁ କହିଲା, ରାଜା ନିଜେ ବିଜେ କଲେ କବାଟ ଖୋଲିବ । ରାଜା ଆସି କବାଟ ବାଡେଇଲେ । ଟୋକା ଭିତରୁ କହିଲା, ରାଜା ତା'ଜୀବନ ଦାନ ଦେବାକୁ ସତ୍ୟ କଲେ କବାଟ ଖୋଲିବ । ରାଜା ସତ୍ୟ କଲେ ।

ଟୋକା କବାଟ ଫିଟାଇ ଗୋଡତଳେ ପଡି ସବୁ ଘଟଣା ବୟାନ କଲା । ମଣିମାଙ୍କୁ ମୋ ଅଜା 'ନେଇଆଣି ଥୋଇ ଜାଣିଲେ ଚୋରିବିଦ୍ୟା ଭଲ' ବୋଲି କହିଥିଲେ । କିନ୍ତୁ ଛାମୁ ଚୋରି କରି ନ ଜାଣିବା ହେତୁ ମାଡ ଖାଇ ଅଜାଙ୍କୁ ସବଂଶେ ଶୁଳୀ ହୁକୁମ ଦେଲେ । ଏବେ ଛାମୁଙ୍କୁ ଜଣା ପଡିଲା 'ନେଇଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ' । ପ୍ରଜା ପାଟକ ପାତ୍ର ମନ୍ତ୍ରୀ ସମସ୍ତେ ଧନ୍ୟଧନ୍ୟ

କଲେ । ରାଜା ତା ମୁଣ୍ଡରେ ମନ୍ତ୍ରୀ ଶିରିପା ବାନ୍ଧେଇ ଜେମାଦେଇ ସଙ୍ଗେ ବିଭା କରାଇ ଦେଲେ ।)

୨୦୧୦୩. ନେଇ ଆଣି ବଣିଜ ଶିଖିବା ।
(ବିକ୍ରୟ ନିମନ୍ତେ ପଦାର୍ଥ ବଜାରକୁ ନେଇ ତାହା ବିକ୍ରୟ ନକରି ଫେରି, ତାହାକୁ ଘରକୁ ଆଣିଲେ, 'ନେଇ ଆଣି ବଣିଜ ଶିଖିବା' ବୋଲି ଲୋକେ କହନ୍ତି ।
*ତାତ୍ପର୍ଯ୍ୟ*- ପଦାର୍ଥ କ୍ରୟ ବିକ୍ରୟର ଭାଉ ନ ବୁଝିଥିବା ବ୍ୟକ୍ତି ବଣିଜ କରିବା ଅନୁଚିତ ।)

୨୦୧୦୪. ନେଉଟିଆ ଶାଗ ପଟାଳି ପଟାଳି, ଅଧେ ମାଡିଗଲା କାକର,
ବାର ବରଷରେ ଯୁବତୀ ଜନିଆଁ, କଥା ତୁ ନ କହ ନାଗର ।

୨୦୧୦୫. ନେଉଟିଆ ଶାଗ ପଟାଳି ପଟାଳି, ଅଧେ ମାଡିଗଲା କାକର,
ତୋ ପରି ରଖିଛି ଛ'ଟା ଭେଣ୍ଡିଆ, ତାପରେ ଗୋଟିଏ ଚାକର ।

୨୦୧୦୬. ନେଉଟିଆ ଶାଗ ଦୁଇ ପତର ଲୋ, ପଡିଗଲା କାକର,
ବରଷେ ଗଲା କି ଛ'ମାସ ଗଲା, କଥା ନକହିଲା ନାଗର ।

୨୦୧୦୭. ନେଉରଟିଏ (= ନେଉଳ) ଦେଇଥିଲି,
ଚାଉର (= ଚାଉଳ) ପୁରିଏ (= ପୁଳିଏ) ଦେଇ,
କଦୀର ପୁଞ୍ଜିଏ ଦେଲେ ମତେ,
ପୁରେଇ ଯିବି (= ପଳେଇ ଯିବି) ମୁହିଁ ।
(ତଳ ଶ୍ରେଣୀର ଲୋକେ ଶବ୍ଦ ଉଚ୍ଚାରଣ କରିନପାରି 'ଳ' ସ୍ଥାନରେ 'ର' ଉଚ୍ଚାରଣ କରନ୍ତି, ଯେପରି - 'ନେଉଳ' ସ୍ଥାନରେ 'ନେଉର', 'ଚାଉଳ' ସ୍ଥାନରେ 'ଚାଉର' 'କଦଳି' ସ୍ଥାନରେ 'କଦୀର' । ସେହିପରି କେତେକ ସ୍ତ୍ରୀଲୋକ ନିଜର ସ୍ୱାମୀଙ୍କର ନାମର ପ୍ରଥମ ଅକ୍ଷର ନଧରି 'ନ' ଅକ୍ଷର ବ୍ୟବହାର କରନ୍ତି । ଯେପରି ସ୍ୱାମୀର ନାମ 'ହରି' ତାକୁ ଡାକିବେ 'ନରି' ।)

୨୦୧୦୮. ନେଉଳ ଧାଉଡି କିଆବାଡ ଯାଏ ।
(ନେଉଳର ନିରାପଦ ସ୍ଥାନ କିଆବୁଦା । ସେହିପରି କୌଣସି କୌଣସି ଲୋକ ଆପଦ ବିପଦରେ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କ ନିକଟକୁ ଯାଇଥାନ୍ତି, ପରାମର୍ଶ ନେଇଥାନ୍ତି ।)

୨୦୧୦୯. ନେଉଳ ଭାଇ, ଯେଣେ ଇଚ୍ଛା ତେଣେ ଯାଇ ।
(ନେଉଳ ଗଳିପଶି ସର୍ବତ୍ର ଯାଇପାରେ । ଗଳିପଶି ବବୁଆଡେ ଲୋକ ସମାଜରେ ବହୁତ ।)

୨୦୧୧୦. ନେଡିଗୁଡ କହୁଣୀକି ବହିଯିବା । (ସୁଯୋଗ ଚାଲିଯିବା ।)

୨୦୧୧୧. ନେଥେଇଫୁଲୀର (= ଫୁଲାପଣ ଦେଖେଇବା) କାନରେ କାପ, (= କାନର ଅଳଙ୍କାର)

କାନ କରୁଥିଲା କାଆପ କପ (= କାନ ବିନ୍ଧିବା) ।
(ଧନ ନଥାଇ ଫୁଲାପଣ ଦେଖାଉଥିବା ସ୍ତ୍ରୀ କାନର ଅଳଙ୍କାର ନଥିବାରୁ କୁହେ - କାନ ବିନ୍ଧୁଛି ବୋଲି ପିନ୍ଧିନାହିଁ ।)

୨୦୧୧୨. ନେପୁରୀ, ସିଙ୍ଘାଣୀ ଖାଏ ହାପୁଡି ।

୨୦୧୧୩. ନେ ବଳଦ ଟାଣିଟୁଣି, ଆଉ ନାହିଁରେ ଦୋଅଡା ପାଣି ।

୨୦୧୧୪. ନେବୁ ରାତି ଆଣିବୁ ରାତି, ତେବେ ଜାଣିବୁ ପୋଢର ଜାତି ।
(ମଇଁଷି ଖରାତାତି ସହିପାରେ ନାହିଁ । ରାତି ଶଗଡ ବୁହାକୁ ପଣ୍ଡା ମଇଁଷି ପାରତି ।)

୨୦୧୧୫. ନେମୁଡି ବେହେରା,
ନେଭୁଆ ଖରା (= ନିଗି ଆସୁଥିବା ଖରାର ରଙ୍ଗ ଚମତ୍କାର),
ଅଚାଳଚାଳିଆ (=ମେଲାରେ ଶୋଉବା ଲୋକ ଚାଳିଆ କଲେ ଦିମାକ୍ ବଢେ)
ବାଳମୂଳିଆ,
ଏ ଚାରିଙ୍କର ବଡ ବେହେରା ।
(କିଛି ନଥିବା ଲୋକର ତେଜ । ଅଚାଳଚାଳିଆ ଅର୍ଥାତ୍, ଯେ ମେଲାରେ ଶୋଉଥିଲା ସେ ଖଣ୍ଡେ ଚାଳିଆ କଲେ ତାର ଦିମାକ୍ ବଢ଼େ ।)

୨୦୧୧୬. ନେ'ରେ ନାହିଁ କି ଦେ'ରେ ନାହିଁ, ନୁଖୁରାରେ ଗେଲ ଯାଉଛି ବହି ।
(ବୃଥା ସୋହାଗ ପ୍ରତି ବ୍ୟଙ୍ଗ ।)

୨୦୧୧୭. ନୋଳିଆ ପିଲାଙ୍କର ସମୁଦ୍ରରେ ଜନ୍ମ ।
(ନୋଳିଆ ସମୁଦ୍ର କୂଳରେ କୁଡିଆ ବାନ୍ଧି ସମୁଦ୍ରରୁ ମାଛଧରା କେଉଟ । ସମୁଦ୍ରରେ ଜୀବନର ଅଧିକାଂଶ ସମୟ କଟେ । ତେଣୁ ସେମାନଙ୍କର ଜନ୍ମ ସମୁଦ୍ରରେ ବୋଲି କହନ୍ତି ।)

୨୦୧୧୮. ନୋଳିଆ ହାତରେ ମାଛ,
ନୋଳିଆ ଦଉଛି ମୁଣ୍ଡ ହଲାଇ, କିଏ ଦେଖିବ ଆସ ।
(ନୋଳିଆ ମାଛ ଧରେ । କାନରେ ନୋଳି ପିନ୍ଧେ । ନୋଳି ଦେଖେଇବା ପାଇଁ ମୁଣ୍ଡ ହଲାଏ ।)

୨୦୧୧୯. ନୋହିବ ଗୋ ସଖୀ ନୋହିବ ,
ତୁମର ନାଗର ଭ୍ରମର ଜାତି, (=ଏକ ପତ୍ନୀ ବ୍ରତ ନୁହେଁ) ।
କଥା ପଡୁ ପଡୁ କହିବ ।
(ନାଗର ଭ୍ରମର ଜାତି - ଏକ ପତ୍ନୀବ୍ରତ ନୁହେଁ, ଅନ୍ୟ ସ୍ତ୍ରୀ ସମ୍ପର୍କରେ ତାର ବଦନାମ ଥାଏ ।)

୨୦୧୨୦. ନୋହିବୁ ନଗାରେ ନଗା (=କଳିଆ), ବୋହିବୁ ମଗାରେ (=ମାଗନ୍ତା) ନଗା,
ନୋହିବୁ ରାଣ୍ଡୀଘରେ ଜୋଇଁ, ଏ ତିନିଙ୍କି ପରତେ ନାଇଁ ।

୨୦୧୨୧. ନୋହିଲା ଘରକୁ ହୋଇଲା ବଳା, ଥିରି ଥିରି କରି କାଟୁଛି ଗଳା ।
(ବୁଢ଼ା କାଳେ ପୁଅଟିଏ ହେଲେ, ପୁଅଟି କ୍ରମେ ଘରର ସର୍ବନାଶ ଘଟାଇଥାଏ ।)

୨୦୧୨୨. ନୋହିଲା ଘରକୁ ହୋଇଲା ଚିଟି (=ଚିଠି)
କରଣ ପାଇଲା ବାର ପୁଟି (= ପଉଟି ଅର୍ଥାତ୍ ୨୦ ଗୌଣୀ ଧାନ) ।
(କଥାରେ ଅଛି, 'ଲେଖୁ ଲେଖୁ କରଣ' । କରଣୀ ସେମାନଙ୍କର ଉଦ୍ଭାବିତ ଅକ୍ଷର। ଦଲିଲ୍, ଦସ୍ତାବିଜ୍ ହିସାବ ଲେଖିବାରେ କରଣମାନେ ଓସ୍ତାଦ୍ ଥିଲେ । ସମ୍ଭବ ଅସମ୍ଭବ ପତ୍ର ଲେଖିବା ବାହାନ କରି ସେମାନେ ମୂର୍ଖ ସାମନ୍ତମାନଙ୍କୁ ଠକୁଥିଲେ । ପତ୍ର ଲେଖିବା ବାବଦକୁ ସେମାନେ ସେମାନଙ୍କଠାରୁ ମୂଲ୍ୟ ଆଦାୟ କରୁଥିଲେ ।)

୨୦୧୨୩. ନିତି ରୋଗୀକୁ କିଏ ଦିଏ ଭାତ
ନିତି ମଢ଼କୁ କିଏ ଦିଏ କାଠ ।
(ପ୍ରତିଦିନ ଗୋଟିଏ କଥା ଶୁଣୁ ଶୁଣୁ ବା ଗୋଟିଏ କାମ କରୁ କରୁ ମଣିଷ ସତର୍କତା ବା ମନୋଯୋଗ ହରେଇ ପକାଏ । ସେବା କରୁ କରୁ ମନର ଦରଦ ମଧ ହରେଇ ପକାଏ । ଯିଏ ଦିନ ପରେଦିନ ରୋଗରେ ସଢୁଥାଏ ବା ରୋଗର ନାଲିସ କରେ, ସେ କ୍ରମେ ମଣିଷର ସହାନୁଭୂତି ହରାଏ । ଦିନପରେ ଦିନ ଯିଏ ଅକ୍ଷମ ବା ଅପାରଗ ହୁଏ, ପ୍ରତିଦିନ ତାକୁ ଅନ୍ନ ଯୋଗାଇବାକୁ ମନ ହୁଏନି । ଏହି କଥାକୁ ବଢ଼େଇ ଚଢ଼େଇ କୁହାଯାଇଛି ଯେ, ଯିଏ ନିତି ମରେ ତା'ର ମଢ଼ ପାଇଁ କାଠ ମଧ ପ୍ରତିଦିନ ଯୋଗେଇ ଦେବା ସମ୍ଭବ ନୁହେଁ । )

୨୦୧୨୪. ନାହାକ ପାଞ୍ଜି ନାହାକ ପୁଥି, ଆଷାଢ଼ ସାତ କେଉଁ ତିଥି ।

୨୦୧୨୫. ନିଜର ଅଶୁଚି ଇଚାପତ୍ର, ନାରୀର ଅଶୁଚି ତୁଳସୀପତ୍ର
ବୋହୂର ଅଶୁଚି ନରକ ବାସ, ଚାକରାଣୀ ଅଶୁଚି ସର୍ବନାଶ ।

(ଆଜିକାଲି ଅନେକ ଜାଣନ୍ତିନି ଯେ ଋତୁମତୀ ନାରୀକୁ ଏକ ସମୟରେ ଅଶୁଚି ବୋଲି ଧରା ଯାଉଥିଲା, ଅନ୍ତତଃ ଋତୁ ହେବାର ପ୍ରଥମ ତିନି ଦିନ ତିନି ରାତି । ସେ ପୂଜା ବା ପୂଜାର ଆୟୋଜନ କରି ପାରିବ ନାହିଁ । ଗୃହସ୍ଥ ଘରେ ଏହାକୁ କଡ଼ାକଡ଼ି ଭାବରେ ମାନୁଥିଲେ । ବିଶେଷ କରି ବୋହୂ, ଝିଅମାନଙ୍କ ପାଇଁ । ସେ କାଳରେ ଭୂମିଶଯ୍ୟାରେ କୁଟା ବା ସତରଂଜି କନ୍ଥା ବିଛେଇ ଶୋଇବାକୁ ପଡୁଥିଲା । (କୁଟା ଫିଙ୍ଗି ଦିଆଯାଉଥିଲା, ସତରଂଜି କନ୍ଥା କଚା ଯାଉଥିଲା ।) ଏହି ଅବସରରେ ରନ୍ଧନ କାର୍ଯ୍ୟ ମଧ ବାରଣ । ଏହି ବିଷୟ ସମ୍ପର୍କରେ ପ୍ରବାଦଟି ପ୍ରଯୁକ୍ତ ।

ନିଜର ଋତୁଚକ୍ରକୁ ବୟସ୍କା ଗୃହିଣୀ ଅତିରିକ୍ତ ମାନିଲେ ସଂସାର ନଷ୍ଟ ହୋଇ ଯାଇପାରେ । ତା'ଛଡ଼ା ମାନସିକ ଦୃଷ୍ଟିକୋଣରୁ ମଧ ଅସୁବିଧା ହୁଏ । ତେଣୁ ନିଜର

ଅଶୁଚି ପଦାର୍ଥ ତୁଚ୍ଛ ବା ଧର୍ତ୍ତବ୍ୟ ନୁହେଁ ।

କେତେକ ସ୍ଥାନରେ ନବବଧୂ ରଜସ୍ୱଳା ହେଲେ, ମହିଳା ମହଲରେ ରୀତିମତ ଉତ୍ସବ ପାଳନ ହେଉଥିଲା । ତାକୁ ଅଲଗା କରି ଶୁଆଇବାର ବ୍ୟବସ୍ଥା ହେଉଥିଲା । ଘର ଘର ଜ୍ଞାତି କୁଟୁମ୍ବମାନଙ୍କ ଏହି କଥାଟି ଜଣେଇ ଦିଆଯାଉଥିଲା । ସେମାନେ ଆସି ଉତ୍ସବ ଆରମ୍ଭ କରୁଥିଲେ । କେହି କେହି ଗୀତ ଆରମ୍ଭ କରି ଦେଉଥିଲେ । ସବୁ ଗୀତ ଯେ ଶ୍ଳୀଳତାର ଗଣ୍ଡି ଭିତରେ ଆବଦ୍ଧ ଥିଲା ତା ନୁହେଁ । ପୁରୁଷମାନେ ଘରୁ ବାହାରକୁ ପଳେଇ ଯାଉଥିଲେ । ଗୀତର ଗୋଟିଏ ପଦ୍କ୍ତି ହେଲା - 'ଜାନକୀ ସୀତାକୁ କାନ୍ଦେଇଲେ / କେମିତି ଯିମୁଁ ଆମେ ଶାଶୁଙ୍କ ସମୀପେ ।' ତିନି ଚାରିଦିନ ପରେ ନଖ କାଟି ମୁଣ୍ଡ ମାଟି ଘସି ସୁଦ୍ଧ ହେବାକୁ ପଡୁଥିଲା । ତା'ପରେ କଦଳୀଗଛର ବେଷ୍ଟନୀରେ ଯାଇ ସୂର୍ଯ୍ୟଙ୍କୁ ଅର୍ଘ୍ୟ ଦେଉଥିଲେ । ବୋଧହୁଏ ଭବିଷ୍ୟତ 'ବଂଶଧର' ମାନଙ୍କର ଶୁଭ ଆଗମନର ପଥ ପରିଷ୍କାର କରିବାକୁ । ତେଣୁ ବୋହୂର ଅଶୁଚି ନରକବାସ ନ ମାନିଲେ ପାପ ।

ଆଉ ଡାକରାଣୀ ପାଇଁ ସର୍ବନାଶ । ପରିଷ୍କାର ପରିଚ୍ଛନ୍ନତା ଆଡ଼କୁ ଦୃଷ୍ଟି ରଖିବା ପାଇଁ ବୋଧହୁଏ ଏହି ପ୍ରବାଦଟି ଆଙ୍ଗୁଠି ନିର୍ଦ୍ଦେଶ କରୁଛି । ବାହାରୁ ଆସିବା ମହିଳା କେତେ ପରିଷ୍କାର ପରିଚ୍ଛନ୍ନ ତାହା ଜାଣିବାର ଉପାୟ ନାହିଁ । ତେଣୁ କେତେଟାଦିନ ସେମାନଙ୍କୁ ଟିକିଏ ଦୂରରେ ରଖିବା ସମିଚୀନ ।

୨୦୧୨୬. ନ ପାଇ ପାଇଛି ଧନ, ବାପ ପୁଅ କୀର୍ତ୍ତନ ।

(କୌଣସି ମଣିଷ ଅକସ୍ମାତ୍ ଧନ ପ୍ରାପ୍ତିରେ ପରିବର୍ତ୍ତନ ଘଟେ ଏବଂ ଚାଲିଚଳନ ମଧ ସ୍ୱଭାବତଃ ବଦଳିଯାଏ । ତେବେ ପରଶ୍ରୀକାତରେ ଅଧିକାଂଶ ଲୋକେ ଏହିପରି ପ୍ରବାଦ ବାକ୍ୟ ଆଉଡ଼ାଇ ଥାଆନ୍ତି । ଲୋକ୍‌ଟିତ ଏତେ ସୌଭାଗ୍ୟ ବା ସ୍ୱଚ୍ଛଳତାରେ ଅଭ୍ୟସ୍ତ ନୁହଁନ୍ତି, ତେଣୁ ଅପ୍ରତ୍ୟାଶିତ ଭାଗ୍ୟର ଉଦୟ ହେତୁ ଦୁଇ ପୁରୁଷ (ବାପ, ପୁଅ) ଧରି ଆନନ୍ଦ ଉଲ୍ଲାସ ପ୍ରକାଶ ପାଏ । ଏହା କେବଳ ଈର୍ଷାକାତର ଲୋକର ଉକ୍ତି ନୁହେଁ । ମଣିଷର ହଠାତ୍ ସୌଭାଗ୍ୟ ଉଦୟ ହେଲେ, ମାତ୍ରା ମଧରେ ରହିବା ପ୍ରକୃତରେ କାଠିକର ପାଠ ।)

୨୦୧୨୭. ନିତି ଭିକ୍ଷା ତନୁରକ୍ଷା ।

(ଯେଉଁ ବ୍ୟକ୍ତିର ଜୀବିକା ଅର୍ଜନର କୌଣସି ପ୍ରୟାସ ନାହିଁ । 'ମାଗିଯାଚି' ସଂସାର ଚଳାଏ । ତେଣୁ ଅଶ୍ରଦ୍ଧାରେ ସେହି ବ୍ୟକ୍ତି ପ୍ରତି ଲୋକମାନଙ୍କର ଏହି କଟୂକ୍ତି ।)

୨୦୧୨୮. ନିତାଇ, ଖାଇ ପିଇ ଶୁଅଇ । (ନିଷର୍ମା ଲୋକ ଉଦ୍ଦେଶ୍ୟରେ କୁହାଯାଏ ।)

୨୦୧୨୯. ନିଆଁ ପାଇଁ ଯାଇ ଝିଅ ସାତଦିନ ରହିଲା,
କେହି କିଛି ନ କହଲୋ, ଜୀଭ ଯାଇ ଅଇଲା ।

୨୦୧୩୦. ନାଡ଼ୀ କାଟିବା ତକ୍ ଅଭ୍ୟାସ ।
(ଚଷା ଘରେ ଦୋକତା ଦେଇ ନାଡ଼ି କାଟନ୍ତି - ଅର୍ଥାତ୍ ଚଷା ପୁଅ ଜନ୍ମରୁ ଦୋକତା ଖାଇବା ଶିଖେ ।)

୨୦୧୩୧. ନୂଆ ଖାଅ ପୁରୁଣା ପିନ୍ଧ
ଶିଳରେ ଛେଚି ପାନ ଖାଅ
ବାଡ଼ି ଭରା ଦେଇ ଚାଲ ।
ପାଚିଲା ବାଳରେ ସୁନ୍ଦର ନାଇବ
ଜନ୍ମଜନ୍ମ ମାଛ-ଭାତ ଖାଇବ ।

୨୦୧୩୨. ନିତି ମାଗନ୍ତାକୁ ଦିଅନ୍ତା ନାହିଁ, ନିତି ଗୁଳ୍ମକୁ ଚାହାଁନ୍ତା ନାହିଁ ।

୨୦୧୩୩. ନିଆଁ ନ ଥାଇ ଧୂଆଁ ।
(କାରଣ ନଥିଲେ କାର୍ଯ୍ୟର ଉତ୍ପତ୍ତି ହୁଏ ନାହିଁ । ଯେପରି କାହା ନାମରେ କୌଣସି ଦୁର୍ନାମ ଶୁଣାଗଲେ ଏହାର ବ୍ୟବହାର ।)

୨୦୧୩୪. ନେଇ ଯାହା, ଦେଇ ତାହା ବୋଲାଉଛ ଚଢ଼ବାହା ।
(କୌଣସି ବ୍ୟକ୍ତି କାହାଠାରୁ କିଛି ଛଡାଇ ନେଇ ଅପର ଜଣକୁ ତାହା ଦେଲେ ଏହାର ବ୍ୟବହାର ।)

୨୦୧୩୫. ନାଡି ଦୁହାଁ ନ କର ମୋତେ, ଅଧା ଦିଧା କରିବି ତୋତେ ।
ଏବେ ପି, ଗଡ ନଉଠିଲେ କରିବି କି ?
(ପିଲାମାନଙ୍କୁ ବାଲ୍ୟକାଳରୁ ଖାଦ୍ୟ ପେୟ ପ୍ରତି ଅନାସ୍ଥା କଲେ ସେମାନେ ଅଳ୍ପବୟସରେ ମରିଯାନ୍ତି ଏବଂ ଯୌବନାବସ୍ଥାରେ ଖାଇବାକୁ ପାଇଲେ ମଧ୍ୟ ଖାଇ ପାରନ୍ତି ନାହିଁ । ଏହି ଉକ୍ତି ପ୍ରତ୍ୟୁକ୍ତି ବାଳୁରୀ ଓ ଗଉଡର ଅଟେ । ଅତଏବ ଖାଦ୍ୟ, ଶିକ୍ଷା, ବ୍ୟାୟାମ ପ୍ରତି ଅତି ଶୈଶବକାଳରୁ ଦୃଷ୍ଟି ଦେବା ଆବଶ୍ୟକ ।)

୨୦୧୩୬. ନ ଦେଖିଲେ କାନ୍ଦୁଥାଏ, ଦେଖିଲେ କଥା ନ କହେ ।
(ଭକ୍ତ ଈଶ୍ୱରଙ୍କୁ ସାକ୍ଷାତ୍କାର କରିବା ଲାଗି ସର୍ବଦା ଆରାଧନା କରୁଥାଏ, ସେ ଆସି ଉପସ୍ଥିତ ହେଲେ ଏ ଆନନ୍ଦରେ ମୁଗ୍ଧ ହୋଇ କିଛି ପ୍ରକାଶ କରିପାରେ ନାହିଁ । ଆଉ ମଧ୍ୟ ସ୍ନେହାଧିକ୍ୟରେ ପ୍ରିୟ ଜନଙ୍କଠାରେ ଓ ସ୍ତ୍ରୀ ପୁରୁଷଙ୍କଠାରେ ଏହିଭାବ ଦେଖାଯାଏ ।)

୨୦୧୩୭. ନ ଫିଟିଲେ ମୁଖ, ନ ଯାଏ ଦୁଃଖ ।
(କେହି କାହାର ଦୁଃଖ ନ ଜଣାଇଲେ, କେହି କାହ କଥା ବୁଝନ୍ତି ନାହିଁ । ଏହି ସ୍ଥାନରେ ଏହାର ବ୍ୟବହାର ।)

୨୦୧୩୮. ନବାବି ଚାଲି ।
(ମୁସଲ୍‌ମାନ ରାଜତ୍ୱ କାଳରେ ନବାବ ଥିଲେ । ତାହାଙ୍କର ବିଳାସତା ଅତ୍ୟଧିକମାତ୍ରାରେ ଦେଖା ଯାଉଥିଲା । ସେ ବହିର୍ଭୂମି ଗଲେ ଗୋଲାପ ଅତର କାଳରେ ପାଣି ସାରନ୍ତି, ୮୦ ଟଙ୍କିଆ ସେର ତମାଖୁ ଗୁଡାଖୁ ଖାଆନ୍ତି, ଇତ୍ୟାଦି । ଯଦି କୌଣସି ନିର୍ଦ୍ଧନ ବଡଲୋକି ବ୍ୟବାହାର କରେ, ତେବେ ଏହାର ବ୍ୟବହାର ।)

୨୦୧୩୯. ନପଢ଼ି ପଣ୍ଡିତ ।
(ଯେ କିଛି ନ ଜାଣି, ନ ଶୁଣି ବାଗାଡମ୍ବର ଦେଖାଏ, ତାହାଠାରେ ଏହ ପ୍ରଯୁଜ୍ୟ ।)

୨୦୧୪୦. ନିଜ ଦହିକି କେହି ଖଟା କହେ ନାହିଁ ।
(ନିଜର ପଦାର୍ଥକୁ ସମସ୍ତେ ପ୍ରଶଂସା କରନ୍ତି । ଏହା ବ୍ୟବସାୟୀମାନଙ୍କ ନିକଟରେ ବ୍ୟବହୃତ ।)

୨୦୧୪୧. ନୂଆ ନୂଆ ତେନ୍ତୁଳି ମଞ୍ଜି, ପୁରୁଣା ହେଲେ ଚାଳରେ ଗୁଞ୍ଜି ।

୨୦୧୪୨. ନୂତନ ବସ୍ତ୍ର ପୁରୁଣା ଅନ୍ନ,
ଏଉ ରହିଥାଉ ଜନ୍ମ ଜନ୍ମ, ତୁମ କୃପାରୁ ଜୀବନ ଧନ୍ୟ ।

୨୦୧୪୩. ନୋଳିଆ ଘରେ ଜଳେ ବତୀ, ପାଣି ପିଇବ କି ପୁତ୍ରବତୀ ?

୨୦୧୪୪. ନା ଯିବି ନଗର, ନା ହବ ଝଗଡ଼ ।

୨୦୧୪୫. ନାହି କାଟୁ କାଟୁ ନାଙ୍ଗଟିବି କଟିଗଲା,
ଧାଉ ବୁଢ଼ି କି ଭୁଲ୍ ଯେ ନକଲା ।

୨୦୧୪୬. ନ ଛତ୍ର ନ ବସ୍ତ୍ର କରିବା, ତନ୍ଲ ନନ୍ଲ କରିବା ।

୨୦୧୪୭. ନାହିଁତ ପାଞ୍ଜି ନାହିଁତ ପୁଥି, ଆଷାଢ଼ ସାତରେ ଅମ୍ବୁବାଚୀ ।
(ଜ୍ୟେଷ୍ଠ ସଂକ୍ରାନ୍ତି ପରେ ସୂର୍ଯ୍ୟ ମିଥୁନ ରାଶିକୁ ଗମନ କରନ୍ତି । ଏତିକି ବେଳେ ଆଦ୍ରା ନକ୍ଷତ୍ରର ପ୍ରଥମ ପାଦ ଭୋଗ ହେବା ସମୟରେ ହିନ୍ଦୁ ବିଧବାମାନଙ୍କର ଅଗ୍ନିପକ୍ୱ ଖାଦ୍ୟ ଗ୍ରହଣ ନିଷେଧ । ଅମ୍ବୁବାଚିରେ ଦୁଧ ପିଇଲେ ସାପର ଭୟ ଘୁଞ୍ଚିଯାଏ ।)

୨୦୧୪୮. ନିଜେ ନିଜର ଶତ୍ରୁ ମିତ୍ର ।

୨୦୧୪୯. ନିଜ ହାତରେ ସମସ୍ତେ ତିନିହାତ ଅଧେ ।

୨୦୧୫୦. ନିଜ ଗୋଡରେ ଚାଲ ।
(ନିଜେ ରୋଜଗାର କରି ପରିବାରକୁ ପ୍ରତିପୋଷଣ କରିବାକୁ ଉପଦେଶ)

୨୦୧୫୧. ନିଜ ଗୋଡରେ ଠିଆ ହୋଇଛି ।
(ପର ଉପରେ ନିର୍ଭରଶୀଳ ନହୋଇ ନିଜେ ରୋଜଗାର କରିବାକୁ ଉପଦେଶ ।)

୨୦୧୫୨. ନିଜତ୍ୱ କିଛି ନାହିଁ ।
(ଯିଏ ପର ଉପରେ ନିର୍ଭରଶୀଳ ହୁଏ ସେ ନିଜତ୍ୱ ହରାଇବସେ ।)
୨୦୧୫୩. ନିମକ୍ ହାରାମକୁ ଦାନା ମିଳେ ନାହିଁ ।
୨୦୧୫୪. ନିଜର କାମ ନିଜେ କର । (ଉପଦେଶ ବଚନ)
୨୦୧୫୫. ନିଜେ ଗୁରୁ ନିଜେ ଚେଲା ।
୨୦୧୫୬. ନିର୍ଦ୍ବନ୍ଦୋ ପରମଂ ପଦଂ ।
୨୦୧୫୭. ନିନ୍ଦିତ କର୍ମ ଯେ କରଇ । ଉଦ୍ଧବ ଜାଣ ଇଚ୍ଛା ସେହି । (ଜଗନ୍ନାଥ ଭାଗବତ)
୨୦୧୫୮. ନିତ୍ୟ ଭୋଖୀକି କେତେ ଦେବ ? ନିତ୍ୟ ରୋଗୀକି କେତେ ଦେଖିବ ?
୨୦୧୫୯. ନିର୍ଧନସ୍ୟ କୁତୋସୁଖଂ ।
୨୦୧୬୦. ନିର୍ଲ୍ଲଜ ଗାଣ୍ଡୀରେ ଖଡା ଗଛେ ।
୨୦୧୬୧. ନିର୍ଲ୍ଲଜଂ ଗଳଗଜଂ ।
୨୦୧୬୨. ନୀଚା ମହତ୍ତ୍ୱଂ ଗତା । (କଳିଯୁଗ)
୨୦୧୬୩. ନୀର କ୍ଷୀର ପରି ଅଭେଦ ପ୍ରୀତି ।
୨୦୧୬୪. ନିରାଶ୍ରୟଂ ମାଂ ଜଗଦୀଶ ରକ୍ଷେତ୍ ।
(ଯାହାର କେହି ଆଶ୍ରା ନାହିଁ ତାକୁ ଈଶ୍ୱର କେବଳ ରକ୍ଷା କରନ୍ତି ।)
୨୦୧୬୫. ନିଷାଞ୍ଚନୋ ସୁଖିନୋ ଭବନ୍ତି ।
୨୦୧୬୬. ନୂଆଁ ନୂଆଁ ନଳିତା ଖାଉଁ ଖାଉଁ ପିଇ ।
୨୦୧୬୭. ନୂଆଁ ନୂଆଁ ଆଦର, ପୁରୁଣା ହେଲେ ଛି କର ।
୨୦୧୬୮. ନବ୍ୟବାସ ନବ୍ୟବସ୍ତ୍ର ନବ୍ୟବନ୍ଧୁ ନାବଙ୍ଗନା ।
ଏତେଷାଂ ନବୀନାଦ୍ଦ୍ଦତଂ ସେବକାନ୍ନ ପୁରାତନଂ ।।
୨୦୧୬୯. ନୋହୁ ପଛେ ଲଗ୍ନ, ବଚର ନୋହୁ ଭଗ୍ନ ।
୨୦୧୭୦. ନୋହୁ ପଛେ ସିଂହାସନ, ଭିକ୍ଷାମାଗି ଯାଉଦିନ ।
୨୦୧୭୧. ନା' ଉପରେ ଗାଡି, ଗାଡି ଉପରେ ନା' ।
୨୦୧୭୨. ନାହିଁ ଧନ ଅଛି, ଅଛି ଧନ ନାହିଁ ।
୨୦୧୭୩. ନାଥେ ବୋଇଲେ ବେଗେ ଯାଅ ।
୨୦୧୭୪. ନିନ୍ଦନ୍ତୁ ନୀତିନିପୁଣାଃ ଯଦି ସ୍ତୁବନ୍ତୁ ।
ଲକ୍ଷ୍ମୀ ସମାବଶତୁ ଗଚ୍ଛତୁ ବା ଯଥେଚ୍ଛମ୍ ।
ଅଦୈବ୍ୟ ବା ମରଣମସ୍ତୁ ଯୁଗାନ୍ତରେ ବା ।
ନ୍ୟାୟାତ୍ ପଥଂ ପ୍ରବିଚଳନ୍ତିପଦଂ ନ ଧୀରାଃ ।

୨୦୧୭୫. ନାମ୍‌କା ବାସ୍ତେ କାମ୍‌କା ନହାଁ ।

୨୦୧୭୬. ନୌକର, ନ ଉକର ।
(=ଦୋଷ ଦେଖାଇ ଗାଳିଦେବା । ନୌକର ଅର୍ଥ ଚାକର । ଅର୍ଥାତ ଯିଏ ଦୋଷ ଦେଖାଇ ଗାଳି ଦିଏ ନାହିଁ ।)

୨୦୧୭୭. ନାମ ଲଛମନ୍, ଗିଳ୍‌ଭର ଖସୁ ।

୨୦୧୭୮. ନାମେ ଶରଣ, ଜୀବେଦୟା ।
(ଈଶ୍ୱରଙ୍କର ଶରଣ ପଶିବ ଏବଂ ଜଗତର ପ୍ରତ୍ୟେକ ପ୍ରାଣୀକୁ ଦୟା କରିବ ।)

୨୦୧୭୯. ନାଭିରୁ ପାଦେ କାଡ଼ିଲା ।

୨୦୧୮୦. ନାଭି ଦୈତ୍ରକୁ ସୀତା ମାରିଥିଲେ ।

୨୦୧୮୧. ନୂଆଁ ବାବାଜୀ ଛଟେ ବାଏ ।

୨୦୧୮୨. ନୂଆଁ ଧର ପୁରୁଣା ଛାଡ଼େ ।

୨୦୧୮୩. ନିର୍ଲ୍ଲଜ ଘରେ ସେଠରା କୁଣିଆଁ ।

୨୦୧୮୪. ନ ଦେବାୟ ନ ଧର୍ମାୟ ।

୨୦୧୮୫. ନଷ୍ଟାକ୍ଷେ ଭାଗବତା ଭବନ୍ତି ।

୨୦୧୮୬. ନୀଚର କଥା କଇଁଛର ମଥା ।

୨୦୧୮୭. ନାକଧରି ଟାଣିଲେ ମୁହଁ ଆପେ ଆସେ ।

୨୦୧୮୮. ନଇ କୂଳିଆ ବନ୍ଧୁ । ନଇ କୂଳିଆ ବୃକ୍ଷ ।

୨୦୧୮୯. ନ ସ୍ଥାନଂ ତିଳଧାରଣେ ।

୨୦୧୯୦. ନ ଦେବୋ ସୃଷ୍ଟି ନାଶକଃ ।

୨୦୧୯୧. ନିୟତି କେନ ବାଧତେ ।

୨୦୧୯୨. ନବ୍ରୁୟାତ୍ ସତ୍ୟମପ୍ରିୟମ୍ ।

୨୦୧୯୩. ନ ଦୁଃଖୋ ପଞ୍ଚରିର୍ସହ ।

୨୦୧୯୪. ନ ଦୈବାତ୍ ପରଂବଳଂ ।

୨୦୧୯୫. ନ ହରିଃ ଶଙ୍କରୋବ୍ରହ୍ମାଃ ।

୨୦୧୯୬. ନାହଙ୍କାରାତ୍ ପରୋରିପଃ ।

୨୦୧୯୭. ନ ନିମ୍ବଂ ମଧୁରାୟତେ ।

୨୦୧୯୮. ନହି ବିନ୍ଧ୍ୟା ବିଜାନାତି ଗୁର୍ବୀ ପ୍ରସବ ବେଦନା ।

୨୦୧୯୯. ନାଗ ମଧ୍ୟେ ଶେଷ ବଡ଼ । ପକ୍ଷୀଙ୍କ ଶ୍ରେଷ୍ଠଟି ଗରୁଡ଼ ।

ଦେବଙ୍କ ଶ୍ରେଷ୍ଠ କୃଷ୍ଣ ଯେହ୍ନେ । ମାନବ ଶ୍ରେଷ୍ଠ ଯେ ବ୍ରାହ୍ମଣେ ।
ତେମନ୍ତ ବ୍ରତଙ୍କ ବିଶିଷ୍ଟ । ଏ ଏକାଦଶୀ ବ୍ରତ ଶ୍ରେଷ୍ଠ ।

୨୦୨୦୦. ନୃପତି ହୋଇ ଯେ କରେ ନ୍ୟାୟରେ ଅନ୍ତର,
ପତି ତେଜି ପତ୍ନୀ ଯେବେ ଭଜେ ଅନ୍ୟ ନର ।
ଯତି ହୋଇ ଯେବେ ରଖେ ନାରୀ କି ଆଶା ।
ପଣ୍ଡିତ ହୋଇଣ ଯେ ନ କହଇ ସତ୍ୟ ଭାଷା ।
କାମୀ ହୋଇଣ ଯଦ୍ୟପି କରେ ଜୀବ ବଧ,
ପୁତ୍ର ହୋଇ ଯଦି ନ କରେ ପିତୃ ଶ୍ରାଦ୍ଧ ।
ଶୁଦ୍ର ହୋଇ ଯଦ୍ୟପି ହରେ ବିପ୍ର ନାରୀ,
ସଭା ମଧେ ବସି ଯେହୁ କହେ ପକ୍ଷ କରି ।
ଦେବତା ବିପ୍ରର ଯେହୁ ହରେ ଦାନ ବୃତ୍ତି,
ସାଧୁକୁ ନ ସେବି ଯେହୁ ଅର୍ଜେ ଅପକୀର୍ତ୍ତି ।
ଗୁରୁଙ୍କର ଶିଷ୍ୟ ଯେବେ ଲୁଚଇ ଦେଖିଲେ,
ସେ ସର୍ବ ଲୋକ ପଡନ୍ତି ନର୍କେ ଜାଣ ଭଲେ ।

୨୦୨୦୧. ନିଁକି ନିଁକି (=ଛୋଟ) ମାଛ ମିନେଇ ମାଛଲୋ, କାହା ପତରରେ ଦେବି,
ନିଜ ଗେରସ୍ତକୁ କବାଟ କିଳିଣ ଘୋଡା ନାଚ ଦେଖି ଯିବି ।

୨୦୨୦୨. ନାଡି ଶାଗ ବୁଦି ବୁଦି,
ଭାଉଜ ଗୋଡରେ ଯାଉଁଳି ମୁଦିଲୋ,
ହରି ବସେ କୁଦି କୁଦି ।

୨୦୨୦୩. ନଡିଆ ସାଙ୍ଗରେ ମୁଢ଼ି,
ଟିକିଲି ସିନ୍ଦୁର କେତେ କିଣୁଛୁ ଲୋ,
ହୋଇଚ ଗଲୁଣୀ ବୁଢ଼ୀ ।

୨୦୨୦୪. ନାକ ନୋଥ ଦାଉ ଦାଉ,
ଏଇ ନାକନୋଥ ଦିଅର ନେବ ଲୋ,
ରାଜିନାମା ଲେଖି ଦେଉ ।

୨୦୨୦୫. ନଣ୍ଡା ତୁଣ୍ଡ ଟାକୁ ଟାକୁ,
କାହୁଁ ଆଣିଥିଲି ଥାକୁଲିଟାକୁ ଲୋ,
ଚୂଡାକୁଟି ଖାଇବାକୁ ।

୨୦୨୦୬. ନେଉଳ ଉପରେ କୁଶ,
ଦେଢଶ୍ୱଶୁର ଡାକେ ଭାଇ ବୋହୂକୁ,
ଭାତ ଦେଇଯିବ ଆସ ।
୨୦୨୦୭. ନୂଆ ଚାଉଳର କ୍ଷୀରି,
ଝୁଣ୍ଟିଆ ଶବଦ ଚମକାଇ ଦେଲା,
ଏଇ ବାଟେ ଗଲା ଗୋରୀ ।
୨୦୨୦୮. ନାଟୁଆ ଘରର ଦହି,
ବଣିଆ ଘରର ଦେଶୀ ସିନ୍ଦୁର ଲୋ,
ମଥାକୁ ପଡୁଛି ବହି ।
୨୦୨୦୯. ନହର ଉପରେ ଘର,
ସୁନାଖମ୍ବ ପରି ତିନି ଦିଅର ଲୋ,
ଚନ୍ଦର ଉଦିଆ ବର ।
୨୦୨୧୦. ନଡିଆ ଚୋକେଇ ପୁଞ୍ଚିପୁଞ୍ଚିକା ଲୋ,
ଶୋଲ ଶାଗ ତୋଳିବାକୁ,
ବାପା ଦେଇଛନ୍ତି ବୁଢା ବରକୁ ଲୋ,
ଚାଳ ଧରି କାନ୍ଦିବାକୁ ।
୨୦୨୧୧. ନାରୀମାନେ ଅଟନ୍ତିଟି ସଂସାରରେ ସାର,
ନାରୀ ନଥିଲେଟି ନ ହୋଇବ ସଂସାର ।
ନାରୀ ବିନା ପୁରୁଷର ନାହିଁ କିଛି ଗତି,
ନାରୀ ଜଗତରେ ମୂଳ ଜାଣ ପ୍ରିୟବତୀ ।
ନାରୀ ଧର୍ମେ ପୁରୁଷର ହୁଅଇ ଧରମ,
ନାରୀ ବିନା ପୁରୁଷର ନାହିଁ କିଛି କର୍ମ ।
୨୦୨୧୨. ନାରୀ ରୋଷ ହୋଇ ସ୍ୱାମୀକି ନିନ୍ଦନ୍ତି
ଜନ୍ମେ ଜନ୍ମେ କୁମ୍ଭୀପାକ ନରକେ ପଡନ୍ତି ।
ଯଉବନ ଗର୍ବେ ପର ସଙ୍ଗେ ପ୍ରୀତି କରେ ।
ଯମଦୂତେ ନେଇ ତାକୁ ପକାନ୍ତି ନର୍କରେ ।।
ଶାଶୁ ଶ୍ୱଶୁରଙ୍କୁ ନିନ୍ଦେ କରି ଗାଳି ଦ୍ୱନ୍ଦ ।
କାହାରିକୁ ନ ମାନଇ ଧନେ ହୋଇ ଅନ୍ଧ ।।

ଜୀଇଁଥିବା ଯାଏ ସେହି ଦୁଃଖ ପାଉଥାଏ ।
ନାନା ରୋଗ ହୁଏ ତାକୁ ଅତି କଷ୍ଟ ପାଏ ॥

୨୦୨୧୩. ନାରୀ ନ ହେଲେ ଡିକସିନାରୀ ।

୨୦୨୧୪. ନିରାମୟଂ ରାମ ରସାୟନ ପିବ ।
(ନିଜେ ସୁସ୍ଥ ସବଳ ଓ ସତେଜ ରହିବା ପାଇଁ ରାମ ରୂପକ ରସ ପାନ କରିବ ।)

୨୦୨୧୫. ନିଜ ପାଇଁ ବଞ୍ଚେ ଯେଉଁ ଜନ,
ତାଠୁଁ ଭଲ ତାହାର ମରଣ ।
ଅନ୍ୟପାଇଁ ବଞ୍ଚେ ଯେଉଁ ଜନ,
ସଫଳ ହୁଏ ତାହାର ଜୀବନ ।

୨୦୨୧୬. ନାରୀର ମାୟା - ଆଶ୍ଚର୍ଯ୍ୟର ପଟାନ୍ତର ନାହିଁ ।
(ଯେତେ ବଡ ଶକ୍ତି ହେଲେ ମଧ ମୋହାଚ୍ଛନ୍ନ ହୋଇ ପଡିବ । ରମଣୀ ରୂପର ମୋହ ଠାରୁ କୌଣସି ମତେ ମୁକ୍ତ ହୋଇ ପାରୁ ନାହାଁନ୍ତି ଓ ସେହି ମାନସ ସୁପ୍ତିରୁ ଜାଗ୍ରତ ହୋଇ ପାରୁ ନାହାଁନ୍ତି ।)

୨୦୨୧୭. ନିର୍ମାଣ କାର୍ଯ୍ୟ ଆରମ୍ଭ କରି ଉପକରଣ ବା ଧନାଦି ସରବରାହରେ ବିଘ୍ନ ଉପସ୍ଥିତି ହେବା ବା ପରମୁଖାପେକ୍ଷୀ ହେବା, କେବଳ ଶିଳ୍ପକର୍ମ କାହିଁକି, ଯେ କୌଣସି ବୃହତ୍ କର୍ମ ପକ୍ଷରେ କ୍ଷତି କାରକ ଏବଂ ସମୟ ସାପେକ୍ଷ । ଅନେକ ସମୟରେ ସେ କାର୍ଯ୍ୟ ମଧ ସାଧିତ ହୁଏ ନାହିଁ ।

୨୦୨୧୮. ନିଜ ଦେହର କୌଣସି ଅଂଶ ଅଚିକିତ୍ସିତ ଭାବରେ ବିଷାକ୍ତ ହେଲେ ତାହାକୁ ମଧ ତ୍ୱତକ୍ଷଣାତ ତ୍ୟାଗ କରିବାକୁ ପଡେ ।

୨୦୨୧୯. ନଗ୍ନମୂର୍ତ୍ତିମାନ ମନ୍ଦିର ପୃଷ୍ଠରେ ଖୋଦନ କରାଯିବାର କାରଣ ବିଶେଷଜ୍ଞମାନଙ୍କ ମତରେ ତିନୋଟି : -

(୧) ମନ୍ଦିର ଗୁଡିକୁ ବଜ୍ରପାତରୁ ରକ୍ଷା କରାଯିବାର ଉଦ୍ଦେଶ୍ୟରେ ଏ ପ୍ରକାର ମୂର୍ତ୍ତିର ଅବତାରଣା ଶିଳ୍ପୀମାନଙ୍କର ପାରମ୍ପାରିକ ଧାରଣା ।

(୨) ମନ୍ଦିରକୁ ଦେବ ଦର୍ଶନ ଉଦ୍ଦେଶ୍ୟରେ ଆସୁଥିବା ଲୋକମାନଙ୍କ ଧର୍ମ ଧାରଣର ପରୀକ୍ଷା କରିବା ପାଇଁ ଶିଳ୍ପୀମାନେ ତତ୍ କାଳୀନ ସମାଜ ପତିମାନଙ୍କ ନିର୍ଦ୍ଦେଶରେ ଏ ପ୍ରକାର ଅଶ୍ଳୀଳ ଖୋଦନ କରିଛନ୍ତି ।

(୩) ଓଡିଶାରେ ଯେତେବେଳେ ତନ୍ତ୍ରଯାନର ପ୍ରବର୍ତ୍ତନ ଫଳରେ ମନ୍ଦିର ମାନଙ୍କରେ ଏପରିକି ବୈଷ୍ଣବ ମନ୍ଦିରମାନଙ୍କରେ ମଧ ତନ୍ତ୍ର ଶାସ୍ତ୍ର ସମ୍ମତ ମିଥୁନ ଓ ନଗ୍ନ ମୂର୍ତ୍ତିମାନ ଖୋଦନ କରାଇ ତନ୍ତ୍ର ଉପରେ ଲୋକଙ୍କର ଆସ୍ଥା ଅର୍ଜନ କରିବା ପାଇଁ

ଚେଷ୍ଟା କରାଯାଉଥିଲା । ଏହି ତିନି ପ୍ରକାର ମତ ମଧ୍ୟରୁ ୩ୟ ମତଟି ଐତିହାସିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ବୋଲି କୁହାଯାଏ । କାରଣ ସର୍ବ ଭାରତୀୟ ସ୍ତରରେ ତନ୍ତ୍ରୀମାନଙ୍କର ଯେଉଁ ଚାରୋଟି ପୀଠ ଅଛି ସେଥି ମଧ୍ୟରେ ଉଡ୍ର (ଓଡ଼ିଶା) ପୀଠ ପ୍ରଥମ ସ୍ଥାନ ଅଧିକାର କରିଛି ।

୨୦୨୨୦. ନ ବିଚାରି ହଠାତ୍ କୌଣସି କାର୍ଯ୍ୟ କରିବ ନାହିଁ । ଯେ ବିଚାର କରି କାର୍ଯ୍ୟ ନ କରେ ସେ ବହୁତ ବଡ ବଡ ବିପଦରେ ପଡେ । ଯେ ବିଚାର କରି କାର୍ଯ୍ୟ କରେ, ଲକ୍ଷ୍ମୀ ଆପେ ଆପେ ତା ପାଖରେ ପହଞ୍ଚନ୍ତି ।

୨୦୨୨୧. ନାହିଁ ସେ ଧୂପ ଧୂଆଁର ଗନ୍ଧେ
ନାହିଁ ସେ ବେଦ କୋରାନ ଛନ୍ଦେ ।
ସେ ଯେ ହୃଦୟର ଦେବତା ।

୨୦୨୨୨. ନାଁଟା କୋଟେଇଚୁଣିର ଝିଅ,
ବିଜିବିଟା ଦେଖିଲେ ବୋଲେ ଇଟା କି?

୨୦୨୨୩. ନିଜ ଦେଶ ମଶାଣିକି ଡର, ପରଦେଶ ପାଣିକି ଡର ।

୨୦୨୨୪. ନିତି ମାଗନ୍ତାକୁ ଦିଅନ୍ତା ନାହିଁ, ନିତି ମରୁକୁ ଦେଖନ୍ତା ନାହିଁ ।

୨୦୨୨୫. ନିଲଜ ଗାଏ, ସଲଜ ବାଏ, ଅତି ଅଲାଜୁକ ନାଚି ନାଚି ଯାଏ ।

୨୦୨୨୬. ନିଲଜ ଲାଉ, ଟେକି ଟାକି ଦେଲେ ପିଢ଼ାକୁ ଯାଉ ।

୨୦୨୨୭. ନିଲଜ ଜୀବନ ଟହ ଟହ ହସେ,
ନିଶ ପୋଡ଼ିଗଲେ ଜୁଡ଼ା ଆଉଁଷେ ।

୨୦୨୨୮. ନିର୍ଲଜ ପରାଣ କଲବଲ, କୁଣ୍ଡାପିଠା ଖାଏ ବଲବଲ ।

୨୦୨୨୯. ନିଜ ସଜ ସଜ, ପର ସଜ ଅସଜ ।

୨୦୨୩୦. ନୂଆ ନୂଆ ଯେତେ ଆଦର,
ପୁରୁଣା ହୋଇଲେ ଘଷା ପଥର ।

୨୦୨୩୧. ନୋହିଲା ଘରର ହୋଇଲା ବଳା,
ଲାହି ବୋଲିକରି କାଟୁଛି ଗଳା ।

୨୦୨୩୨. ନୋହିଲା ଘରର ହୋଇଲା
ଛତାଧରା ଘରେ ଛଅ ପୋଇଲା ମୋ
ତା' ତା' ବୋଲି ବୋଇଲା ।

୨୦୨୩୩. ନୋକି ଥିଲେ ପଢି ନାହିଁ, ପଢି ଥିଲେ ନୋକି ନାହିଁ ।

୨୦୨୩୪. ନିଜ ବୁଦ୍ଧିରେ ଠାକୁର, ପର ବୁଦ୍ଧିରେ କୁକୁର ।

୨୦୨୩୫. ନିଆଁ ନଥାଇ ଧୂଆଁ ନ ବାହାରେ ।

୨୦୨୩୬. ନିଶ ପାଣିରେ କି ଶୋଷ ଯାଏ ।

୨୦୨୩୭. ନାକରେ ଦଉଡ଼ି ବେକରେ ବନ୍ଧା ।

୨୦୨୩୮. ନିଜେ ଭଲ ତ ସଂସାର ଭଲ ।

୨୦୨୩୯. ନିଶତକୁ ଭଉଣୀ ଜୋଇଁ ଭଲ ।

୨୦୨୪୦. ନିଜ ଶିଙ୍ଗରେ ମାଟି ନ ତାଡ଼ିଲେ,
କେହି ତାଡ଼ି ଦେବେ ନାହିଁ ।

୨୦୨୪୧. ନିଜ ଡିଣ୍ଡିମ ନିଜେ ନ ବଜେଇଲେ,
କେହି ବଜେଇ ଦେବେ ନାହିଁ ।

୨୦୨୪୨. ନିଜ ଦୁଃଖକୁ ହାଡ଼ି ବାଉରି ନାହିଁ,
ପରଦୁଃଖ କିଏ ପଚାରେ ?

୨୦୨୪୩. ନେଇ ଆଣି ଥୋଇ ଜାଣିଲେ ଚୋରିବିଦ୍ୟା ଭଲ ।

୨୦୨୪୪. ନଅ ଦାନ୍ତିଆ, ଛଅ ଦାନ୍ତିଆ, ଭାଗ୍ୟେ ଥିଲେ ପାଇ,
ସାତ ଦାନ୍ତିଆ, ଗୋସେଇ ଖାଇ (= ବଳଦ ସମ୍ପର୍କରେ) ।

୨୦୨୪୫. ନୂଆ ଜାହାଜର କଣ୍ଡା,
କିଣି ଦେଇଥିବି ଡୋରିଯା ମଠାଲୋ
ଭାଙ୍ଗି ଚାଲୁଥିବୁ ଅଣ୍ଡା ।

୨୦୨୪୬. ନାଆମଙ୍ଗେ ନହୁରୁଣୀ,
ନାଆ ମଙ୍ଗ ଧରି କିଏ କାନ୍ଦୁଛିଲୋ,
ଗୋପପୁର ଗଉଡୁଣୀ ।

୨୦୨୪୭. ନିରାକ୍ଷି ଅନାଉଁ କେତେ,
ମୋର ବିନୋଦିଆ ତୋଠାରୁ ସୁନ୍ଦର,
ଗୋଲାମ ରଖିବି ତୋତେ ।

୨୦୨୪୮. ନାନି ଲୋ; ତୋ କଥା ତୁ ଜାଣୁ ।
ତା ବେକକୁ ହାତୁଲା ହାତୁଲା ମୋ ବେକକୁ ଛାଣୁ ।

୨୦୨୪୯. ନେଳୁ ନେଳୁ ବାଇଗଣ ପେଟୁ ପେଟୁ କଣ୍ଡା,
ହାରାବତୀ କନ୍ୟା ଲାଗି ଜଗିଥିଲି ତୋଟା,

ବାଘ ପଛେ ଖାଉଲୋ-ମା' ଭାଲୁ ପଛେ ଖାଉ,
ହୀରାବତୀ କନ୍ୟା ଲାଗି ମୋ ଜୀବନ ଯାଉ ।

୨୦୨୫୦. ନାକ ସୁଁ ସୁଁ ବଉଁଷମାଣୀ, କେଉଁ ଗଡିଆରୁ ପିଉଛୁ ପାଣି ?

୨୦୨୫୧. ନଈ ପାଣି ଗଲା ନାହାକୁ, କିଏ ପଚାରୁଛି କାହାକୁ ?

୨୦୨୫୨. ନତ ନତ ହେଲା ବେଳ,
ଟାଙ୍ଗରା ମୁଣ୍ଡରେ ବାସନା ତେଲରେ, ବୟସ କରୁଛି ଗେଲ ।

୨୦୨୫୩. ନଈ ପାଣି ଦୁକୁ ଦୁକୁ,
କିଏ ନେଇଗଲା ଜାଈଫୁଲକୁ ଲୋ, ଡଳମାଳ ରାଇଜକୁ ।
ଡଳମାଳ ରାଜ୍ୟେ ଅନାଇ ଦେଖିଲୋ, ତାଳ ନାହିଁ ତାଳ ସଜ,
ପିଲାଟି କାଳରୁ ମାଆ ଖାଇଥିଲି, କିଏ ଦେବ ପେଡି ସଜ ?
ବାପା ସଜାଡିଲେ ଡୋଲା (ଝଟିଆ) ଗଉଡ ଲୋ,
ଭାଇ ସଜାଡିଲେ ଭାର,
ଦାଦା ସଜାଡିଲେ ଶାଢୀ ଦିଖଣ୍ଡ ଲୋ, ଝୁଅ ଯିବ ଶାଶୁଘର ।
ଡାଲା ଆଗେ ଦେଲେ ଢାଇ,
    ସଂସାର ମାଲପେ ଅନାଇ ଥିଲେ ଲୋ,
    ଧନ୍ୟ ତୋର ବାପା ଭାଇ ।

୨୦୨୫୪. ନୂଆ ସଢେଇର ପାଣି,
କେତେ ବେଳି କରୁଲୋ ଫୁଲେଇ ନାନୀ,
        ରାତିରେ କାଢିବି ପାଣି ।

୨୦୨୫୫. ନବ କଳେବର ଦେଖିବୁ ନା ଶବ କଳେବର ଦେଖିବୁ ।

୨୦୨୫୬. ନଈକି ସୁନ୍ଦର ନଈ ଅଡଡା,
    ଡୁଠକୁ ସୁନ୍ଦର ନାଆ,
ବେକକୁ ସୁନ୍ଦର ପୋହଳା ମାଳ,
    ସାଙ୍ଗକୁ ସୁନ୍ଦର ଢାଆ ।

୨୦୨୫୭. ନାଲିଆ ଟୋକେଇ ପୁଞ୍ଜି ପୁଞ୍ଜିକା,
    ସୋଲ ଶାଗ ତୋଳିବାକୁ
ନନା ଦେଉଛନ୍ତି ବୁଢା ବରକୁ,
    ଚାଳଧରି କାନ୍ଦିବାକୁ ।

୨୦୨୫୮. ନାକକୁ ସୁନ୍ଦର ଫୁଟା ପଥରି,
କାନକୁ ସୁନ୍ଦର ଫଗଡି ନୋଳି,
ହାତକୁ ସୁନ୍ଦର ଯାଆଁଳା ମୁଦି,
ଗୋଡକୁ ସୁନ୍ଦର ଝୁଣ୍ଟିଆ ପଦି,
ବେକକୁ ସୁନ୍ଦର ଘାଘଡା ମାଳ,
ବୁକୁକୁ ସୁନ୍ଦର ପଣତ ତଳ,
ଅଣ୍ଟାକୁ ସୁନ୍ଦର କମର ପଟା,
ମୁଣ୍ଡକୁ ସୁନ୍ଦର କଳଙ୍କ ଜୁଡା,
ତୁଣ୍ଡକୁ ସୁନ୍ଦର ବଙ୍ଗାଳି ପାନ,
ବିଭା ହେଲା ପରି ଦିଶିବି ଧନ ।

୨୦୨୫୯. ନଈ ସେ ପାଖକୁ ଅନେଇ ଦେଲି ଲୋ,
କିମ୍ପାଁର ଖୋଳୁଛି ମାଟି,
ସବାଖାଇଙ୍କର ଏଡିକି ପାଟିଲୋ,
ହଜାଇଲି ସୁନା କଣ୍ଠି ।

୨୦୨୬୦. ନଣ୍ଡା ବରଗଛ ଛାଇ,
କେ ଘର କରିବ ନାଣ୍ଡିକୁ ନେଇ, ନାଣ୍ଡିତ ବିନ୍ଧଣା ଗାଈ ।

୨୦୨୬୧. ନଳିତା ବାଡିକି ବାଟ,
ବୋଉ ଦେଇଥିଲୁ ପୁରୁଣା ପାଟଲୋ,
ଲୋକେ ବସାଇଲେ ହାଟ ।

୨୦୨୬୨. ନାଲି ବିଟଣାର ନଳି, ଫୁଲ ବିଟଣାର ନଳି,
କାହା ସଙ୍ଗେ ରାଇ ଚମର କଳି, ତୁଣ୍ଡତ ଘାଗଡା ମାଳି ।

୨୦୨୬୩. ନଡିଆ ଗଛର ଛାଚି,
ଖରାବେଳେ ନନ୍ଦ ବାଟ ଚାଲୁଥିବେ, ଉଡୁଥିବ ସରୁପାଛି ।

୨୦୨୬୪. ନୂଆ ପୋଖରୀର ପାଣି,
ଭାଇ ଆଣିଛନ୍ତି ରେଶମୀ କାଚ, ନୂଆବୋହୂ ମନ ଜାଣି ।

୨୦୨୬୫. ନୂଆ ହାଣ୍ଡି ପଣ ପଣ,
ପୁରୁଣା ହାଣ୍ଡି ପଣ ପଣ,
କୋଠାରେ ହୋଇଛି ପୁଅ ଜନମ,
ନାମ ଦେଉ ଚନ୍ଦନ ।

ଏ ଚଇତନ ମଲା,
ସେ ଚଇତନ ଜନମ ହେଲା,
ବାଇଦ ଢକରା ହେଲା ।
ବାଇଦର ପୁଅ ନଟ ହଟିଆ,
ଲଗେଇଛି ଫୁଲ ତୋଟା,
ଫୁଲକୁ ଅନାଇ ଜୁଡା ବାନ୍ଧିଛି,
ମଲ୍ଲୀ ଫୁଲ ଗୋଟା ଗୋଟା ।

୨୦୨୬୬. ନଈରେ ବାଳିଆ ମଲା,
ରଜାଘର ଝିଅ କୁମ୍ଭୀର ନେଲା, ଠିଆ ଜହ୍ନ ପଡିଥିଲା ।

୨୦୨୬୭. ନଈରେ ଯାଉଛି କଳା ଭଉଁର,
ଲୁଗା ଚିରି ଦେଇଗଲା,
ବନ୍ଧରେ ଯାଉଛି ଟୋକା ଦିଅର,
ପହଡେ ଙ୍ଗକାଳ କଲା ।

୨୦୨୬୮. ନଈ ପାଣି ଯାଉନାହିଁ,
ନଈରେ ପଡିଛି ଗଙ୍ଗା ବାରିଣି,
ଘରେ ମନ ରହୁ ନାହିଁ ।

୨୦୨୬୯. ନଡିଆର ଦୁଇ ଆଖି,
ଚିଲ ବୁଲିଯାଉ ରହିଛି ଲାଖି, ବୁକୁ ବାଳୁଆକୁ ଦେଖି ।

୨୦୨୭୦. ନଈରେ ଡେଙ୍ଗା ତୁଳସୀ,
ଫୁଙ୍କି ଦେଲେ ବୁଢା ପଡି ମରୁଛି, ଲୋଡୁଛି ଷୋଳ ବୟସୀ ।

୨୦୨୭୧. ନୂଆ ପୋଖରୀର ପଙ୍କ,
ବଡ ଘର ବୋଲି ଦେଇଛ ନନା ହେ, ବାସି ପେଜେ ବଡ ରଙ୍କ ।

୨୦୨୭୨. ନଡିଆ ଗଛର କତା,
ଫାଟୁଆ ଗୋଡରେ ଦେଲୁ ଅଳତା,
ବୋଉଲୋ ଲାଜ ମାଡିଲା ନାହିଁ,
ଝିଅ ଜନ୍ମ କଲୁ ଏଇଥି ପାଇଁ ।

୨୦୨୭୩. ନୂଆ ଶଗଡର ଅଖ,
ବଡଘରେ ବୋଉ ପଠାଇ ଦେଲୁ ଲୋ, ଚୂଲୀ ଫୁଙ୍କା ବଡ ଦୁଃଖ ।

୨୦୨୭୪. ନଈ ପାଣି ଝରି ଝରି,
ଆଜି ଦୋଳିଗୀତ ଦେବି ସଜାଡ଼ି, ପିନ୍ଧୁଥା ଲୁଗା ସଜାଡ଼ି ।

୨୦୨୭୫. ସ୍ତ୍ରୀ:- ନଈରେ ଚାଲେ ବାଳିଆ,
ମୁଁ ତ ସୁନା ଗୋରୀ ତୁମେ କାଳିଆ,
ତୁମେ କାଳିଆ ଗୋ, ନାରୀ ରୂପ ଭଙ୍କାଳିଆ ।

ପୁରୁଷ:- ବଣରେ ଫୁଟିଲା ମଲ୍ଲୀ,
କାହାଠୁ ଶିଖିଛୁ ଏ ବାଙ୍କ ଚାଲି,
ଏ ବାଙ୍କ ଚାଲି ଲୋ, ଖେଳୁଚୁ ବାଙ୍କି ଶିଆଳି ।

ପୁରୁଷ:- ନଈ ଖାଇଲା ଅତଡ଼ା,
ପାଖେ ଆସି ବସ ଢବା ଅଧରା,
ଢବା ଅଧରା ଲୋ, ଦୋଳି ସିନା ହେବ ପୂରା ।

ସ୍ତ୍ରୀ:- ଜହ୍ନ ଆସେ ଘନଘନ,
ନିଅ ଏତେ ତୁମେ ବିଡ଼ିଆ ପାନ,
ବିଡ଼ିଆ ପାନ ଗୋ, ମୋହିଲ ମୋହରି ମନ ।

ସ୍ତ୍ରୀ:- ନୂଆ ତାଟିଆରେ ଖଇ,
ଝିଲିପି ଶଙ୍ଖା ମୁଁ ନାଇବି ନାଇଁ,
ନାଇବି ନାଇଁ ଲୋ, କୂଅକୁ ପଡ଼ିବି ଡେଇଁ ।

ପୁରୁଷ:- କୂଅକୁ ନପଡ଼ ଡେଇଁ,
କାଲି ବାଜୁବନ୍ଧ ଦେବି ଗଢ଼ାଇ,
ଦେବି ଗଢ଼ାଇ ଗୋ, ଚାଦର ବନ୍ଧା ପକାଇ ।

୨୦୨୭୬. ନଈର ସିଆଡ଼େ ନିମ,
ଟାକି ଟାକି ଧନ ହେଲା ବିକ୍ରମ, ଆସ ମୋ କଷି ଡାଳିମ ।

୨୦୨୭୭. ନ ଦେବୁ ଧନ, କହିବୁ ଦିବ୍ୟ ବଚନ ।

୨୦୨୭୮. ନଈ ଶୁଖିଲେ କି କରଇ ନାଆ,
ଥନ ଶୁଖିଲେ କି କରିବ ମାଆ ?

୨୦୨୭୯. ନଈରେ ବାଳିଆ ଚହଟିଲା,
କଜଳ ସୁନ୍ଦର ନାଆଲୋ ରାଣ୍ଡୀ,
ପୁଣି ଚାଖିଆ ଲେଉଟିଲା ।

୨୦୨୮୦. ନଈରେ ପୋତିଲି ବାଲିକିରା ମାଛ,
ପିମ୍ପୁଡ଼ି ଖାଇଲେ ରସ,
କଲିକତା ବାଟ ଅଢେଇ କୋଶ ।

୨୦୨୮୧. ନଗର ଯାକରେ ଦିଲ୍ଲୀ, କୁସୁମ ଯାକରେ ମଲ୍ଲୀ ।

୨୦୨୮୨. ନୂଆ ନୂଆ କେତେ ଆଦର,
ନୂଆରୁ ପୁରୁଣା ହେଲେ ତୁଠ ପଥର ।

୨୦୨୮୩. ନିଦ ନ ମାଡେ ରୋଗୀକୁ,
ନିଦ ନ ମାଡେ ଯୋଗୀକୁ ।

୨୦୨୮୪. ନିର୍ଲଜ୍ଜ ଗାଏ ସଲଜ୍ଜ ବଜାଏ,
ଅତି ଅଲାଜୁକ ନାଚିତେ ଯାଏ ।

୨୦୨୮୫. ନେବା ଲୋକ ଦେଇ ଜାଣେ ନାହିଁ,
ଦେବା ଲୋକ ନେଇ ଜାଣେ ନାହିଁ ।

୨୦୨୮୬. ନଈ ବଳ ଦିଏ ନଈକି,
ଭାଇ ବଳ ଦିଏ ଭାଇକି ।

୨୦୨୮୭. ନିମୁଣ୍ଡୀ ନାରୀ, ଗୋଦରୀ ଦାରୀ,
ମେଘୁଆ ଖରା, ଭୃତ୍ୟ ମଗରା,
ଏ ଚାରିଙ୍କ ମହିମା ସହି ନ ପାରି ।

୨୦୨୮୮. ନଙ୍ଗ ପଡିଥିବ ଯେତିକି ବେଳେ,
ବିଧାଏ ମାରିବ ସେତିକି ବେଳେ ।

୨୦୨୮୯. ନଈ ପାଣି ନଈକି ଯା, ମୋ ଲୁଗାଟି ଶୁଖି ଯା ।

୨୦୨୯୦. ନଈ ନଦେଖି ଲଙ୍ଗଳା ହେବା ।

୨୦୨୯୧. ନର ମାୟା ନାରାୟଣଙ୍କୁ ଗୋଚର ।

୨୦୨୯୨. ନ ମିଳେ ଅନ୍ନ ଜଳ ବାସ,
ଆପଣା ଦୋଷେ ହୁଏ ନାଶ ।

୨୦୨୯୩. ନାଣ୍ଡୀ ମୁଣ୍ଡୀ, ପୋଇ କେରାଣ୍ଡି ସିଂଘ ଦୁଆରେ ଥାଏ,
ଅଇଁଠା ଭାତରୁ ଗୁଣ୍ଡାଏ ପାଇଲେ ପାଣି ଛଡେଇ ଖାଏ ।

୨୦୨୯୪. ନ କହିଲେ ଚଳୁନାହିଁ,
କହିଲେ କୁଳ କୁଟୁମ୍ବକୁ ଲାଜ ।

୨୦୨୯୫. ନୁଖୁରା ଗାଣ୍ଡିରେ ପାଡ଼ ।

୨୦୨୯୬. ନିରତେ ପ୍ରାଣାୟାମ କରି,
ଇନ୍ଦ୍ରିୟ ସମୂହ ସଂହରି । (ଜଗନ୍ନାଥ ଭାଗବତ)

୨୦୨୯୭. ନାମ୍ ବଡ଼ା, ଦର୍ଶନ୍ (କାମ) ଥୋଡ଼ା,
ନାମ୍ ଥୋଡ଼ା, କାମ ବଡ଼ା ।

୨୦୨୯୮. ନଟ ଗୋପାଳିର ଗଞ୍ଜାଇ ଆପୁ,
ଦିନେ ନୋହିଲେ ଯେ ନ ଚଳେ ଟାପୁ ।

୨୦୨୯୯. ନମାର ପରକୁ ହାଇ ଗୋ !
ନରନାରୀ ଯେତେ ଅଛନ୍ତି ସଂସାରେ,
ସଭିଏଁ ଭଉଣୀ ଭାଇ ଗୋ ।

୨୦୩୦୦. ନ ମଣ କାହାକୁ ସାନ ଗୋ !
ଦୂବ ପରା ଘାସ ସାମାନ୍ୟ ହେଲେ ହେଁ,
ଦେବ ଶିରେ ପାଏ ସ୍ଥାନ ଗୋ ।

୨୦୩୦୧. ନ ଦେଇ ଅଦୃଷ୍ଟେ ମନ ଗୋ !
କର୍ମମୟ ଭବେ ସୁକର୍ମ ସେବାରେ,
ରତ ଥିବା ସବୁକ୍ଷଣ ଗୋ ।

୨୦୩୦୨. ନ ଧରିବା ହୀନ ଖୋଳ ଗୋ !
ଘର କଥା ନେଇ ପର ଆଗେ କହି,
ହେବା ନାହିଁ ଜାତି ଦ୍ରୋହୀ ଗୋ ।

୨୦୩୦୩. ନଈ ପାଣି ହୁକୁ ହୁକୁ,
କିଏ ନେଇଗଲା ତଳମାଳକୁ,
ମୋ ଗଲା ମାଣିକକୁ ।

୨୦୩୦୪. ନିଆଁ ନଥିଲେ ଧୂଆଁ ବାହାରେ ନାହିଁ ।

୨୦୩୦୫. ଏକାର୍ଥରେ - ନିଆଁ ନ ଥାଇ ଧୂଆଁ ବାହାରିବା ।

୨୦୩୦୬. ନରସିଂହ ଭୋଗ ଖିରିକି,
କେତେ ଅନଉଛୁ ନିରିଖି,
ଫଳ ହୋଇଛି ଯେ ଖାଇବୁ ?
ଫୁଲ ହୋଇଛି ଯେ ନାଇବୁ ?

ତୁ ଯାହିଁ ପାଇଁ ଡହଳ ବିକଳ,
ସାତ ଜନମରେ ପାଇବୁ ?

୨୦୩୦୭. ନଅର ଦାରୀ ସଂସାର ବୁଲେ,
ରାଜା ବିଜେ କଲେ ଜଳା କବାଟି ପଡେ ।

୨୦୩୦୮. ନଖ ବାଳ ରଖି ଭାଲୁଏ,
ଏ କେତେ ଯୋଗୀ ହେଲେଣି ?

୨୦୩୦୯. ନାଲି ଆକାଶେ ବଉଦ ତଳେ,
ତେଣାଟି ଝାଡି ଯାଏରେ ଉଡି,
ସତରେ ଆମ ଟିକି ଚଢେଇ । (ଶିଶୁ ଗୀତ)

୨୦୩୧୦. ନଟ ନାଗରବର ବାଟରେ,
ହଟ ନାଟ ତୁ କରନା ରେ ।

୨୦୩୧୧. ନାକ ଦେଉଛନ୍ତି ପ୍ରଭୁ ନିଶ୍ୱାସ ମାରଇ,
ନାକ ଦ୍ୱାରା ନାନା ଗନ୍ଧ ବାସନା ବାରଇ,
ଚମ୍ପା ଗୋଲାପ ଫୁଲର ମନୋହର ବାସ,
ଆଘ୍ରାଣ କରନ୍ତି ନାକେ ହୋଇଣ ଉଲ୍ଲାସ,
ମଳମୂତ୍ର ପଚା ସଢା ଆଦି ଯେତେ ଦ୍ରବ୍ୟ,
ଆଘ୍ରାଣିଲେ ନାକେ ତାହା ହୁଏ ବଡ ଅବ୍ୟ,
ଏହିପରି ନାକ ଦ୍ୱାରା ଗନ୍ଧ ପରିଚିତ,
ତେଣୁ ନାକ ଘ୍ରାଣେନ୍ଦ୍ରିୟ ହୁଅଇ କଥିତ । (ଶିଶୁ ଗୀତ)

୨୦୩୧୨. ନ ପାହୁ ରାତି, ନ ମରୁ ପତି,
ଏକା ରାତିକ ହେଉ ସାତ ରାତି ।

୨୦୩୧୩. ନିର୍ଦ୍ଧନ ଗୃହେ ଯେହ୍ନେ ଧନ,
ଅଣ ଆୟାସେ ଯେହ୍ନେ ପୁଣ୍ୟ । (ଜଗନ୍ନାଥ ଭାଗବତ)

୨୦୩୧୪. ନାସ୍ତିକ କ୍ରୁର ପାପୀ ଅମର୍ଯ୍ୟାଦଙ୍କର,
ସଙ୍ଗ ଛାଡି ଦେବ ଯେ ହେବ ସାଧୁ ନର ।

୨୦୩୧୫. ନିଷ୍ଠା-ଶୁଦ୍ଧ-ପୂତ-ସରଳ ପୂଜାରେ,
ମୁକ୍ତି, ସିଦ୍ଧି, ଶାନ୍ତି ମିଳଇ ସଂସାରେ ।

୨୦୩୧୬. ନୂଆ କିଛି କର, ତା ନହେଲେ ସ୍ତ୍ରୀକୁ ଧରି ମାର ।

୨୦୩୧୭. ନୋହିବ ହରିଣ-ନୋହିବ ଗାଈ,
ଘୋଡା ନାମ ବହି ହୋଇବ ମାଈ,
ପିଇବ ତୋରାଣି ଖାଇବ କୁଣ୍ଡା,
ତେବେ ଯଦୁମଣି ହୋଇବ ଭେଣ୍ଡା । (ଯଦୁମଣିଙ୍କ ଘୋଡାମଗା)

୨୦୩୧୮. ନନାଙ୍କର ବାଟେ ତ ନାନୀଙ୍କର ବାଟେ ।

୨୦୩୧୯. ନିତି ଜର ଜର, ତିନି ଫର ଫର ।

୨୦୩୨୦. ନିଜ ଆୟୁଷ ନ କହିବ ପରେ,
ଘର ଛିଦ୍ର କଥା ରଖ ଗୁପ୍ତରେ ।
ବିର ମର ନାରୀ ସଙ୍ଗମ ଗୁଣ,
ତପ ଦାନ ଆଜି ଯେତେକ ପୁଣ ।
ଔଷଧ ଅପମାନ ସହିତେ,
କାହାକୁ ନକହି ରଖ ଗୁପତେ ।
ରାତ୍ରେ ନ କରିବ ଗୃହେ ଗୁପ୍ତ ମନ୍ତ୍ରଣା,
ନକର ଆଡ୍ଡିଯେ ଧର୍ମ କଥା ଜଣା ।
ଙ୍କାଡି ଠାରେ ଧନ ସୀମା ନକର ପ୍ରକାଶ,
ନକର ଅନ୍ୟ ସମ୍ମୁଖେ ହିସାବ ନିକାଶ ।
(ଚାଣକ୍ୟ ନୀତି ଅନୁସାରେ ଏସବୁ କଥାକୁ ଗୁପ୍ତ ରଖିବ ।)

୨୦୩୨୧. ନାଗରୀ ସୁନ୍ଦରୀ କେତେବେଳେ କାର,
ରୁଧିରେ ବାନ୍ଧିଲେ କୂତ ।
ନାଗ ନାରାଚ ନାରୀ ଯେତେ ସୁନ୍ଦର,
ସେତିକି ସେ ଘର ବୁଡ ।

୨୦୩୨୨. ନାରୀ ନଦୀ ନିଆଁ ନାଗରରେ
ତାଙ୍କୁ ନିରତରେ ଥିବ ଦକା,
ନିମିଷ ମାତ୍ରକେ ଉପ୍ରୋଧ ଛାଡି
ଏ ନିଶ୍ଚୟ ପକାନ୍ତି ଡକା । (ଉପେନ୍ଦ୍ର ଭଞ୍ଜ)

୨୦୩୨୩. ନାରୀ କୁକୁର ଯୋଡି
କେବେ ନୋହିବେ ଯୋଡି,

ଯେବେ ହୋଇବେ ଯୋଡି
ତା'ଫଳ କାମୁଡା କାମୁଡି ।
(ବେଶ୍ୟାର ସ୍ୱଭାବ ଓ ପ୍ରେମ ମର୍ଯ୍ୟାଦା)

୨୦୩୨୪. ନଖଗୁଡିକ ତମ୍ବାପରି ବର୍ଣ୍ଣଯୁକ୍ତ,
ଶରୀର ଉଚ୍ଚ ଏବଂ କୋମଳ,
ଦୁଇ ପାଦଯାକ ସମାନ,
ଦୁଇ ଗୋଇଠି ସମାନରେ ସୁନ୍ଦର ଭାବରେ ଥିବ,
ହାତ ଓ ପାଦର ଆଙ୍ଗୁଠିଗୁଡିକ ଲାଗିଥିଲା ପରି ଦେଖାଯାଉଥିବ,
ପାଦ ତଳ ଏବଂ ହାତ ପାପୁଲି ପଦ୍ମଫୁଲର ବର୍ଣ୍ଣ ହୋଇଥିବ ।
(ଏପରି କନ୍ୟାକୁ ବିବାହ କଲେ ବହୁ ଐଶ୍ୱର୍ଯ୍ୟ ପ୍ରାପ୍ତ ହୁଏ, ପତିପତ୍ନୀ ଚିରଦିନ ସୁଖ ଭୋଗ କରନ୍ତି ।)

୨୦୩୨୫. ନ ଦେବ ଧନର ଭାର ବ୍ରାହ୍ମଣର କରେ,
ଥିଲେ ମଧ୍ୟ ଦିଏ ନାହିଁ କାହାକୁ ଲୋଭରେ ।
କ୍ଷତ୍ରୀୟକୁ ଧନ ଭାର ଦେବା ଭଲ ନୁହେଁ,
ଅନର୍ଥକ ପଦେ ପଦେ ଖଡଗ ହସ୍ତ ହୁଏ ।
ଧନଭାର ଦିଅ ଯଦି ଜ୍ଞାତିର ଉପରେ,
ଜ୍ଞାତି ଆପଣାର ବୋଲି ସବୁ ଗ୍ରାସ କରେ ।
ପୁରାତନ ଭୃତ୍ୟ ଯଦି ନିଏ ଧନ ଭାର,
ଦୋଷ କଲେ ମଧ୍ୟ ଭୟ ନଥାଏ ତାହାର ।
ଉପକାରୀ ଜନଠାରେ ଦେଲେ ଧନ ଭାର,
ଉପକାର ଗ୍ରାସ ଦୋଷ ନ ଧରେ ମନର ।
ଅପ୍ରାପ୍ତ ବୟସ୍କ କରେ ଧନ ଭାର ଦେଲେ,
ଉଡାଏ ସେ ବିଳାସିତା ବୃଥା ବନ୍ଧୁ ତୁଲେ ।

୨୦୩୨୬. ନ ଖାଇବ ସଞ୍ଜେ, ନ ପଶିବ ଦ୍ୱନ୍ଦେ,
ଭୋକ ହେଉଥିଲେ ଖାଇବ ସଞ୍ଜେ,
ମିତ୍ର ଲୋକ ଥିଲେ ପଡିବ ଦ୍ୱନ୍ଦେ ।
ନ ଡେଇଁବ କୂଅ, ନ ଖେଳିବ ଯୁଅ, (=ଯୁଆ)
ବିପଦ ପଡିଲେ ଡେଇଁବ କୂଅ,
ପଇସା ଥିଲେଟି ଖେଳିବ ଯୁଅ ।

୨୦୩୨୭. (କେଉଁମାନଙ୍କ ଠାରୁ ଦୂରେଇ ରହିବା ଉଚିତ)
ନିଶାକାରି ବୈଦ୍ୟ, ଯୌବନଗର୍ବିତା ଭାର୍ଯ୍ୟା ।
ଦୋଚାରୁଣି ନାରୀ, ଅବାଧ୍ୟ ପୁତ୍ର,
ଦୁର୍ଜନର ଆଡା, ଭୀରୁ ସୈନିକ,
ଅବେଦଜ୍ଞ ଦ୍ୱିଜ, ଅପ୍ରିୟ ବାଦୀନି ପତ୍ନୀ,
ଅନାଦର ବନ୍ଧୁ, କୁଶାସିତ ରାଜ୍ୟ,
ଉଦ୍ଧତ ସମାଜ, ଅଳସୁଆ ପରିବେଶ ।

୨୦୩୨୮. ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ ନାବ ଚଳେ ଧର୍ମର ପ୍ରଭାବେ ।

୨୦୩୨୯. ନିଦୁଆ ଗୋସେଇଁ ଉଠ ହେ,
ଧାନ ନେଇ ଚୁଡା କୁଟ ହେ,
ଚୁଡା ତ ଚେପଟା ନୋହିଲା,
ଏଣ୍ଡୁଅଟା ସବୁ ଖାଇଲା ।

୨୦୩୩୦. ନନ୍ଦା ପାହାଡର ଚନ୍ଦା ପଡିଆ,
ଧ୍ୟାନ କରେ ଋଷି ଏକ ଗୋଡିଆ,
ତାକୁ ଖୋଜି ଖୋଜି ଗଛ ଚଳିବୁ,
ଦିନ ଥାଉ ଥାଉ ଯାଇ ମିଳିବୁ ।
ଦଉଡୁ ଚଞ୍ଚଳ ତୁହି,
ତୋହ ଭରସାରେ ସାରା ସଂସାରକୁ,
ସରାପରି ମଣେ ମୁହିଁ ।

୨୦୩୩୧. ନଥାଏ ଯାହାକୁ ମରଣର ଯୋଗ,
କରୁ ପଛେ ମୃତ୍ୟୁ ଯନ୍ତ୍ରଣା ସେ ଭୋଗ,
ଦଇବ ବଳକୁ ବୁଦ୍ଧି ତାର ସ୍ଫୁରେ,
କାଳଚକ୍ର ମୁଖୁ ରହିଯାଏ ଦୂରେ ।

୨୦୩୩୨. ନୁହେଁ ଚନ୍ଦ୍ରକର କରେ ଆହ୍ଲାଦ,
ଅମୃତ ନୁହେଁ ସେ ତହୁଁ ସୁଆଦ,

ଚିନ୍ତା ନୁହଁ ଛାତ କରେ ବିଷାଦ,
ବଢାଏ ଗରବ ନୁହେଁ ସମ୍ପଦ ।

୨୦୩୩୩. ନମୋ ବ୍ରହ୍ମଣ୍ୟ ଦେବାୟ ଗୋ ବ୍ରାହ୍ମଣ ହିତାୟ ଚ,
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋ ନମଃ ।
(ବିଷ୍ଣୁ ସହସ୍ରନାମ, ପାଠ କଲେ ସର୍ବପ୍ରକାର ଅମଙ୍ଗଳ ଦୂର ହୁଏ, ଏହା ୧୪୫ ଶ୍ଳୋକରେ ପୂର୍ଣ୍ଣ । ଯେଉଁ ବ୍ୟକ୍ତି ସମୁଦାୟ ସ୍ତୋତ୍ରଟି ପାଠ କରି ପାରୁନାହିଁ, ସେ ଏହି ଉଲ୍ଲିଖିତ ଗୋଟିଏ ମାତ୍ର ସ୍ତୋତ୍ର ପାଠ କଲେ ସେହିଫଳ ପାଇବ ।)

୨୦୩୩୪. ନାରୀ ଯାହା ଘରେ ରୋଗରେ ବ୍ୟସ୍ତ,
ଗୋରୁ ଯାହା ଘରେ ନାହାନ୍ତି ସୁସ୍ଥ,
ଚାକର ଯା'ଘରେ ନୋହେ ବିଶ୍ୱସ୍ତ,
ଅଶାନ୍ତିରେ ସଦେ ସେହି ଗୃହସ୍ଥ ।

୨୦୩୩୫. ନୀଳ କୁଞ୍ଚିତ କୁନ୍ତଳ ତତି;
ଉଜୁଥିଲା ଅସ୍ତବ୍ୟସ୍ତ ରତି ।

୨୦୩୩୬. ନିର୍ଭରେ ଜୀବନେ ଯାର ଜଗତ ଜୀବନ,
ବାଞ୍ଛନୀୟ ସିନା ଚିର ଜୀବନ ତାହାର ।

୨୦୩୩୭. ନିସତକୁ ଖଣ୍ଡିଆ ଘଇତା,
ପେଲା ପେଲି କରି ଦିନ ନଉଥା ।

୨୦୩୩୮. ନିଛଠା ଅଠା,
ନାଗିଗଲେ ଝିଅ, ନ ଖୋଲେ ଜଟା ।

୨୦୩୩୯. ନିୟମ କରି ନ ପାଳଇ ଯାହା,
କି ଅମଙ୍ଗଳିଆ କରଇ ତାହା ।

୨୦୩୪୦. ନୁହା ନହୁଣିଆ ମାଟି;
ବରଷାରେ ଯାଏ ଦଳ ଦଳେଇ ଲୋ, ଖରା କଲେ ଯାଏ ଫାଟି ।

୨୦୩୪୧. ନୂଆ ନବତନ ଗୋରୀ,
ନୂଆ କରି ଯେଉଁ ବଚନ କହିଲା,

ଅବନା ଅକ୍ଷର ଚାରି ।

୨୦୩୪୨. ନୂଆ ବୋହୂଟି,
ନଈକି ଗାଧୋଇ ଯିବୁ ନାହିଁଟି,
ଅଣ୍ଟିଆ କିମ୍ବାର ଜଗି ବସିଚି,
ଟାକୁକିନି ଗିଳି ଦବଟି ।

୨୦୩୪୩. ନୂଆ ବୋହୂ ମନ କଅଣ ବୋଇତ ବନ୍ଦାଣରେ ଥାଏ ?

୨୦୩୪୪. ନୂଆ ଗୁଡ, ନୂଆ ପୀରତି ସୁଆଦ ।

୨୦୩୪୫. ନୂଆ ଡାହାଣୀ ଗୁହ ଖାଇ ଶିଖୁଛି ।

୨୦୩୪୬. ନୂଖୁରା ବଳିତା ଦିଅଁଙ୍କ ଆଳତିରେ ଗଲା ।

୨୦୩୪୭. ନ୍ୟାୟବନ୍ତ ହୋଇ ଯେ ହରୁଥିବ ଦିନ,
ମାଗିଲେ ଆସି ଦେଉଥିବ ଦୁଃଖୀଜନ ।

୨୦୩୪୮. ନାରୀ ପାଦୌ ଚ ହସ୍ତେନ ଧାରୟେତ୍ ଗଳକେ ପୁନଃ,
ସ୍ତନାର୍ପିତ କରଃ କାମୀ ବନ୍ଧଶ୍ଚୋତ୍କଣ୍ଠ ସଂଜ୍ଞକଃ ।
(ନାରୀ ପାଦ, ହସ୍ତ ଓ ଗଳା ପୁଣି ସ୍ତନରେ କର ଦେଇ କାମ ରୂପକ ଉତ୍କଣ୍ଠା ଆଣିବା ।)

୨୦୩୪୯. ନାକୀ ସ୍ୱରକୁ ଡାକି ଗାଉଣା ।

୨୦୩୫୦. ନାହା ବୁଡି ଗଲେ ନାଉରିର ମୁଣ୍ଡ ଖାଏ ।

୨୦୩୫୧. ନାସିକାରେ ମାଠ ଗୁଣା, କରଇ ବିବେକ ବଣା ।

୨୦୩୫୨. ନାରୀ ସଙ୍ଗେ ମେଳ, ନିଆଁ ସଙ୍ଗେ ଖେଳ ।

୨୦୩୫୩. ନେଉଳ ସାଙ୍ଗରେ ସାପ ସଙ୍ଗାତ ବସୁଛି ।

୨୦୩୫୪. ନେଡିରେ ବାଳ ନାହିଁକି ଜିଭରେ ହାଡ ନାହିଁ ।

୨୦୩୫୫. ନେବୁ ରାତି, ଆଣିବୁ ରାତି,
ତେବେ ଯାଇଁ ଜାଣିବୁ ପୋଡ୍ରୁହ ଜାତି (=କେଉଟ ଜାତି)

୨୦୩୫୬. ନେଲା ବେଳକୁ ବଂଶ ଉପାସ,
ଦେଲା ବେଳକୁ ବୁଢାକୁ ଜର ।

୨୦୩୫୭. ନେଲା ବେଳକୁ ଯମୁନା ନାନୀ,
ଦେଲା ବେଳକୁ ଅଣ୍ଡିଆ କାନୀ ।

୨୦୩୫୮. ନା ନରମ ଦେଖିଲି, ନା ଗରମ ଦେଖିଲି ।
(ନା, କିଛି ଭାବିଲି, ନା କିଛି ବୁଝିଲି ।)

୨୦୩୫୯. ନା ଏପଟ ହେଲି, ନା ସେପଟ ହେଲି ।
(ଦୁଇପଟରୁ ନିକମ୍ମା ବୋଲି ବୁଝାପଡ଼ିଲା ।)

୨୦୩୬୦. ନା ଇଟା ଫିଙ୍ଗିବ ନା ଛିଟା ପଡ଼ିବ ।
(ନୀଚ ଲୋକଙ୍କୁ ଥଟ୍ଟା ପରିହାସ କଲେ କୁକଥା ଶୁଣିବାକୁ ପଡ଼େ ।)

୨୦୩୬୧. ନା ଉଦ୍ଧବ ଠାରୁ ନେବ, ନା ମାଧବକୁ ଦେବ । (କୌଣସି ସମ୍ବନ୍ଧ ନ ରଖିବା ।)

୨୦୩୬୨. ନ କର, ନ ଡର ।
(ଅପରାଧ  କରିବ ନାହିଁ, ଦଣ୍ଡ ଦେଲାବାଲାକୁ ଡରିବ ନାହିଁ ।)

୨୦୩୬୩. ନା କିଛି ନେବା, ନା କିଛି ଦେବା । (କୌଣସି ସମ୍ବନ୍ଧ ନ ରଖିବା ।)

୨୦୩୬୪. ନା କେହି ସାଙ୍ଗରେ ଆଣିଛି
ନା କେହି ସଙ୍ଗରେ ନେଇ ଯାଉଛି ।
(ଧନ ମନୁଷ୍ୟ ସାଙ୍ଗରେ ପରଲୋକକୁ ଯାଏ ନାହିଁ । ଇହଲୋକରେ ଛାଡ଼ିଯିବାକୁ ହୁଏ ।)

୨୦୩୬୫. ନା ଖୁଦା ମିଳିଲା ନା ପ୍ରିୟା ସହିତ ସଙ୍ଗମ ହେଲା,
ଏପଟେ ହେଲି, ନା ସେପଟେ ହେଲି ।

୨୦୩୬୬. ମୁଁ ଭଗଭକ୍ତି ବି କଲିନାହିଁ କିମ୍ବା ଧନ ବି ଉପାର୍ଜନ କଲି ନାହିଁ ।
ମୋ ଜୀବନ ବ୍ୟର୍ଥ ଗଲା ।

୨୦୩୬୭. ନା ଘରେ ରହିପାରିଲି, ନା ଘଟକୁ ଯାଇ ପାରିଲି ।
(କୌଣସି ଆଡ଼େ ନହେବା / ନିକମ୍ମା ହେବା ।)

୨୦୩୬୮. ନା ତିନରେ ନା ତେରରେ ।
ଯାହାକୁ କେହି ପଚାରନ୍ତି ନାହିଁ, ଅତ୍ୟନ୍ତ ତୁଚ୍ଛ ଓ ନଗଣ୍ୟ ବ୍ୟକ୍ତି ।
*ଏକାର୍ଥରେ* - ତିନରେ ନାହିଁ କି ତୋରରେ ନାହିଁ ।

୨୦୩୬୯. ନା ଦୀନ-ହୀନଙ୍କର ନା ଦୁନିଆର ।
(ଦୀନ ଦୁନିଆ ଉଭୟ ଯିବା । ଯାହାର ଇହଲୋକ ପରଲୋକ ଉଭୟ ନଷ୍ଟ ହୋଇଯାଏ ଏହାକୁ ଲକ୍ଷ୍ୟ କରି ଏହି ଉକ୍ତି ପ୍ରୟୋଗ କରାଯାଏ ।)

୨୦୩୭୦. ନା ନାଁ ନେଲି ନା ପାଣି ଦେଲି । (ଯାହାର ସଂସାରରେ କେହି ନାହାନ୍ତି ।)

୨୦୩୭୧. ନା ନ'ମହଣ ତେଲ ହେବ ନା ରାଧା ନାଚିବ ।
(ଅସମ୍ଭବ ସର୍ତ୍ତରେ କାମ କରିବା ପାଇଁ ପ୍ରସ୍ତୁତ ହେବା ।)

୨୦୩୭୨. *ଏକାର୍ଥରେ* - ଷାଠିଏ ମହଣ ଘିଅ ହେବ ନା ରାଧା ନାଚିବ !

୨୦୩୭୩. ନା ରହିବ ବାଉଁଶ, ବା ବାଜିବ ବଇଁଶୀ ।
(କଳହର ମୂଳ କାରଣ ନଷ୍ଟ କଲେ କଳହ ଶେଷ ହୋଇଥାଏ ।)

୨୦୩୭୪. ନା ସୂପ୍ (ମାଂସ ସୁରୁଆ)କୁ ପ୍ରଶଂସା କରିବାର ଯୋଗ,
ନା ଚାଳୁଣୀକୁ ପ୍ରଶଂସା କରିବା ଯୋଗ ।
(ଯେବେ ଦୁଇ ପକ୍ଷରେ କିଛି ନା କିଛି ହାନିକର ଥାଏ ।)

୨୦୩୭୫. ନଙ୍ଗଳା କ'ଣ ଓଢ଼େ, କ'ଣ ବିଛାଏ ।
(ଦରିଦ୍ର ନିଜ ପରିବାରକୁ ଅତି କଷ୍ଟରେ ପାଳନ ପୋଷଣ କରେ ।)

୨୦୩୭୬. ନଙ୍ଗଳା କ'ଣ ପିନ୍ଧିବ କ'ଣ ଧୋଇବ/ ଚିପୁଡ଼ିବ ।
(ଯିଏ ନିଜେ ଦରିଦ୍ର ତା'ର କିଛି ନାହିଁ ସେବା ଅନ୍ୟକୁ କ'ଣ ଦେବ ।)

୨୦୩୭୭. ନଙ୍ଗଳା ନାଚିଲେ, ଛିଡ଼ିବ କ'ଣ ?
(ଯାହା ପାଖରେ ଲୁଗା ନାହିଁ ତା'ର ଛିଡ଼ିବ / ଫାଟିବ କ'ଣ ? ବେଇଜତ୍ ଲୋକ ନିର୍ଭୟରେ ମନ୍ଦ କାର୍ଯ୍ୟ କରେ ।)

୨୦୩୭୮. ନଙ୍ଗଳା ପରମେଶ୍ୱରଙ୍କ ଠାରୁ ମଧ ବଡ଼ ।
(ଲୋକ ଈଶ୍ୱରଙ୍କଠାରୁ ଅଧିକ ନଙ୍ଗଳାକୁ ଭୟ କରନ୍ତି ।)

୨୦୩୭୯. ନକ୍ସୁଳି ଘାଟ ରୋକେ, ନା ଗାଧାଏ ନା ଗାଧୋଇବାକୁ ଦିଏ ।
(ଯେବେ କୌଣସି ଦୁଃଷ୍ଟ ବ୍ୟକ୍ତି କୌଣସି ବସ୍ତୁର ନିଜେ ଉପଯୋଗ କରେନାହିଁ ବା ଅନ୍ୟକୁ ଉପଯୋଗ କରିବାକୁ ଦିଏନାହିଁ ।)

୨୦୩୮୦. ନକ୍ସୁଳି ହେଲାପରେ ସୂତା କାଟିବା, ବୁଢ଼ୀ ହେଲା ପୁଅ ବେଇବା !
(ଯଦି ପ୍ରଥମେ ସୂତା କାଟିଥାଆନ୍ତା ତାହାହେଲେ ନଙ୍ଗଳା ରହିନଥାନ୍ତା । ସେହିପରି ଯଦି ପ୍ରଥମେ ପୁତ୍ର ଜନ୍ମ ହୋଇଥାଆନ୍ତା ତାହାହେଲେ ବୁଢ଼ାକାଳରେ କଷ୍ଟ ପାଇନଥାନ୍ତା । ତାତ୍ପର୍ଯ୍ୟ ଏହା ଯେ - ଠିକ୍ ସମୟରେ ଯେଉଁ କାମ କରିବା କଥା ତାକୁ ନକଲେ ପରବର୍ତ୍ତୀ କାଳରେ ବହୁତ କଷ୍ଟ ସହିବାକୁ ପଡ଼େ ।)

୨୦୩୮୧. ନଙ୍ଗଳାକୁ ଖୁଦା / ଈଶ୍ୱର ଡରନ୍ତି ।
(ନଙ୍ଗଳା ପରମେଶ୍ୱରଙ୍କଠାରୁ ମଧ ବଡ଼ ।)

୨୦୩୮୨. ନବୀନ ଯୌବନରେ ଦୁର୍ବଳ / ଶକ୍ତିହୀନ ହେବା ।
(ଯୌବନ ଅବସ୍ଥାରେ ଅଳସୁଆ ଓ ଆରାମପ୍ରିୟ ବ୍ୟକ୍ତି ଦୁର୍ବଳ ଅର୍ଥାତ୍ ଅଳ୍ପ ପରିଶ୍ରମରେ ଥକାମାରି ଯିବା ।)

୨୦୩୮୩. ନାକକଟା ଢାଇଁଲେ ମର୍ଯ୍ୟାଦା ଭ୍ରଷ୍ଟ ।
(ନିର୍ଲଜ୍ଜ ବ୍ୟକ୍ତିର ଜୀବନ ଅସାର ହୋଇଥାଏ । ଯିଏ ସମସ୍ତଙ୍କର ଅପ୍ରିୟ ତାହା ପ୍ରତି ଏହି ଉକ୍ତି ପ୍ରଯୁଜ୍ୟ । ପୁଣି ଯାହାର ଜୀବନରେ ଅନେକ କଷ୍ଟ ଓ ପ୍ରତିକୂଳ ଅବସ୍ଥା ସେ କ୍ଷେତ୍ରରେ ମଧ୍ୟ ଏହି ଉକ୍ତିଟି ପ୍ରଯୁଜ୍ୟ ।)

୨୦୩୮୪. ନାକ କଟି ବୁଡ଼ିଲୋ, ପାଣି ପିଅ ।
- 'ପୁଅ, ଆଗକୁ ଚାଲ, ଦୁଧ ମିଳିବ ।'
(ଯେଉଁ କାମ ମିଠା ବୋଲିରେ ହୋଇପାରିବ, ତାହା କଟୁ କଥାରେ ହୋଇପାରିବ ନାହିଁ । )

୨୦୩୮୫. ନାକକଟିର ନାକ ଗଜେ କଟିଲା ପୁଣି ବଢ଼ିଲା ।
(ବେହିଆ ଲୋକ ଯେଉଁମାନେ ବେଇଜ୍ଜତ୍ ହେବା ପାଇଁ ଡରନ୍ତି ନାହିଁ । ତାଙ୍କ ପାଇଁ ଏହି ଉକ୍ତି ପ୍ରଯୁଜ୍ୟ ।)

୨୦୩୮୬. ନଗଦ ମଜୁରୀ ଚୋଖା (=ଖାସା) କାମ ।
(ନଗଦ ମଜୁରୀ ଦେଲେ ଉତ୍ତମ କାମ ହୁଏ ।)

୨୦୩୮୭. ନକାରାତ୍ମକ ପରିବେଶରେ ଜଣଙ୍କର ଚିତ୍କାର କିଏ ଶୁଣିବ ।
(ବହୁତ ଭିଡ଼ ଓ ଗୋଳମାଳ ମଧ୍ୟରେ ଜଣକର ଚିତ୍କାର ଜଣାପଡ଼େନାହିଁ । ଏହାର ତାତ୍ପର୍ଯ୍ୟ ହେଲା ଯେ-ବଡ଼ଲୋକଙ୍କ ସାମ୍ନାରେ ଛୋଟ ଲୋକଙ୍କ ଆପତ୍ତି କେହି ଶୁଣନ୍ତି ନାହିଁ ।)

୨୦୩୮୮. ନଜର ହଜିଲେ, ମାଲ୍ ଗାଏବ ।
(ସାମାନ୍ୟ ଅସାବଧାନତାରେ ଚୋର ଓ ଠକଙ୍କ ଦ୍ୱାରା ମାଲ ହଡ଼ପ ହୁଏ ।)

୨୦୩୮୯. ନାଟୁଆର ପିଲା ନାଚ କରେ । (ଜାତିଗତ ସ୍ୱଭାବ ଛିଡ଼ିଯାଏ ନାହିଁ ।)

୨୦୩୯୦. ନଟୀ ବାଉଁଶରାଣୀ ହେଲେ ଓଢ଼ଣା କାହିଁ ପାଇଁ ।
(ବେସରମ କାମ କରିବା ଆରମ୍ଭ କରିଦେଲେ ଲାଜ କରିବା ବ୍ୟର୍ଥ ।)

୨୦୩୯୧. ନଈରେ କଙ୍କର, କାଶୀରେ ଶଂକର ।
(କୌଣସି ପଦାର୍ଥର ଅଧିକତା ଦୃଷ୍ଟିରୁ ଏପରି କୁହାଯାଏ ।)

୨୦୩୯୨. ନଦୀ କୂଳରେ ବୁଢ଼ା କେତେବେଳେ ହୁଏ ବିଦା ।
(ବୃଦ୍ଧ, ଅଳ୍ପାୟୁ କିମ୍ବା ମରାପନ୍ନ ବ୍ୟକ୍ତିଙ୍କ ସମ୍ପର୍କରେ ଏହା କୁହାଯାଏ ।
ଉଃ- ତୁ ସୁଧୁରି ଯା, ନହେଲେ ଜୀବନସାରା କାନ୍ଦୁଥିବୁ । ମୁଁ ନଈକୂଳର ବୁଢ଼ା ଆଜି ଅଛି କାଲି ନଈ ପାଣିରେ ବିଦା ହୋଇଯିବି ।)

୨୦୩୯୩. ନଦୀ ନାବ ସଂଯୋଗ । (ନଈ ଓ ନାଆର ସମ୍ପର୍କ ।)

୨୦୩୯୪. ନିତିଦିନିଆ ମଜୁରିରେ ଝଗଡ଼ା କ'ଣ ?
(ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ କାମ କରି ମୂଲ ନେଲେ ସେଥିରେ ଝଗଡ଼ାର ଅବକାଶ ନଥାଏ।)

୨୦୩୯୫. ନମାଜ ଛଡ଼ାଇବାକୁ ଯାଇ ରୋଜା ପାଳି ଗଳା ବସିଯାଏ।
(ଯେବେ କେହି ଛୋଟ କଷ୍ଟ ଦୂର କରିବାକୁ ଯାଇ ବଡ଼ କଷ୍ଟ ଆବୁରି ଆଣେ ସେଇ କ୍ଷେତ୍ରରେ ଏପରି କୁହାଯାଏ।)

୨୦୩୯୬. ନୂଆ ଦାନା, ନୂଆ ପାଣି। (ନୂଆ ଚାକିରୀ )

୨୦୩୯୭. ନୂଆ ନ'ଦିନ, ପୁରୁଣା ଶହେ ଦିନ।
(ନୂଆ ଜିନିଷ / ପଦାର୍ଥ ସ୍ଥାୟୀତ୍ୱ ସମ୍ପର୍କରେ ସନ୍ଦେହ ଥାଏ।)

୨୦୩୯୮. ନୂଆ ନ'ଗଣ୍ଡା, ପୁରୁଣା ଛ'ଗଣ୍ଡା।
(ପୁରୁଣା ଠାରୁ ନୂଆର ଆକର୍ଷଣ ଅଧିକ।)

୨୦୩୯୯. ନୂଆ ବବୁର୍ଚ୍ଚି (=ରୋଷେୟା) ଶାଗରେ ସୁରୁଆ (=ଝୋଳ) ।
(ଅନାଡ଼ି ବ୍ୟକ୍ତି, ତା'ର ପ୍ରମାଦପୂର୍ଣ୍ଣ କାର୍ଯ୍ୟ ହେତୁ ଏହି ବ୍ୟଙ୍ଗ।

୨୦୪୦୦. ନୂଆ ହାକୀମ (=ମୁସଲମାନ କବିରାଜ) ଦେ ଅଫିମ।
ନୂଆ ଅନୁଭବହୀନ ବ୍ୟକ୍ତି ବଡ଼ ପ୍ରମାଦ କଲେ ଏପରି କୁହାଯାଏ।

୨୦୪୦୧. ନର୍କରେ ମଧ ଠେଲାପେଲା।
(ନିକୃଷ୍ଟ ବସ୍ତୁକୁ ସ୍ୱୀକାର କରିବା ପାଇଁ, କଷ୍ଟ ହେବା।)

୨୦୪୦୨. ନାହିଁ ଅସତ୍ୟ ସମ ପାତକ ପୁଞ୍ଜା
ଗିରିସମ ଦେବକି କୋଟିଏ ଗୁଞ୍ଜା (=କାଇଁଚଫଳ)।
(ଯେପରି କୋଟିଏ କାଇଁଚଫଳ ମିଶି ପାହାଡ଼ ସମ ହେବା ସମ୍ଭବ ନୁହେଁ ସେହିପରି ପାତକସମୂହ ଅସତ୍ୟ ସହିତ ସମାନ ହେବନାହିଁ।)

୨୦୪୦୩. ନାଇ (=ଭଣ୍ଡାରି)ର ବରଯାତ୍ରୀରେ ପ୍ରତ୍ୟେକଜଣ ଠାକୁର।
(ଯେଉଁଠାରେ କେହି ମାଲିକ ନଥାଆନ୍ତି ସେଠାରେ ପ୍ରତ୍ୟେକ ଜଣେ ଜଣେ ମାଲିକ ହୋଇଥାଆନ୍ତି।)

୨୦୪୦୪. ନାଇ (=ଭଣ୍ଡାରି)ର ଆଇନା, ଜଣକ ପାଖରେ ରହେନାହିଁ।
(ଏହାର ତାତ୍ପର୍ଯ୍ୟ ହେଲା ଯେ - ଏପରି ବସ୍ତୁ ଯାହାର ଉପଯୋଗ ସମସ୍ତେ କରିଥାଆନ୍ତି ।)

୨୦୪୦୫. ନାଇ ନାଇ ! ବାଳ କେତେ ? ଜଜମାନ ଏବେ ସାମ୍ନାକୁ ଆସିବେ।
(ଯେବେ କେହି ଏଭଳି ପ୍ରଶ୍ନ କାହାକୁ ପଚାରେ ତାହାର ଉତ୍ତର ବା ପ୍ରମାଣ

ତତ୍କ୍ଷଣାତ୍ ତାର ସାମ୍ନାକୁ ଆସିଥାଏ ।)

୨୦୪୦୬. ନାଉ (=ଭଣ୍ଡାରି), ବ୍ରାହ୍ମଣ, କୁକୁର,
ନିଜ ଜାତି ସାଙ୍ଗରେ ହୁଅନ୍ତି ଗର-ଗର ।
(ଭଣ୍ଡାରି, ବ୍ରାହ୍ମଣ ଓ କୁକୁର ଆପଣା ଜାତିଭାଇ ସାଙ୍ଗରେ ବହୁତ କଳିଗୋଳ ଲାଗନ୍ତି ।)

୨୦୪୦୭. ନାଇ ସିଆଣା, କୁଆସିଆଣା
(ଯେପରି ପକ୍ଷୀ ମଧରେ କୁଆ ଚାଲାକ୍ ସେହିପରି ମଣିଷ ମଧରେ ନାପିତ ।)

୨୦୪୦୮. ନାକ କଟିଲା, ହଟ (=ଜିଦ୍‌ଖୋର୍) ନ ହଟିଲା ।
(ବହୁତ ହାନି ବା ଅସମ୍ମାନ ହେଲାପରେ ମଧ ଜିଦ୍‌ଖୋର୍ ପ୍ରବୃତ୍ତି ଛାଡ଼େନାହିଁ ।)

୨୦୪୦୯. ନାଚ ନ ଜାଣି ଅଗଣା ଟେଢ଼ା ।
(କାମ ତ କରି ଆସେ ନାହିଁ, ହତିଆର ଆଦିର ଦୋଷ ଦିଅନ୍ତି । )

୨୦୪୧୦. ନାକ କଟୁ ପଛେ, ଶତ୍ରୁର ଯାତ୍ରା ଅଶୁଭ ସୂଚକ ହେଉ ।
(ନିଜର ହାନି କରି ଅନ୍ୟର ଅନିଷ୍ଟ କରିବା ସଂକ୍ରାନ୍ତରେ ଏହା ପ୍ରଯୁଜ୍ୟ ।)

୨୦୪୧୧. ନାକ ଚିପିଲେ ମୁହଁ ଖୋଲେ ।
(ଚାପ ପଡ଼ିଲେ ଯେଉଁ କାମ ହୁଏ ବା କଥା ବାହାରେ ।)

୨୦୪୧୨. ନାଚେ କୁଦେ ବାନର, କଉଡ଼ି ଖାଏ ବାଜୀଗର ।
(ଜଣେ ପରିଶ୍ରମ କରେ ଅନ୍ୟଜଣେ ସେଥିରୁ ଲାଭ ଉଠାଇଲେ ଏହି ପ୍ରବାଦଟି ପ୍ରଯୁଜ୍ୟ ହୁଏ ।)

୨୦୪୧୩. ନାଚେ ଗାଏ ମାରେ ତାନ, ଦୁନିଆ କରେ ସନ୍ମାନ ।
(ପ୍ରକୃତ ଗୁଣବାନ ଲୋକଙ୍କ ସ୍ଥାନରେ, ଲୋକଦେଖାଣିଆ ଭଣ୍ଡ ସନ୍ମାନିତ ହେଲେ ଏହା ପ୍ରଯୁକ୍ତ ହୁଏ ।)

୨୦୪୧୪. ନାଚିବାକୁ ଗଲେ ଓଢ଼ଣା କ'ଣ ?
(ଯଦି କୌଣସି କାମ କରିବାର ଅଛି ତେବେ ସେଥିପାଇଁ ଲାଜ କରିବା ଅସଙ୍ଗତ ।)

୨୦୪୧୫. ନାଚିଲାବାଲାଙ୍କର ପାଦ ଥରୁଥାଏ ।
(କାମକଲା ବ୍ୟକ୍ତି ଚୁପ ହୋଇ ବସି ପାରେ ନାହିଁ। ସେ କିଛି ନା କିଛି କରୁଥାଏ ।)

୨୦୪୧୬. ନାଟା (=ବାଙ୍ଗରା) ସବୁଠାରୁ ଦଣ୍ଡା । (ବାଙ୍ଗରାଲୋକ ସବୁଠାରୁ ଶକ୍ତିଶାଳୀ ।)

୨୦୪୧୭. ନାଟା (=ବାଙ୍ଗରା) ବଳଦ ଖେତକୁ ନୁହେଁ ।
ନୂଆ ଗୃହିଣୀ କାମକୁ ନୁହେଁ ।
(ଯେପରି ଛୋଟ ବଳଦ ଦ୍ୱାରା ଖେତକାର୍ଯ୍ୟ ହୁଏନାହିଁ ସେହିପରି ନୂଆ ଗୃହିଣୀ ଦ୍ୱାରା ପରିବାର ବର୍ଗଙ୍କୁ ସମ୍ଭାଳି ହୁଏନାହିଁ ।)

୨୦୪୧୮. ନାତୁଣୀ ଶିଖାଏ ଆଈକୁ, ବାର ଦେଢ଼ା ଆଠ ।
(ଯେତେବେଳେ ଛୋଟ ବଡ଼କୁ ଶିକ୍ଷା ଦିଏ ।)

୨୦୪୧୯. ନାଦାନ (=ମୂର୍ଖ)ର ମିତ୍ରତା ଜୀବନ ପ୍ରତି ଶଙ୍କା ।
(ମୂର୍ଖର ବନ୍ଧୁତା ବଡ଼ ଭୟାବହ ହୋଇଥାଏ ।)

୨୦୪୨୦. ନାଦାନ (=ମୂର୍ଖ) ମିତ୍ରଠାରୁ ଜ୍ଞାନୀ ଶତ୍ରୁ ଶ୍ରେୟସ୍କର ।
(ମୂର୍ଖମିତ୍ର ଠାରୁ ବୁଦ୍ଧିମାନ ଶତ୍ରୁ ଭଲ ।)

୨୦୪୨୧. ନାନା (=ଅଜା)ଙ୍କ ଧନ ଉପରେ ନାତିର ଲୋଭ ।
(ଅନ୍ୟର ଧନ ଉପରେ ଗର୍ବ କରିବା ସ୍ଥଳେ ଏହି ଉକ୍ତି ।)

୨୦୪୨୨. ନାନା (=ଅଜା)ର ଖାଏ, ଜେଜେର ନାତି ବୋଲାଏ ।
(ଜଣେ ଲୋକ ଉପକାର କରେ, ମାତ୍ର ନାମ ଅନ୍ୟର ହୁଏ ।)

୨୦୪୨୩. ନାନି (=ଆଈ) ମଲା ଅନୁଢ଼ା
ନାତୁଣୀର ନଅଟି ବାହା ।
(ବ୍ୟର୍ଥ ଗର୍ବ କରିବାର ଲୋକପ୍ରତି ଏହି ଉକ୍ତି ।)

୨୦୪୨୪. ନାନି (=ଆଈ) ଆଗରେ ଅଜାଙ୍କ ପରିବାର ସମ୍ପର୍କରେ ଆଲୋଚନା ।
(ନିଜଠାରୁ ଅଧିକ ଜାଣିଥିବା ଲୋକକୁ ଉପଦେଶ ଦେବାର ଉକ୍ତି ।)

୨୦୪୨୫. ନାନି (=ଆଈ) ଘଇତା କରେ, ତା'ର ନାତି ହାନି ଭରେ ।
(ଜଣେ ବ୍ୟକ୍ତି ଅପରାଧ କରେ, ଅନ୍ୟଜଣେ ଶାସ୍ତି ପାଏ ।)

୨୦୪୨୬. ନ ମାପ ନ ତଉଲ, ଭରିଦିଅ ଝୋଳ ।
(ନିଜ ମତଲବ ପୂରା କରିବା ପାଇଁ ଏହି ଉକ୍ତି ।)

୨୦୪୨୭. ନାପେ (=ମାପେ) ଶହେ ଗଜ କାଟେ ନ'ଗଜ ।
(କହେ ବହୁତ କରେ କମ୍ । ଯାହାକୁ 'ବାକ୍ୟବୀର' ବୋଲି କୁହାଯାଏ ।)

୨୦୪୨୮. ନାମରେ ଟିକି, ଉଠେଇ ନିଏ ଚକି ।
(ଛୋଟ ହୋଇ ମଧ କାମ ବହୁତ କରେ ।)

୨୦୪୨୯. ନାମ ପଦ୍ମଲୋଚନ, ଜନ୍ମରୁ ନୟନହୀନ ।
(ନାମ ଅନୁସାରେ ଗୁଣ ନହେବା ।)

୨୦୪୩୦. ନାମ ବଡ଼ା, ଆଉ ଦର୍ଶନ ଛୋଟା (ଥୋଡ଼ା) ।
(ବହୁତ ନାମ ଅଥଚ ଗୁଣ କମ ।)

୨୦୪୩୧. ନାମ ବଢ଼ାଏ ଦାମ । (ନାମୀ ଦୋକାନରେ ଅଧିକ ଦାମ ଦେବାକୁ ପଡ଼େ ।)

୨୦୪୩୨. ନାମ ମୋହର, ଗାଁ ତୋହର । (ଅନ୍ୟର ସମ୍ପତ୍ତିରୁ ଲାଭ / ଫାଇଦା ଉଠେଇବା ।)

୨୦୪୩୩. ନାମୀ ଚୋର କିଛି ନ ପାଏ, ନାମୀ ଫକୀର କମେଇ ଖାଏ ।
(ଖ୍ୟାତି ପାଇଁ କେଉଁଠି ଲାଭ ହୁଏ ତ କେଉଁଠି ହାନି ହୁଏ । କେଉଁଠାରେ ଚୋରୀ ହେଲେ ବିଖ୍ୟାତ ଚୋର ଧରା ପଡ଼ିଥାଏ, ଅଥଚ ଖ୍ୟାତିବୋଦ୍ ଫକୀର ସର୍ବତ୍ର ସମ୍ମାନିତ ହୁଏ ।)

୨୦୪୩୪. ନାରୀ ସୁଲକ୍ଷଣୀ, ଖୁସି ରଖେ ପରିଜନ
ସଭିଙ୍କୁ ଖୁଆଇ, ବଳେ ଯାହା କରେ ସେ ଭୋଜନ ।
(ସୁଲକ୍ଷଣା ସ୍ତ୍ରୀ ସବୁ କୁଟୁମ୍ବଙ୍କୁ ଖୁଆଇଲା ପରେ ନିଜେ ଭୋଜନ କରିଥାଏ ।)

୨୦୪୩୫. ନାରୀ ଧର୍ମ - ପତି ଦେବ, ଦ୍ୱିତୀୟ ନାସ୍ତି ।
(ସ୍ତ୍ରୀ ପାଇଁ ପତିଙ୍କ ବ୍ୟତୀତ ଅନ୍ୟ କେହି ଦେବତା ନାହାନ୍ତି ।)

୨୦୪୩୬. ନାରୀ ଅକର୍ମଣ୍ୟ ହେଲେ ସମ୍ପତ୍ତି ନାଶ,
ସ୍ୱାମୀ ଲଣ୍ଡା ହୋଇ ନେଲା ସନ୍ୟାସ ।
(ଗୃହସ୍ଥୀ ନଷ୍ଟ ହୋଇଗଲେ, ଲୋକେ ସାଧୁ ସନ୍ୟାସୀ ହୋଇଯାଆନ୍ତି । ଆଜିକାଲିକା ସାଧୁଙ୍କ ପ୍ରତି ଏହି ଉକ୍ତି ।)

୨୦୪୩୭. ନିସୃତ ହେଲେ ବଚନ, କ୍ଷଣକେ ବ୍ୟାପେ ଭୁବନ ।
(କଥା ତୁଣ୍ଡରୁ ବାହାରିଲା ମାତ୍ର ସଂସାର ସାରା ବ୍ୟାପିଯାଏ ।)

୨୦୪୩୮. *ଏକାର୍ଥରେ* - ନିର୍ଗତ ହେଲେ ଓଠରୁ, ପ୍ରତିଧ୍ୱନୀ ହୁଏ କୋଠରୁ ।

୨୦୪୩୯. ନିଜର ସୁଗନ୍ଧ ଗୁଣ, ନ ଜାଣେ କସ୍ତୁରୀ ହରିଣ ।
(ମନୁଷ୍ୟ ନିଜ ଗୁଣ ନିଜେ ଜାଣି ପାରେନାହିଁ ।)

୨୦୪୪୦. ନବେ ଘଡ଼ା ଦୁଧରେ, ଘଡ଼ାଏ ପାଣି କି ଜଣାପଡ଼େ ।
(କୌଣସି ବସ୍ତୁ ବହୁତ ଅଧିକ ପରିମାଣର ହୋଇଥାଏ ଏବଂ ସେଥିରେ ସାମାନ୍ୟ ପରିମାଣର ବସ୍ତୁ ମିଶା ଗଲେ ତାହା ବାରି ହୁଏନାହିଁ ।)

୨୦୪୪୧. ନିର୍ଗୁଣ ଗାଏ, ଧକା ଖାଏ, ବାକ୍ୟବୀର କେବଳ ଧନ କମାଏ ।
(ବାସ୍ତବିକ ଗୁଣିଜ୍ଞାନୀମାନଙ୍କୁ ସମ୍ମାନ ମିଳେ ନାହିଁ । ବାକ୍ୟବୀର ଅର୍ଥାତ୍ ଯିଏ କଥା ବନେଇ କହିପାରେ ତାକୁ ହିଁ କେବଳ ଇଜ୍ଜତ୍ ମିଳେ ।)

୨୦୪୪୨. ନିର୍ବଳର ବଳ ରାମ । (ଅସହାୟଙ୍କ ସହାୟ ଭଗବାନ ।)

୨୦୪୪୩. ନେକି (=ଭଦ୍ରପଣିଆ) ଲୋକ,
ଅସମୟରେ ଭଲ କଥା, କହିଲେ ବି ଖରାପ ଲାଗେ ।
(ଅସମୟରେ ଭଲ ଲୋକର ଭଲ କଥା ବି ଖରାପ ଲାଗିଥାଏ ।)

୨୦୪୪୪. ନିକେ (=ଉତ୍ତମ ଲୋକ) କଥା ଭଲ ଲାଗେ ।
(ଉତ୍ତମ ଲୋକର ମୁହଁରୁ ସବୁକଥା ଭଲ ଲାଗେ ।)

୨୦୪୪୫. ନିଚ୍ଚ ନଛାଡ଼େ ନିଚ୍ଚତା, ନିମ ନଛାଡ଼େ ପିତା ।

୨୦୪୪୬. ନିର୍ବୋଧ ହାକିମ (=ଚିକିତ୍ସକ) ଯେପରନେ ଯମ ।
(ଅଳ୍ପ ବିଦ୍ୟା ଭୟଙ୍କରୀ ଅର୍ଥରେ ।)

୨୦୪୪୭. ନୀଳଟିକା ଆଉ କୋଷ୍ଠ ଦାଗ ।
(ଯେବେ କାହାରି ଚରିତ୍ରରେ କଳଙ୍କ ଲାଗେ ଏହି କଥା କହନ୍ତି ।)
(ନୀଳ ଚାଷ କରି ଆଇନ୍ ଭଙ୍ଗ କଲାରୁ ଇଂରେଜ ସରକାର ତାକୁ ଦଣ୍ଡ ଦେଉଥିଲା । ଏଇ ଦଣ୍ଡିତ ଲୋକମାନେ ସମାଜରୁ ବାଛନ୍ଦ ହେଉଥିଲେ ଏବଂ ସେମାନଙ୍କୁ କଳଙ୍କର ଟିକା ଲାଗୁଥିଲା ।)

୨୦୪୪୮. ନେକ ନାମ (=ସୁଖ୍ୟାତି) ବଣିଆ ବଦନାମ ଚୋର ।
(ବଣିଆ ଆଉ ଚୋର ଉଭୟେ ଲୋକଙ୍କୁ ଠକନ୍ତି, ମାତ୍ର ବଣିଆ ପ୍ରଶଂସା ପାଏ ଏବଂ ଚୋର ନିନ୍ଦିତ ହୁଏ ।)

୨୦୪୪୯. ନେକି (=ଭଲକାମ) ଆଉ ପଚରା ପଚରି ।
(ଭଲ କାମ ପାଇଁ ପଚରାପଚରି କରିବା ଦରକାର ନାହିଁ ।)

୨୦୪୫୦. ନେକି (ଭଲକାମ) କର ଆଉ କୂଅରେ ପକାଅ ।
(ପରର ଉପକାର କରିବା ସମୟରେ ପ୍ରତ୍ୟୁପକାର କରିବାର ଆଶା ରଖିବା ଉଚିତ୍ ନୁହେଁ ।)

୨୦୪୫୧. ନେକି (=ଭଲ କାମ)ର ଫଳ ବଦି (=ଖରାପ)
(ଭଲର ପ୍ରତିବଦଳରେ ଖରାପ ମିଳେ ।)

୨୦୪୫୨. ନେକି (=ଭଲକାମ) ବଦି (=ଖରାପକାମ) ରହିଯାଏ ।
(ଲୋକ ମରିଯାଆନ୍ତି ମାତ୍ର ତାଙ୍କର ଯଶ ଅପଯଶ ସଂସାରରେ ରହିଯାଏ ।)

୨୦୪୫୩. ନଅର କାଠ ନବେ ଖର୍ଚ୍ଚ ।
(ଯେତେ ଦାମର ଜିନିଷ ତା'ଠାରୁ ଅଧିକ ଖର୍ଚ୍ଚ ପଡ଼ିଲେ ଏପରି କହନ୍ତି । ଅର୍ଥାତ 'ଛ'ଟଙ୍କା ଘୋଡ଼ାକୁ ନ'ଟଙ୍କା ଖର୍ଚ୍ଚ ଅର୍ଥରେ ।')

୨୦୪୫୪. ନଅଦିନରେ ଚାଲେ ଅଢ଼େଇ କୋଶ ।
(ବହୁ ଧୁସି କାମ କରୁଥିବା ଲୋକଙ୍କୁ ଏପରି କୁହାଯାଏ ।)

୨୦୪୫୫. ନଅ ନଗଦ, ନୁହେଁ ତେର ଉଧାର ।
(ଅଧିକ ଦାମରେ ବିକ୍ରି କରିବା ଅପେକ୍ଷା କମ୍ ଦାମରେ ନଗଦ ବିକ୍ରି କରିବା ଶ୍ରେୟ ।)

୨୦୪୫୬. ନଅ ମାସ ମା' ପେଟରେ କେମିତି ରହିଲା ।
(ଭୀଷଣ ଚଞ୍ଚଳ ଓ ଉପଦ୍ରବି ପିଲାଙ୍କୁ କୁହାଯାଏ ।)

୨୦୪୫୭. ନ'ଶହ ମୂଷା ଖାଇ ବିରାଡ଼ି
ହଜ (=ମୁସଲମାନଙ୍କ ତୀର୍ଥ)କୁ ଗଲା ।
(ସାରା ଜୀବନ ପାପ କରି ଶେଷରେ ଭକ୍ତ ଓ ଧର୍ମାତ୍ମା ବୋଲାଉଥିବା ଲୋକଙ୍କୁ କୁହାଯାଏ ।)

୨୦୪୫୮. ନୌକରୀର ମୂଳ ଆକାଶରେ, ନା ନୌକରି ତାଳ ଗଛର ଛାଇ ।
(ଚାକିରୀର କୌଣସି ସ୍ଥିରତା ନାହିଁ, କେତେବେଳେ ଚାଲିଯାଇ ପାରେ ।)

୨୦୪୫୯. ନୌକରୀର ମୂଳ ପଥରରେ ।
(ଚାକିରୀର କୌଣସି ଠିକଣା ନାହିଁ। ଯେ କୌଣସି ସମୟରେ ଚାଲି ଯାଇପାରେ।)

୨୦୪୬୦. ନିଆରା ପୁଅ ପଡ଼ିଶା ସମାନ । (ପୃଥକ ହେଲା ପୁଅ ପଡ଼ିଶା ଭଳି ହୋଇଯାଏ ।)

୨୦୪୬୧. ନିମତା ପାଇ ଗଲି, ପକେଟ ଖାଲି ।
(ଶକ୍ତି ବାହାର କାମ କରିବା ଲୋକଙ୍କୁ ଏହିକଥା କୁହାଯାଏ ।)

୨୦୪୬୨. ନହକା ଡଙ୍ଗା ବାଉଁଶ ବୁଡ଼ିଲେ ଭଙ୍ଗା ।

୨୦୪୬୩. ନଟ (=ନର୍ତ୍ତକ) ନ କୁହ ନଟୀ (=ନର୍ତ୍ତକୀ), ଓଲଟି ଧରିବ ବାଢ଼ର ମୁଠି ।

୨୦୪୬୪. ନହକା ଦାନ୍ତ ପଡ଼ିବା ଭଲ ।

୨୦୪୬୫. ନଦୀ ଗୋଟିଏ କୂଳ ଭାଙ୍ଗେ, ଆର କୂଳଟିକୁ ଗଢ଼େ ।

୨୦୪୬୬. ନଦୀ, ନାରୀ,ଶୃଙ୍ଗଧାରୀ (ଶିଙ୍ଗଧାରୀ), ଏ ତିନିକୁ ବିଶ୍ୱାସ ନ କରି ।

୨୦୪୬୭. ନଦୀରେ ହେଲା ବନ୍ୟା, କିମ୍ପାଇଁ ଧରେଇ ଅଣା ।

୨୦୪୬୮. ନଦୀ ଥିଲେ ଚଡ଼ା ହୁଏ ।

୨୦୪୬୯. ନଦୀର କୂଳ, ଶାଳର ମୂଳ ।

୨୦୪୭୦. ନଦୀ କୂଳରେ ଚାଷ,
ହୁଏ ତ ଭଲ, ନହେଲେ ମନ୍ଦ, ନହେଲେ ସର୍ବନାଶ ।

୨୦୪୭୧. ନଦୀ କୂଳରେ କୁଅ ଖୋଳିବା ।

୨୦୪୭୨. ନଦୀ କଡ଼ରେ ଚାଷ, ବାଲି ଉପରେ ବାସ ।
ଏନ୍ତୁଡ଼ି ପୁଅକୁ ଆଶ, ନାରୀ ମୁହଁର ହସ ।
ଏହା ଉପରେ ଯା'ର ବିଶ୍ୱାସ, ତା'ର ସାତ ପୁରୁଷ କାଟନ୍ତି ଘାସ ।

୨୦୪୭୩. ନଦୀ କତାରେ ଗଛ ।

୨୦୪୭୪. ନଦୀ ବନ୍ୟାକୁ ବାଲିର ବନ୍ଧ ।

୨୦୪୭୫. ନ ଦେବାୟ, ନ ଧର୍ମାୟ

୨୦୪୭୬. ନବଦ୍ୱିପର ଗୋରା ଚାନ୍ଦ ।
(ଶ୍ରୀ ଚୈତନ୍ୟ ମହାପ୍ରଭୁଙ୍କୁ ଗୋରାଚାନ୍ଦ ଆଖ୍ୟା ଦିଆଯାଇଛି । ସେ ନଦୀୟା ନବଦ୍ୱିପରେ ବୈଷ୍ଣବ ଧର୍ମ ପ୍ରଚାର ଆରମ୍ଭ କରିଥିଲେ । )

୨୦୪୭୭. ନଣଦେଈ ଅଟେ ବାଘୁଣୀ, ଠିଆ ହେଲେ କାଳସର୍ପଣୀ ।

୨୦୪୭୮. ନଣଦେଈ ଅଟେ ବାଘୁଣୀ, ବୁଲି ବୁଲି କୁଣ୍ଟା ରଟେ ।
ନଣଦେଈ ଯଦି ମରେ, ସୁଖରେ ଜୀବନ କଟେ ।

୨୦୪୭୯. ନଣଦେଈ ବିଷର କଣ୍ଡା,ବିଷର ଦିଏ ପୁଣ୍ଡା ।

୨୦୪୮୦. ନଣଦର ନଣଦ ଅଛି ।

୨୦୪୮୧. ଲହୁଣିର କଣ୍ଢେଇ । (ଯାହା ସାମାନ୍ୟ ଆଞ୍ଚ ବା ଖରାରେ ତରଳିଯାଏ ।)

୨୦୪୮୨. ନନ୍ଦୀଘୋଷ, ଚୋର ଭିଡିର ଦୋଷ ।

୨୦୪୮୩. ନବ କାର୍ତ୍ତିକ ।
(କାର୍ତ୍ତିକଙ୍କର ବାହନ ମୟୂର । ମୟୂର ବିହିନ ହେଲେ 'ନବକାର୍ତ୍ତିକ' ବୋଲାଯାଏ । ରୂପବାନ୍ ସୁନ୍ଦର ପୁରୁଷକୁ ସାଧାରଣତଃ 'ନବକାର୍ତ୍ତିକ' ବୋଲି କୁହାଯାଇଥାଏ ।)

୨୦୪୮୪. ନବଧା କୂଳଲକ୍ଷଣମ୍ ।
(ଆଚାର, ବିନୟ, ବିଦ୍ୟା, ପ୍ରତିଷ୍ଠା, ତୀର୍ଥଦର୍ଶନମ୍, ନିଷ୍ଠା, ବୃତ୍ତି ଓ ଜମାଅର୍ଥ ଦାନ, ନବଧା କୁଳ ମଙ୍ଗଳମ୍ ।)

୨୦୪୮୫. ନ ବନ୍ଧୁମଧ୍ୟେ ଧର୍ମହୀନ

୨୦୪୮୬. ନବମୀର ବୋଦା ।
(ଦୁର୍ଗାପୂଜାର ନବମୀରେ ଦେବୀଙ୍କ ପାଖରେ ବୋଦା ବଳି ପଡ଼େ ।)

୨୦୪୮୭. ନବାବୀ ଚାଲ ।

୨୦୪୮୮. ନବାବଙ୍କ ପୁତ୍ର ।

୨୦୪୮୯. ନବାବଙ୍କ ନାତି ।

୨୦୪୯୦. ନବାବ ସରକାରଙ୍କର ଘୋଡ଼ାର ଅଭାବ ।
(ବଡ଼ଲୋକ ତଥା ଧନିବ୍ୟକ୍ତିଙ୍କ ପ୍ରତି ଏକ ବ୍ୟଙ୍ଗୋକ୍ତି ।)

୨୦୪୯୧. ନଖଦର୍ପଣରେ ରହିବା ।
(ଦର୍ପଣ ଭଳି ନଖ ଉପରେ ଅଭୀଷ୍ଟ ବସ୍ତୁ ପ୍ରତିବିମ୍ବିତ ହେବା ।)

୨୦୪୯୨. ନଖ କାଟେ ଛୁଆ ବେଳେ, ପୋକ ହେଲେ ଦାନ୍ତ ନଚଳେ ।

୨୦୪୯୩. ନଖରେ ଦି'ଖଣ୍ଡ କରିବା ।

୨୦୪୯୪. ନଖ ଛିଦ୍ର ପାଇଁ କୁରାଢ଼ି ଲଗେଇବା ।
(ନଖରେ ଯଦି ଛିଦ୍ର ହୁଏ ବା କଟାଯାଏ, କୁରାଢ଼ିର କି କାମ ।)

୨୦୪୯୫. ନଅଟି ଗାଁ ମାଗିଲେ ଯାହା, ସାତଟି ଗାଁ ମାଗିଲେ ତାହା ।

୨୦୪୯୬. ନେଉଟିଆ (ସାଗ) ଅଢ଼େଇ ମାସ,
ସଜନା (ସାଗ) ବାର ମାସ ।

୨୦୪୯୭. ନେଉଟିଆ (ସାଗ) ଯେତେ ହଉନା ବୃଦ୍ଧି, ରହେନି ଦୁଇ ଘଡ଼ି ।

୨୦୪୯୮. ନହଂକା ନ ପାରି ବନ୍ଧୁକ ଧରେ,
କ୍ଷଣରେ ଚଢ଼ି ତାଳଗଛ ଚଢ଼େ ।

୨୦୪୯୯. ନ ଭୂତ ନ ଭବିଷ୍ୟତି ।
(ଅନ୍ନଦାନ ପରମ ଦାନ, ନ ଭୂତଂ ନ ଭବିଷ୍ୟତି)

୨୦୫୦୦. ନ ଯଯୌ ନ ତସ୍ଥୌ ।

୨୦୫୦୧. ନରମ କାଠରେ ବଢ଼େଇର ବଳ ।

୨୦୫୦୨. ନରମ ବିବିର ଖଡ଼ମ-ପାଦ, ଚାଲିଲେ ବିବିର ନପଡ଼େ ପାଦ ।
(ସ୍ତ୍ରୀର ପାଦତଳ ଅର୍ଥାତ୍ ତଳିପା'ର ମଧ୍ୟଭାଗ ଚାଲିଲାବେଳେ ଖଡ଼ମ ବା କଠଉ ଭଳି ଶୂନ୍ୟ ଥାଏ ଓ ଭୂମି ସ୍ପର୍ଶ କରେ ନାହିଁ । ଏହା ସ୍ତ୍ରୀମାନଙ୍କର ଏକ ଅଶୁଭ ଚିହ୍ନ ବୋଲି କଥିତ ।)

୨୦୫୦୩. ନରମ ମାଟିରେ ବିଲେଇ ହଗେ ।

୨୦୫୦୪. ନରମ ମାଟିକୁ ବିଲେଇ ଆଞ୍ଚୁଡ଼େ ।
(ଶକ୍ତ ମାଟିକୁ ବିଲେଇ ଆଞ୍ଚୁଡ଼େ ନାହିଁ । ଏହା ପ୍ରକୃତିଗତ ।)

୨୦୫୦୫. ନରମ କାନ୍ଧ, ଭ୍ରମରେ ଭାଙ୍ଗେ ।

୨୦୫୦୬. ନରମ ବାଘ, ଗରମ କୁକୁର । (ବିଲୁଆକୁ ଏହିପରି କୁହାଯାଏ ।)

୨୦୫୦୭. ନରାଣାଂ ନାପିତୋ ଧୂର୍ତ୍ତଃ । (ପୁରୁଷମାନଙ୍କ ମଧ୍ୟରେ ଭଣ୍ଡାରି ସବୁଠାରୁ ଚଲାକ ।)

୨୦୫୦୮. ନହୁକୁଣିରେ ତାଳଗଛ କାଟିବା ।

୨୦୫୦୯. ନର ହଲାଏ ହାତ ଆଉ ବାନର ହଲାଏ ମଥା ।
ବୁଝି ନପାରେ ନର-ବାନରଙ୍କ କଥା ।

୨୦୫୧୦. ନର ମନ ନାରାୟଣବି ଜାଣନ୍ତି ନାହିଁ ।

୨୦୫୧୧. ନଳକୁ ରାଜା, ପଣକୁ ସାହୁ ।

୨୦୫୧୨. ନଷ୍ଟ ଗୁଆ ଦେଲେ ଦକ୍ଷିଣା ବାଆ,
ଝିଅ ନଷ୍ଟ ହେଲେ ଦୋଚାକୁଣୀ ମାଆ ।
ନଷ୍ଟ ବୋହୂ ପର ଘରେ,
ପୁତ୍ର ନଷ୍ଟ ପରଦାରା କରେ (=ବାହୁରେ) ।

୨୦୫୧୩. ନଷ୍ଟ ନାରୀର ପରିଚିତି, ବୁଦ୍ଧି ବଳରେ ହୁଏ ସତୀ ।

୨୦୫୧୪. ନଷ୍ଟ ଗାଭୀର ବଡ଼ ହମାଳ,
ଶୁଣିଲେ କାନ ହୁଏ ଉଭାଳ ।

୨୦୫୧୫. ନଷ୍ଟ ଗୋରୁ, ଦୁଷ୍ଟ ଗୋଁମାଇ ।

୨୦୫୧୬. ନଷ୍ଟର ଗୋଡ଼ା (=ମୂଳ) ।

୨୦୫୧୭. ନସିବର ଏମିତି ଖେଳା (=ଖେଳ),
ଯାହାକୁ କହେ ଭାଇ ସେ କହେ ଶଳା ।

୨୦୫୧୮. ନ ସ୍ଥାନଂ ତିଳଧାରଣେ ।
(ଘରେ ତିଳଟିଏ ରଖିବା ପାଇଁ ମଧ ସ୍ଥାନ ନାହିଁ ।)

୨୦୫୧୯. ନା ଅଛି, ନାହିଁ ପେଟରେ ଭାତ,
କୁଷ୍ଠ ଲୋଟୁଛି ସତର ହାତ ।

୨୦୫୨୦. ନଛୋଡ଼ବନ୍ଦା ।

୨୦୫୨୧. ନାହିଁ ଚାଉଳ ନାହିଁ ପାତ (= ପତ୍ର),
ବସେଇ ଦିଅ ଖାଲି ଭାତ ।

୨୦୫୨୨. ନାଇଲି-ଧୋଇଲି କେଶ ଭିଜେନା,
କାଠ ଚଳିଲେ ବି ଭାତ ସିଝେନା ।

୨୦୫୨୩. ନାହିଁ ବା କଲା ପଢ଼ାପଢ଼ି, ପାଇବ ଗୋଟେ ଦାରୋଗାଗିରି ।

୨୦୫୨୪. ନାହିଁ ଭାତ, ଲୁଣ ଦେଇ ଖାଇବ ।

୨୦୫୨୫. ନାହିଁ ବା ଦେଲେ, ତହିଁରେ କି, ଗୁଡ଼ ମଣ୍ଡାର ଅଭାବ କି ।

୨୦୫୨୬. ନା ଏ ଦିଗ, ନା ସେ ଦିଗ ।

୨୦୫୨୭. ନା ଇଆଡ଼େ, ନା ସିଆଡ଼େ

୨୦୫୨୮. ନୌକା, ଘୋଡ଼ା, ନାରୀ, ଯେ ଚଢ଼େ ସେ ତାହାରି ।

୨୦୫୨୯. ନିଅହେ, ତୁମେ ଲିଅ (=ନିଅ) ମୋତେ,
ମୁଁ ଲିଏ (=ନିଏ) ତୋତେ ।

୨୦୫୩୦. ନାକ କାନ କାଟି ଇଟା ଘଷିବା ।
୨୦୫୩୧. ନାକ ଟାଣିଲେ ମୁହଁ ଆସେ ।
୨୦୫୩୨. ନାକ ଥିଲେହିଁ ସିଘାଣି ।
୨୦୫୩୩. ନାକ ଦେଇ ଖାଏ, ନା ମୁହଁ ଦେଇ ଖାଏ ।
୨୦୫୩୪. ନାକ ନାହିଁ ତାର, ନୋଥ ହଲାଏ ।
୨୦୫୩୫. ନାକ ନାହିଁ ଝିଅର ନୋଥର ସଉକ,
ଫୁଲେଇ ଝିଅର କେତେ ଠମକ ।
୨୦୫୩୬. ନାକ ନଥିଲା ଝିଅ ବେସର (=ଗୁଣା) ପିନ୍ଧେ ।
୨୦୫୩୭. ନାକ ଫୋଡ଼ା ବଳଦ ।
୨୦୫୩୮. ନାକରେ ଦଉଡ଼ି ଦେଇ ଘୁରେଇବା ।
(ନାକ ଫୋଡ଼ା ବଳଦ ଭଳି ବୋକା ଘଇତା ନହେଲେ ନାକରେ ଦଉଡ଼ି ଦେଇ ଘୁରେଇବ କେମିତି ।)
୨୦୫୩୯. ନାକରେ କାମ, ନା, ନିଶ୍ୱାସରେ କାମ ।
୨୦୫୪୦. ନାକ କାନରେ ଖତ ଦେବା ।
୨୦୫୪୧. ନାକରେ କାନରେ ଖତ, ସ୍ୱର୍ଗଦ୍ୱାର ଦେଇ ପଥ ।
୨୦୫୪୨. ନାକ ମୁହଁରେ ଗୁଞ୍ଜିବା । (ତରବରରେ ଖାଇଲେ ଏହିପରି କୁହାଯାଏ ।)
୨୦୫୪୩. ନାକଠାରୁ ନାକର-ଡାକ (=ଘୁଙ୍ଗୁଡ଼ି) ବେଶି,
ନାଆଁଠାରୁ ନାଆଁର ଡାକ ବେଶି ।
୨୦୫୪୪. ନାକପାଣି ଆଖି ପାଣି କରିବା / ହବା ।
(ଏଇ ବୟସରେ ଶହ ଶହ ଗୋଟାଙ୍କର ନାକ ପାଣି ଆଖିପାଣି ବାହାର କରି ଛାଡ଼ିଛି
- ଏହାକୁ କି ସଭ୍ୟତା ବୋଲି କୁହାଯାଏ ?)
୨୦୫୪୫. ନାକରେ ସୋରିଷ ତେଲ ଦେଇ ଶୋଇବା ।
୨୦୫୪୬. ନା ଖାଏ ଭାତ, ନା ପିଏ ପାଣି,
ଯମ ମଣିଷର ଟଣାଟଣି ।
୨୦୫୪୭. ନ ଖାଇ ଖାଲି ହାତ ଧୁଆ ।
୨୦୫୪୮. ନ ଖାଇ ଏତେ,
ଖାଇଲେ ନ ଜାଣେ କେତେ ।
୨୦୫୪୯. ନ ଗଜୁରିଲେ ଘୁଣ ଧରେ, ନ ଉଠିଲେ କଚଡ଼ା ।
ବାସରଘରେ ଘଇତା ମରେ , ବାସି ହେଲେ ରାଣ୍ଡ ।

୨୦୫୫୦. ନାଗର ନ ଆସିଲା, ଉଭଳା ମନ,
କାହାର ବନ୍ଧନ, କାହାର ଭୋଜନ ।

୨୦୫୫୧. ନା ଘରର, ନା ଘାଟର ।

୨୦୫୫୨. ନା ଘାଟର, ନା ବାଟର ।

୨୦୫୫୩. ନଘା ଚୋର (=ଉପପତି), ବିବି ଦାସୀର ପାଦରେ ।

୨୦୫୫୪. ନାଚ-କୁଦ ଭୁଲନା ।

୨୦୫୫୫. ନାଚ କାଚ ବାପ ଭାଇ, ନାଚି କୁଦି ବାର ଭାଇ ।

୨୦୫୫୬. ନାଚ ଜାଣିନି, ମୋତେ ଆଣିଛ ଘରେ,
ଯଦି ନାଚେ, ପୁଅଟି ମୋର ନବ କିରେ?

୨୦୫୫୭. ନାଚି ନଆସେ, ଅଗଣା ଚଷେ ।

୨୦୫୫୮. ନାଚିବାକୁ ଆସି ଓଢ଼ଣା ଦେବା ।

୨୦୫୫୯. ନ ମାଗିଲେ ଘୋଡ଼ାଟା ମିଳେ,
ମାଗିଲେ ହାତୀଟା କ'ଣ ମିଳେ ?

୨୦୫୬୦. ନାଚର ପାଦ ଥାମେ ନାହିଁ ।

୨୦୫୬୧. ନା ମଥା ନା ଛତା ।

୨୦୫୬୨. *ଏକାର୍ଥରେ* - ଛତା ବି ନାହିଁ ମଥା ବି ନାହିଁ ।

୨୦୫୬୩. ନାଟ ପଣସର ଅଠା ବେଶି ।।
(ଏଠାରେ ନାଟ ପଣସର ଅର୍ଥ ବୀଜଶୂନ୍ୟ ପଣସ କିମ୍ବା ଖାଇ ସାରିଥିବା ପଣସ । ଏଥିରେ ଅଠା ବେଶି ଥାଏ । )

୨୦୫୬୪. ନାଟାଣୀ ହାଟକୁ ଯାଏ, ଚାରି କଡ଼ାର ଶିରିଣୀ କିଣି ଚାଟି ଚାଟି ଯାଏ ।
(ଏଠାରେ 'ନାଟାଣୀ' ଅର୍ଥ ବାଞ୍ଝିଆ ସ୍ତ୍ରୀ, ଅଥବା 'ନାଟାନ'ରୁ ଦରିଦ୍ର ନିର୍ଧନ ଅର୍ଥରେ ବ୍ୟବହୃତ । ଏମିତି ଲୋକ ହାଟକୁ ଯାଇ, ପିଲାମାନଙ୍କ ପାଇଁ ଶିରିଣୀ କିଣି ଚାଟିଚାଟି ଯାଏ ।)

୨୦୫୬୫. ନାଟା ମଣିଷ ପହିଲେ ମାତେ, ନାଟା ଜମିନ୍ (=କ୍ଷେତ) ଆଗେ ପାଟେ ।
(ଏଠାରେ ନାଟା ଅର୍ଥ ବାଞ୍ଝିଆ, ଛୋଟ ବା ଅବସନ୍ନ ।)

୨୦୫୬୬. ନ ଡାକିଲେ ଯାଅନି, ଘରର ଭାତ ଖାଅନି ।

୨୦୫୬୭. ନଡ଼ାର ସ୍ତ୍ରୀ ଖଟରେ ଶୁଏ, ନଡ଼ା ଆଡ଼କୁ ଫେରି ଫେରି ଚାହେଁ ।
(ଯେଉଁ ସ୍ତ୍ରୀ ତୃଣଶଯ୍ୟାରେ ଅଭ୍ୟସ୍ତ, ସେ ଖଟରେ ଶୋଇଲେ ଫେରି ଫେରି ନଡ଼ା ଆଡ଼କୁ ଅନାଏ ।)

୨୦୫୬୮. ନାଡ଼ୀ ନକ୍ଷତ୍ର ସବୁ ଜଣା ।
(କୌଣସି ବ୍ୟକ୍ତିର ମୂଳରୁ ଶେଷ ପର୍ଯ୍ୟନ୍ତ ସବୁ ଜାଣିବା ।)

୨୦୫୬୯. ନାଡ଼ୀର ଟାଣ (=ପୁତ୍ର) ।

୨୦୫୭୦. ନାଡ଼ୀ ଛିଣ୍ଡା ଧନ (=ପୁତ୍ର) ।

୨୦୫୭୧. ନାତାନ୍ତର ସାତ ଘର ।
(ଦୁର୍ବଳ ଦରିଦ୍ର ସାତଜଣଙ୍କ ପାଖରୁ ସାହାଯ୍ୟ ପାଇବାର ଉପାୟ ।)

୨୦୫୭୨. ନାତିର ନାତି, ସ୍ୱର୍ଗରେ ବତି । (ଦୀର୍ଘଜୀବୀ ହିଁ ପୂଣ୍ୟବାନ ।)

୨୦୫୭୩. ନଥିଲା ଠାରୁ ମାଗଣ ଭଲ ।

୨୦୫୭୪. ନଥିଲେ ଧନା, କି କରିବ ମାନ ।

୨୦୫୭୫. ନ ଥୋଇବ ଯେ ଗୁରୁ ମାରେ;
ନ ଥୋଇ ଯେ ସ୍ତ୍ରୀ ଜାର (=ଉପପତି) କରେ ।
ପର ଘରକୁ ଯାଏ ଘରବାଲି;
ଦୁଇ ସ୍ତ୍ରୀରେ ହୁଏ କଳି ଗାଳି ।

୨୦୫୭୬. ନ ଦେବା ପଣସ ଶ୍ରାବଣରେ ପାଚେ ।
(ନଦେବାର ଇଚ୍ଛା ଥିଲେ କୁହାଯାଏ ଯେ - ପଣସ ଶ୍ରାବଣ ମାସରେ ପାଚେ ।)

୨୦୫୭୭. ନ ଦେବାର ଚାଲ, ଆଜି ନୁହେଁ କାଲ (=ଆସନ୍ତା କାଲି)।

୨୦୫୭୮. ନ ଦେଖିଲେ ଥାଉ ଥାଉ ନାରୀ, ଦେଖିଲା ପରେ ମରାମରି ।

୨୦୫୭୯. ନ ଦେଖି ଚାଲୁ ଥାଏ, ପଦେ ପଦେ ଝୁଣ୍ଟୁଥାଏ ।

୨୦୫୮୦. ନା ନଦୀର କୂଳ, ନା ବୃକ୍ଷର ମୂଳ ।

୨୦୫୮୧. ନାନା ମୁନିର ନାନା ମତ ।

୨୦୫୮୨. *ଏକାର୍ଥରେ* - ଯେତେ ମତ ସେତେ ପଥ ।

୨୦୫୮୩. ନ ନଇଁଲେ ମଥା, ଲାଗିବ ଚାଳର ବତା ।

୨୦୫୮୪. ନ ପଢ଼ି ପଣ୍ଡିତ ।

୨୦୫୮୫. *ଏକାର୍ଥରେ* - ପୁରୁଷକୁ ନାରୀ ଶିଖାଏ ନୀତ (=ନିୟମ) ।
ନ ପଢ଼ି ହୁଏ ପଣ୍ଡିତ ।
ପଢ଼ି ଶୁଣି ପୁରୁଷ ଗଣମୂର୍ଖ ।

୨୦୫୮୬. ନାପିତ (=ଭଣ୍ଡାରି) ଦେଖିଲେ ନଖ ବଢ଼େ ।

୨୦୫୮୭. ନାପିତ ବୈଦ୍ୟ ଧୋବା ଚୋର, ଯୋଗୀ ବୈରାଗୀର ନାହିଁ ଓର (=ଅନ୍ତ)

୨୦୫୮୮. ନାପିତ ହେଲେ ବୈଦ୍ୟରାଜ (=କବିରାଜ)
ଖିଅର କରିବ କିଏ ।
୨୦୫୮୯. ନ ବେଇ ହେଲେ କହ୍ନେଇଙ୍କର ମା' ।
(ଯଶୋଦା କୃଷ୍ଣଙ୍କୁ ପ୍ରସବ ନ କରି ମାତା ରୂପରେ ପ୍ରସିଦ୍ଧ । )
୨୦୫୯୦. ନ ଜାଣି ଥିଲି ଭଲ, ଅଧେ ଜାଣି ପ୍ରାଣ କଲବଲ ।
୨୦୫୯୧. ନା ଭାଙ୍ଗେ ନା ମଚଙ୍କେ ।
୨୦୫୯୨. ନା ଭଲ ନା ମନ୍ଦ, କଥା କହିଲେ ସନ୍ଦ (= ସନ୍ଦେହ)
୨୦୫୯୩. ନାମକଟା ସିପେଇ ।
(କାଗଜପତ୍ରରୁ ଯାହାର ନାମ ଖରାଜ କରା ହୋଇଛି ତଥା ବହିଷ୍କୃତ ।)
୨୦୫୯୪. ନାମଟି ଯେମିତି ଡାକ (= ଡାକ ଡୋଲ) ଭିତରଟି ଫାଙ୍କ ।
୨୦୫୯୫. ନାମ ନାହିଁ, ଗୋତ୍ର ନାହିଁ, ମହାରାଜାଙ୍କ ଯଦି ।
୨୦୫୯୬. ନାମ ବଡ଼ା, ଦର୍ଶନ ଥୋଡ଼ା ।
୨୦୫୯୭. ନାମ ପଡ଼ିଲା ଯାର, ଗାଣ୍ଡି ଫାଟିଲା ତା'ର ।
୨୦୫୯୮. ନ ମରୁଣୁ ଭୂତ ।
୨୦୫୯୯. ନା ପାଠର ନା ବାଟର/ ଘାଟର ।
୨୦୬୦୦. ନାଆଁକୁ ଗଉଡ଼ କାଞ୍ଜି ଖାଏ ।
୨୦୬୦୧. ନାଆଁକୁ ଡାକନ୍ତି ଗୁରୁ ଗୋସେଁଇ, ଲାଞ୍ଜ ମୁଣ୍ଡର ଜ୍ଞାନ ନାହିଁ ।
୨୦୬୦୨. ନାଆଁକୁ ତାଳପୋଖରୀ, ଘଟି ବୁଡ଼େନି ।
୨୦୬୦୩. ନାଆଁକୁ ଧନ୍ୱନ୍ତରି, ଚିକିତ୍ସାର ଯମ ।
୨୦୬୦୪. ନାଆଁକୁ ଧର୍ମଦାସ, ଧର୍ମର ନାମ ନାହିଁ ।
୨୦୬୦୫. ନାଆଁ ଡାକରେ ଗଗନ ଫାଟେ, ଢିଙ୍କିଶାଳରେ କୁଣ୍ଡା ଚାଟେ ।
୨୦୬୦୬. ନାଇ-ଧୋଇ (=ଗାଧୋଇ) ଛୁଏଁ ଚମ,
ମୋଚି ମାଇପର କିବା କାମ ।
୨୦୬୦୭. ନ ଗାଧୋଇ, ମଝିରେ ଶୋଇ ।
୨୦୬୦୮. *ଏକାର୍ଥରେ* - ଖାଏ ନା ଛୁଏଁ, ମଝିରେ ଶୁଏ ।
୨୦୬୦୯. ନାଁରେ (ବା ପ୍ରତାପରେ) ବାଘ ଗୋରୁ ଗୋଟିଏ ଘାଟରେ ପାଣି ପିଅନ୍ତି ।
୨୦୬୧୦. ନନ୍ଦୁ (ଲଡୁ) ଗୋପାଳ । (ଆଣ୍ଠୁଆ ଗୋପାଳ । କୃଷ୍ଣଙ୍କର ବାଲ୍ୟଲୀଳା ।)
୨୦୬୧୧. ନନ୍ଦୁ (ଲଡୁ) ନାଡ଼ିଲେ ଗୁଣ୍ଡ ପଡ଼େ ।

୨୦୬୧୨. ନାଆରେ ଯାଆନ୍ତୁ ଅବା, ପାଦରେ ଯାଆନ୍ତୁ,
ପଥର ଦୂରତା ଏକାଭ ଧରନ୍ତୁ ।

୨୦୬୧୩. ନାରଦଙ୍କ ଛିଙ୍କି ।

୨୦୬୧୪. ନାରଦ ନାରଦ କହିବା ।
(ଛିଙ୍କି ବସେଇଲାବେଳେ,ଛିଙ୍କିର ଦେବତା ନାରଦମୁନିଙ୍କୁ ସ୍ମରଣ କରି ତାଙ୍କ ନାମ ଉଚ୍ଚାରଣ କରିବା ।)

୨୦୬୧୫. ନଡ଼ିଆ (=ନାରିକେଳ) କ'ଣ ମାଙ୍କଡ଼ ଖାଇପାରେ?
(ମାଙ୍କଡ଼ ହାତରେ ନାରିକେଳ ଖାଇବାକୁ ଇଚ୍ଛା, ଭାଙ୍ଗିବାକୁ ନାହିଁ ବଳ । )

୨୦୬୧୬. ନାରୀ -କାଗଜ-ନାଆ, ତିନିଙ୍କ ବୈରୀ ବାଆ ।
(ବତାସ ନାରୀର ବସ୍ତ୍ର, କାଗଜ ଓ ନାଆକୁ ଉଡ଼େଇ ନିଏ ।)

୨୦୬୧୭. ନାରୀ ଯାହାର ସ୍ୱତନ୍ତରା, ତା' ପତି ଜୀବନ୍ତରେ ମରା ।

୨୦୬୧୮. ନାରୀର ବଳ ଆଖିର ଜଳ, ମିଛ କଥା ଚୋରର ବଳ ।

୨୦୬୧୯. ନାରୀ ହିଜଡ଼ା ପୁରୁଷ ଖୋଜା, ଏଥିରେ ପଡ଼ି କର୍ତ୍ତାଭଜା ।
(ଏଠାରେ 'ଖୋଜା'ର ଅର୍ଥ ହେଉଛି ନପୁଂସକ ତଥା କ୍ଲୀବ । ଭାରତର ମୁସଲମାନ ସମ୍ରାଟମାନଙ୍କର ହାରେମ୍ ବା ଅନ୍ତପୁରରେ ନିଯୁକ୍ତ ନପୁଂସକ ପ୍ରହରୀ ।)

୨୦୬୨୦. ନଳା କାଟି ପାଣି ଆଣିବା ।
(ସମସ୍ତେ କହନ୍ତି ଛି ଛି - ଖସିଲା ବୟସରେ ନାଳ କାଟି ପାଣି ଆଣୁଛ କାହିଁକି ?)

୨୦୬୨୧. ନାସ୍ତି ବିଦ୍ୟା କୁତେ ଯଶଃ ।
(ବିଦ୍ୟା ନଥିଲେ ଯଶ କାହିଁ?)

୨୦୬୨୨. ନା ହୋମରେ ନା ଯଜ୍ଞରେ ।
(ଈଶ୍ୱର ବିଶ୍ୱାସରେ ମିଳନ୍ତି । ହୋମରେ କିମ୍ବା ଯଜ୍ଞରେ ମିଳନ୍ତି ନାହିଁ ।)

୨୦୬୨୩. ନିକଉଡ଼ିଆ (=ନିର୍ଧନ) ଗଲେ ହାଟେ,
କଙ୍କଡ଼ା ଦେଖି ହୃଦୟ ଫାଟେ ।

୨୦୬୨୪. ନିକଉଡ଼ିଆ (=ନିର୍ଧନ) ନାଗରର କଦମ୍ବମୂଳରେ ସ୍ଥାନ / ଆଡ୍ଡା ।

୨୦୬୨୫. ନ-ଖିଅର କରିବା ଭଣ୍ଡାରୀ, ବିଲେଇକୁ ଖିଅର କରେ ।

୨୦୬୨୬. ନକମ୍ମା ଦରଜି ପୁଅ ମୁହଁ ସିଲେଇ କରେ ।

୨୦୬୨୭. ନକମ୍ମାର କାମ ବେଣ୍ଟି ।

୨୦୬୨୮. ନଖାଇବା ଲୋକର ଗ୍ରାସ, ଦେଖି ଲାଗେ ତ୍ରାସ ।

୨୦୬୨୯. ନ-ଚିହ୍ନା ଭାଇର ଗୁଣ୍ଡା ବଡ଼ ।

୨୦୬୩୦. ନଗ୍ନ ଲୋକର ପଞ୍ଝା ବଡ଼ ।

୨୦୬୩୧. ନିଜେ ଗଲେ ପତ୍ର ପଡ଼େନି,
ଚାକରକୁ ପଠାଏ ନିମନ୍ତ୍ରଣକୁ ।

୨୦୬୩୨. ନିଜେ ନିଜେ କହେ ବଡ଼, ତାକୁ କହନ୍ତି ଲଘୁତର ।

୨୦୬୩୩. ନିଜେ ନ ପାଇ ଅନ୍ୟକୁ ବୋଲେ,
ତହିଁରେ ଶରୀର ଦ୍ୱିଗୁଣ ଜଳେ ।

୨୦୬୩୪. ନିଜେ ପିନ୍ଧିଛି ଖାପି ଧୋତି, ବାପ ଶ୍ରାଦ୍ଧକୁ ଦୁଇ ହାତି ।

୨୦୬୩୫. ନିଜର ପିଲା ସୁନା ଧନ, ପରର ପିଲା ଦୁଶମନ ।

୨୦୬୩୬. ନିଜର ପୁଅ ଗେହ୍ଲା ଦୁଲାଳ, ପରର ପୁଅ ଲଣ୍ଡା ଗୋପାଳ ।

୨୦୬୩୭. ନିଜର ନାକ କାଟି, ପରର ଯାତ୍ରା ଭଙ୍ଗ ।
(ନାକ କଟା ଦେଖିଲେ ଯାତ୍ରା ଅଶୁଭ ହୁଏ । ତେଣୁ ନିଜର କ୍ଷତି କରି ଅନ୍ୟକୁ ହାନି ପହଞ୍ଚେଇବା ।)

୨୦୬୩୮. ନିଜର ମାଉପକୁ କେହି ବାଙ୍ଗ କହେ ନାହିଁ ।

୨୦୬୩୯. ନିଜର ଭଲ ପରର କଷ୍ଟ, ଏଣିକି ଧନ ବାଟକୁ ଆସ ।

୨୦୬୪୦. ନିଜ ଜମିରେ ନଳ (ଜମିମପା କାଠି) ପଡ଼ିଲେ ନଳର ଖଡ଼ ଖଡ଼
ପର ଜମିରେ ନଳ ପଡ଼ିଲେ, ନଳକୁ ଚାପି ଧର ।

୨୦୬୪୧. ନିଘା କଲେ ଏକ ପୌଟି, ନିଘା ନକଲେ ଏକ ପୌଟି ।

୨୦୬୪୨. ନେଇ ଜାଣେ, ଦେଇ ଜାଣେନି
ତା' ମୁହଁରେ ପିକ (=ପାନପିକ)/ ଖୁକ (=ଛେପ)
ନେଇ ଜାଣେ, ଦେଇ ଜାଣେ,
ତାକୁ କହନ୍ତି ଲୋକ ।

୨୦୬୪୩. ନିତି ଦେଖେ ବୋହୂଟି ଲୁଗାପଟା ଧୁଏ ।
ଦିନେ ଦେଖିଲିନି ପୁଅ ପାଖରେ ଶୁଏ ।

୨୦୬୪୪. ନିତି ଉପାସିଆକୁ ନ ମିଳେ ଭାତ,
ନିତି ମଡ଼କୁ ନମିଳେ କାଠ ।
(ନିତି ଭିକ୍ଷା, ତନୁ ରକ୍ଷା ତାକୁ କହି ଦୁଃଖୀ ।)

୨୦୬୪୫. ନିତି ରାଜା କଟକ ଯାଏ,
ପଥର ସମ୍ଭଳ ଘରେ ବସି ଖାଏ ।

୨୦୬୪୬. ନିତିଦିନିଆ କଳିହୁଡ଼ି ବୋହୂ ଭଲ ଥିଲା ମୋର
ଅଇଲା ପରେ କନ୍ଦଲବୋହୂ ପରାଣ ଝୁରେ ମୋର ।

୨୦୬୪୭. ନିତି ଚଷାର ଝିଅ,
ବାଇଗଣ ଖେତ ଦେଖି ପଚାରେ, ଏଇଟା କିସ ।

୨୦୬୪୮. ନିତି ନାହିଁ ଦେବ କିଏ, ନିତି ରୋଗୀ ଦେଖେ କିଏ ।

୨୦୬୪୯. ନିତିରୋଗା, ଆଖି ବଙ୍କା,

୨୦୬୫୦. ନିତି ସ୍ୱପ୍ନରେ ବାଘ ଖାଏ,
କେଉଁଦିନ ତାର ଭଲରେ ଯାଏ ।

୨୦୬୫୧. ନିଦାନ କାଳେ ହରିନାମ । (ମରଣ କାଳରେ ହରିନାମ)

୨୦୬୫୨. ନିଦାନର ବିଧାନ କାହିଁ ।

୨୦୬୫୩. ନିଦାନର ବିହନ ।
(ନିତ୍ୟାନ୍ତ ସଂକଟରେ ବିହନ ମଧ କାମରେ ଲାଗେ ।)

୨୦୬୫୪. ନିଦାନର ସାରଥି, ବୁଢ଼ା ଲୋକଙ୍କ ଭାରତୀ ।

୨୦୬୫୫. ନିଦ୍ରା ସୁଖର ସହଚରୀ, ଦୁଃଖର କେହି ନୁହେଁ ।

୨୦୬୫୬. ନିଧି ମା' ଚାଉଳରେ ଝିଙ୍ଗା (=ଜହ୍ନା),
ବୋହୂକୁ ମାରି ବଜାଏ ସିଙ୍ଗା ।

୨୦୬୫୭. ନିବରଣ ଘରେ କୁତ ନାହିଁ ।
(Morton ସାହେବଙ୍କ ଦ୍ୱାରା ସଂଗୃହୀତ ପ୍ରବାଦର ଇଂରେଜୀ ପଦ - "No adding symmetry to a finished house ")

୨୦୬୫୮. ନିଭିଲା ନିଆଁକୁ ଜଳେଇବା ।

୨୦୬୫୯. ନିମକ ଖାଇ, ନିମକ ହାରାମି ।

୨୦୬୬୦. ନିମ୍ବ ତଳ ଦେଇ ଯାଇନ, ନିମ୍ବଫଳ ଖାଇନ ।

୨୦୬୬୧. ନିମ୍ବ ପିତା, ଚିରେଇତା ପିତା, ଆଉ ପିତା ଖଇର
ତା'ଠାରୁ ଅଧିକ ପିତା ଭଉଣୀ ସଉତୁଣୀ ଘର ।

୨୦୬୬୨. ନିମ୍ବ, ଚିରେଇତା ଯେଉଁଠି, ମଣିଷ ମରେନି ସେଇଠି ।
(ନିମ୍ବ, ଚିରେଇତା ପିତା ମଣିଷ ପାଇଁ ହିତକର । )

୨୦୬୬୩. ନିମ୍ବ, ନିସିନ୍ଦା, ତେନ୍ତୁଳି, ତାଳ, ଘରେ ନ ପୋତ କୌଣସି କାଳ ।

୨୦୬୬୪. ନିମନ୍ତ୍ରଣ ଘର ଭାତରେ କାଙ୍ଗାଳୀ ବିଦା ।

୨୦୬୬୫. ନ-ଭୁକା କୁକୁର, ଢଣ୍ଡାଖିଆରେ ଯମ ।।

୨୦୬୬୬. ନ-ଭୁକା କୁକୁର, ଖଣ୍ଡାଖିଆରେ ଧୁରନ୍ଧର ।

୨୦୬୬୭. ନି ମରଦ (=ମାଇଚିଆ)ର ମରଦଗିରି,
ଲୟା କୁଣ୍ଡରେ ଫତୁଆ (=କାଜିର ନିର୍ଦ୍ଦେଶ) ଚାରି ।

୨୦୬୬୮. ନିମ୍ବ ବେଳକୁ ହାକ୍ ଥୁ-ଥୁ କର, ଗୁଡ଼ ବେଳକୁ ଚଟା ଚଟି କର ।

୨୦୬୬୯. ନିକଟ ପୋଖରୀ ଦୂରକୁ ଯାଏ, ଚାଡି ବୁଲି ବୁଲି ଗୀତ ଗାଏ ।
ହସି ଚାହେଁ ଆଡ଼ ଦୃଷ୍ଟି, ଡାକ ବୋଲେ - ସେଇ ସେ ନଷ୍ଟି ।

୨୦୬୭୦. ନାକ ବାଜେ (=ଘୁଙ୍କୁଡ଼ି)·ଯା ନିଦ ମହଲେ (=ଶୋଇଲା ଘରେ)
ରକ୍ଷ୍ୟ ତାକୁ ଦୁକ୍ଷ୍ୟ ବୋଲେ,
ପାହୁଣ୍ଡ ପଡ଼ିଲେ ଭୂମି କମ୍ପେ
ତାର ମାଇପ କେଇ ଦିନ ରହେ ।

୨୦୬୭୧. ନିୟତି ଖତର (=ଖତରା-ବିପଦ)
ଝୁଲାରେ ପଥର ।

୨୦୬୭୨. ନିୟତ ଶୁଣେ ବରକତ (=ସୌଭାଗ୍ୟ ବା ପ୍ରାଚୁର୍ଯ୍ୟ)
(ଭାଗ୍ୟ ଗୁଣରେ ସୌଭାଗ୍ୟ ପ୍ରାପ୍ତ ହୁଏ ।)

୨୦୬୭୩. ନିୟତିଃ କେନ ବାଧତେ ।
(ନିୟତିକୁ କେହି ବାଧା ଦେଇ ପାରିବେ ନାହିଁ । ଯେପରି - କୃଷ୍ଣ ଯାହାର ମାମୁଁ, ପିତା ଯାହାର ଅର୍ଜୁନ, ସେଇ ଅଭିମନ୍ୟୁ ଯୁଦ୍ଧରେ ହତ । ତେଣୁ ନିୟତିକୁ କେହି ବାଧା ଦେଇ ପାରିବ ନାହିଁ ।)

୨୦୬୭୪. ନିୟତିର ଆଖି କଣା ।
(ଅଦୃଷ୍ଟ ଅନ୍ଧ ଅଟେ ।)

୨୦୬୭୫. ନେଇଥାଏ ବୋହୂ ଶିଳପୁଆ
ଯିବିଲୋ ମୁହିଁ କନ୍ଦଳପଡ଼ା
ଆଉ ଚାହେଁନି ଶିଳପୁଆ
ପାଇଲିଣି କନ୍ଦଳର ଗୋଡ଼ା ।

୨୦୬୭୬. ନେଇଯାଏ ବେଗାରେ, ହସି ବସେ ପଗାରେ (=ହିଡ଼)

୨୦୬୭୭. ନିରାମିଷ ଖାଅ, ଉପବାସ ଯାଅ ।

୨୦୬୭୮. ନିର୍ଗୁଣ ଅଦା, ତିନିଗୁଣ ଝାଳ (=ରାଗ) ।

୨୦୬୭୯. *ଏକାର୍ଥରେ* - ପଚା ଅଦା, ରାଗର ଗଦା ।

୨୦୬୮୦. ନିର୍ଗୁଣ ପୁରୁଷର ତିନିଗୁଣ ରାଗ
ଅଣ୍ଟାରେ ଗାମୁଛା ମୁଣ୍ଡରେ ଅଢ଼ାରପାଗ (=ପଗଡ଼ି)

୨୦୬୮୧. ନିର୍ଗୁଣ ପୁରୁଷର ଭଜନ ସାର ।
ସଦା କରୁଥାଏ ମାରମାର ।

୨୦୬୮୨. ନିର୍ଗୁଣ ମଣିଷର, ତିନିଲକ୍ଷ ମାଇପ ।

୨୦୬୮୩. ନିର୍ଧନର ଧନ, ଅଥର୍ବର ଯୌବନ ।

୨୦୬୮୪. ନିର୍ବଂଶର ଝିଅକୁ, ନିଃସନ୍ତାନକୁ ଦିଏ,
ତାର ପୁଣି ହିସାବ ନିକାଶ କରିବ କିଏ ।

୨୦୬୮୫. ନିର୍ଧନର ଧନ ହେଲେ, ଦିନରେ ଦେଖେ ତାରା ।
ନି ଘଇତାର ଘଇତା ହେଲେ, ବାସେ ବାପର ପାରା ।

୨୦୬୮୬. ନି ଗାୟାଳର ଈଶ୍ୱର ଗାୟାଳ।

୨୦୬୮୭. ନିଷଣ୍ଢକୁ ବେଢ଼ା ଭଲ ।

୨୦୬୮୮. ନିକମ୍ମା କିର୍ତ୍ତନୀୟାର ଧାମାଳି (=ପରିହାସ) ସାର ।

୨୦୬୮୯. ନିକମ୍ମା ଚଷାର କୋଡ଼ିଏଟା ଦାଆ ।

୨୦୬୯୦. ନିକମ୍ମା ପୁରୁଷର ତିନୋଟି ବଡ଼, ଆହାର, ନିଦ୍ରା, କ୍ରୋଧଟି ଦୃଢ଼ ।

୨୦୬୯୧. ନିକମ୍ମା ଦେଢ଼ଶୁର ବଚନ ମିଠା, ନିତି ବସି ଖାଆନ୍ତି ଚିତଉ ପିଠା ।

୨୦୬୯୨. ନିକମ୍ମା ମନ, କୁଚିନ୍ତାର ଭବନ ।

୨୦୬୯୩. ନିଷ୍ଫଳା ଗଛରେ ମାଙ୍କଡ଼ ବି ଚଢ଼େନି ।

୨୦୬୯୪. ନିଃଶ୍ୱାସ ପକେଇବାର ସମୟ ନାହିଁ ।

୨୦୬୯୫. ନିଚ ଯଦି ଉଚ ଭାଷେ, ସୁବୁଦ୍ଧି ଉଡ଼ାଏ ହାସେ ।

୨୦୬୯୬. ନିଚ ଲୋକର କଥା, କଛିମର ମଥା ।

୨୦୬୯୭. ନିଚ ବ୍ୟକ୍ତିର ଭାତକୁ ଯାହାର ମନ,ମଦ ପିଇ ମରେ ହେଲେ ବି ମହାନ ।

୨୦୬୯୮. ନିରୋଗ ଶରୀର ଯାହାର, ବୈଦ୍ୟ କରିବ କିସ ।
ପର ଭାତରେ ବାଇଗଣ ପୋଡ଼ା, ପଖାଳ ଭାତରେ ଘିଅ ।

୨୦୬୯୯. ନୁଣ ଆଣୁ ଆଣୁ ପଖାଳ ଶେଷ ।

୨୦୭୦୦. ନୁଣ ଖାଏ ଯାହାର, ଗୁଣ ଗାଏ ତାହାର ।
(ପ୍ରବାଦ ସ୍ରଷ୍ଟା ଗୋପାଳ ଓଡ଼େଙ୍କ ଦ୍ୱାରା ବଙ୍ଗ ଦେଶରେ ପ୍ରଚଳିତ ଓଡ଼ିଆ ପ୍ରବାଦ ।)

୨୦୭୦୧. ନୁଣ ମେଞ୍ଚାଏ ଲେମ୍ବୁରସ, ଗେଡ଼ା ଘଇତା ମାଇପ ବସ ।

୨୦୭୦୨. ନୁଣ ଦେଇ ରାନ୍ଧିଲେ ସୁଆଦ ଅତି, ଅଲଣା ରାନ୍ଧିଲେ ତିନିଗୁଣ କ୍ଷତି ।

୨୦୭୦୩. *ଏକାର୍ଥରେ* - ସୁଆଦ ହୁଅଇ ରନ୍ଧା,ପକାଇଲେ ନୁଣ ।
ଅଲଣା ରାନ୍ଧିଲେ ହୁଏ, କ୍ଷୟ ତିନିଗୁଣ ।

୨୦୭୦୪. ନୁଣ ଯେ ହାଣ୍ଡିରେ ଥାଏ, ସେ ଲୁଣ ହାଣ୍ଡିକୁ ଖାଏ ।

୨୦୭୦୫. ନୁଣ ଲଙ୍କା ଦେଇ ଭାତ ଖାଏ,
ବିରାଡ଼ିକୁ କଞ୍ଚା କଦଳୀ ଦେଖାଏ ।
ନୁଣରେ ନ ବୁଡ଼ି, ମୁହଁରେ ଚାଖିବା ।

୨୦୭୦୬. ନୁଣର ଭାଣ୍ଡ, ତେଲର ଭାଣ୍ଡ, ତାକୁ କି କହିବା ଭାଣ୍ଡ ।
ଭାଣ୍ଡ ଭିତରେ ଭାଣ୍ଡ ଥିଲା, କଟକ ଗୋପାଳ ଭାଣ୍ଡ ।

୨୦୭୦୭. ନୂଆ ହେଲେ ଖଇ ଲଡୁ, ମଚ ମଚ ହୁଏ
ପୁରୁଣା ହେଲେ ଖଇ ଲଡୁ, ନଚ ପଚ ହୁଏ ।

୨୦୭୦୮. ନୂଆନୂଆ ତେନ୍ତୁଳି ମଞ୍ଜି, ପୁରୁଣା ହେଲେ ଚାଳ ଗୁଞ୍ଜି ।

୨୦୭୦୯. ନୂଆ ନୂଆ ପାନ ନ'କଡ଼ା,ପୁରୁଣା ହେଲେ ଛ'କଡ଼ା ।

୨୦୭୧୦. ନୂଆ ପିରତିରେ ବେଣ୍ଟି ଅଠା ।

୨୦୭୧୧. ନୂଆ ମହୁରିଆ ବଜାଏ ଭୋଳି, ମିଠା ହୁଏନା ନୂଆ କୋଳି ।

୨୦୭୧୨. ନୂଆ ଯୋଗୀକୁ ଭିକ ମିଳେନା ।

୨୦୭୧୩. ନୂଆ ରଜାର ନୂଆ ବିଚାର ।

୨୦୭୧୪. ନୂଆ ବାବାଜି ଚିତାଦେଲେ, ଧୋଇଯାଏ ମୁହଁ ଧୁଆ ଜଳେ ।

୨୦୭୧୫. ନାହିଁ କାର୍ଯ୍ୟ ତ ଖଇ ଭାଜ ।

୨୦୭୧୬. ନାହିଁ କାର୍ଯ୍ୟ ଯାହାର, ଯାଉ ସେ ଗଙ୍ଗାସାଗର ।

୨୦୭୧୭. ନାହିଁ ଗୋସେଇଁର ଖୋଦା ଗୋସେଇଁ ।

୨୦୭୧୮. ନାହିଁ ଘର ନାହିଁ ବାଡ଼ି, ବୋହୂକୁ ପିନ୍ଧାଏ ପାଟ ଶାଢ଼ୀ ।

୨୦୭୧୯. ନାହିଁ ଚାଳ ନାହିଁ ଚୁଲୀ, ଯାଯାବର ଖାଏ ବୁଲି ।

୨୦୭୨୦. ନାହିଁ ପିଲାଠୁଁ ଦାସୀ ପିଲା ଭଲ ।

୨୦୭୨୧. ନାହିଁ ଧନ ତ ଯାଅ ବଣ

୨୦୭୨୨. ନାହିଁ କହିଲେ ସାପର ବିଷବି ନଥାଏ ।

(ପ୍ରବାଦ ସ୍ରଷ୍ଟା ଗୋପାଳ ଉତ୍ତେଳ ଦ୍ୱାରା ବଙ୍ଗ ଦେଶରେ ପ୍ରଚଳିତ ଓଡ଼ିଆ ପ୍ରବାଦ । 'ନାହିଁ କହିଲେ ରହେନାହିଁ ସାପର ବିଷ ଯଥା ।')

୨୦୭୨୩. ନାହିଁ ମାଇପ ନାହିଁ ପୁତ, ବୁଲେ ଯେମିତି ଯମଦୂତ ।

୨୦୭୨୪. ନେକୁଡ଼ି-ସେକୁଡ଼ି (=ଛିଣ୍ଡାକନା) ନିଆଁ ଛାଡ଼ି ବି ଛାଡ଼େ ନା ।
(ଛିଣ୍ଡାକନା ନିଆଁ ସହଜରେ ନିଭେଇ ହୁଏନାହିଁ । )

୨୦୭୨୫. ନେକୁଡ଼ି-ସେକୁଡ଼ି (=ଛିଣ୍ଡାକନା) ନିଆଁ ଯେମିତି ଶୋଇ
ନଣ୍ଡା ମୁଣ୍ଡରେ ଘୋଳ ଡାଳ ।

୨୦୭୨୬. ନେକା (=ନିବୁଦ୍ଧିଆ), ଗେହ୍ଲା ଆଉ ଚାଳିଶା କଣା,
ପାଣି ବୋଲି ପିଏ ନବାତ ପଣା ।

୨୦୭୨୭. ନେକା, ବୋକା, ଢିଲା କଛା, ତିନିଙ୍କୁ ବିଶ୍ୱାସ ନ କରିବ ବଚ୍ଛା ।

୨୦୭୨୮. ନେଙ୍ଗଟା ଗାଣ୍ଡିରେ ପିନ୍ଧେ କପଡ଼ା, ଗାଣ୍ଡି କହେ ବଡ଼ ଫମ୍ପଡ଼ା ।

୨୦୭୨୯. ନେଙ୍ଗଟା ଯୋଗୀର ଘରେ ଚୋରୀ ।

୨୦୭୩୦. ନେଙ୍ଗଟା ଗଳାରେ ମୋତି ମାଳ ।

୨୦୭୩୧. ନେଙ୍ଗଟା ଦେଶରେ ଲୁଗା ପିନ୍ଧିଲେ ଭାଣ୍ଡ ।

୨୦୭୩୨. ନେଙ୍ଗଟାର ନାହିଁ ଧୋବାର କାମ ।
(ଧୋବାର ଲାଭ ଉଲଗ୍ନ ପାଖରେ ନଥାଏ ।)

୨୦୭୩୩. ନେଙ୍ଗଟାର ନାହିଁ ଡକାୟତର ଭୟ ।

୨୦୭୩୪. ନେଙ୍ଗଟାର ବସ୍ତ୍ର ହରଣ ।

୨୦୭୩୫. ନେଙ୍ଗଟି (ମୂଷା) (=ଚୁଟିଆମୂଷା) ପାହାଡ଼ କାଟେ ।

୨୦୭୩୬. ନେଙ୍ଗଟି (=କଉପୁନି) ଭିତରେ କୁଷ୍ମାନ
(କଉପୁନି ପିନ୍ଧି ଦୁର୍ନୀତି କରୁଥିବା ବାବାଜିମାନଙ୍କୁ ବ୍ୟଙ୍ଗ କରାଯାଇଛି ।)

୨୦୭୩୭. ନଣ୍ଡା ନାଣ୍ଡୀର ଦଳ । (ଭେକଧାରୀ ବୈଷ୍ଣବ ବୈଷ୍ଣବୀର ଦଳ ।)

୨୦୭୩୮. ନଣ୍ଡାମୁଣ୍ଡରେ ଖୁଣ୍ଟାର ଭୟ ।

୨୦୭୩୯. ନେବାର କୁଟୁମ୍ବ, ଦେବାର ନୁହେଁ ।

୨୦୭୪୦. ନେଲାବେଳେ ପରିପାଟୀ, ଦେଲାବେଳେ ଫଟାଫଟି ।

୨୦୭୪୧. ନେଲାବେଳେ ରୋଜଗାର, ଦେଲାବେଳେ ଗୁଣାଗାର । (=ଅପରାଧ) ।

୨୦୭୪୨. ନେମ୍ବୁ ଚିପୁଡ଼ିବ ଯେତେ, ପିତା ହେବ ସେତେ ।

୨୦୭୪୩. ନୌକାର ଶତ୍ରୁ ଢେଉ, ବାଘର ଶତ୍ରୁ ଫେଉ (ଭେରେଣ୍ଡା) ।

୨୦୭୪୪. ନିଶାର ରାଜା ମଦ, ତା'ଠାରୁ ବଡ଼ ତୋଷାମଦ ।

୨୦୭୪୫. ନିଶାରେ ଶିବଙ୍କ ବାପ ।

୨୦୭୪୬. ନିଶାରେ ଛାତି ଫାଟେ, କୁକୁର ମୁହଁ ଚାଟେ ।

୨୦୭୪୭. ନେଙ୍ଗଡ଼ା, ଛୋଟା କାଠର ଡିମ୍ବ, ତାଇ ନେଙ୍ଗଡ଼ା ଦିନ ଜାଙ୍କ ।

୨୦୭୪୮. ନେଙ୍ଗୋ ବାଇ ।

(ସ୍ତ୍ରୀର ଉପଡି ଅଛି ଏହି ସନ୍ଦେହଜନକ ବିକାରକୁ 'ନେଙ୍ଗୋବାଇ' କହନ୍ତି । ଯେପରି ଆମେ ଶାରିରୀକ ପବିତ୍ରତା ରକ୍ଷା କରିବାକୁ ପାଗଳକୁ 'ଶୁଚିବାଇ' ରୋଗ ହୋଇଛି ବୋଲି କହନ୍ତି । )

୨୦୭୪୯. ନାଚି ମରେ ରାମୁ, ଚୁଡ଼ା ଖାଏ ଶ୍ୟାମୁ ।

୨୦୭୫୦. ନଣ୍ଡା-ମୁଣ୍ଡିଆ କେତେଥର ବେଲଗଛ ତଳକୁ ଯାଏ ।

୨୦୭୫୧. ନେଡ଼େ (ନିଚ ଶ୍ରେଣୀୟ ମୁସଲମାନ) ଖୋଜେ ଇଦ୍‌ପର୍ବ ।

୨୦୭୫୨. ନେଡ଼େ (ନିଚ ଶ୍ରେଣୀୟ ମୁସଲମାନ) ନୁହେଁ ଇଷ୍ଟ,
ତେନ୍ତୁଳି ନୁହେଁ ମିଷ୍ଟ ।

୨୦୭୫୩. ନେଡ଼େ (ନିଚ ଶ୍ରେଣୀୟ ମୁସଲମାନ) ମୁଣ୍ଡରେ ଭୋଡ଼ିଖଡ଼ମ ।

୨୦୭୫୪. ନିଭିବା ଆଗରୁ କ୍ଷଣିକ ପାଇଁ, ଦପ୍ କରି ଦୀପ ଦୀପ ଜଳଇ ।

୨୦୭୫୫. ନଳିତା ଦଉଡ଼ିରେ ଖଟା କରିବା

(ନଳିତା ହେଲା ପିତା, ତେଣୁ ତାକୁ ଖଟା କରିବାର ଅର୍ଥ ବ୍ୟଙ୍ଗ କରାଯାଇଛି । )

୨୦୭୫୬. ନାଉରୀର ଗୋଟିଏ ନାଆ, ନିନାଉରୀର ଶହେ ନାଆ ।

୨୦୭୫୭. ନାଉରୀର ଗୋରୁ, ବ୍ରାହ୍ମଣର ନାଆ ।

(ବ୍ରାହ୍ମଣର ଗୋରୁ ହୁଏ, ନାଉରୀର ନାଆ ହୁଏ । ମାତ୍ର ନାଉରୀ ଗୋରୁ, ବ୍ରାହ୍ମଣର ନାଆ ଦୁଇଟିଜାକ ବିଷଦୃଶ ଅଟେ ।)

୨୦୭୫୮. ନେଡ଼େ (=ଲୋମ ଛଡ଼ା) କୁତା ଗୁହ ଖାଏ ବେଶି ।

୨୦୭୫୯. ନୋଲା (=ଲୋଭି) ହୁଏ ସକ ସକ,
ଆରେ ନୋଲା ତୁ ସମ୍ଭାଳି ଯା,
ଆଗେ ଯିବୁ ତୁ ବାପଘର
ତେବେ ଖାଇବୁ ଦୁଧ ସର ।

୨୦୭୬୦. ନୌକା, ଡିଙ୍ଗି, ଚାହେଁନା ମୁହିଁ ଆଜ୍ଞା ଯଦି ପାଏ,
ପ୍ରାଚୀ ନଈରେ ପହଁରି ପହଁରି, ଶ୍ୱଶୁର ଘରକୁ ଯାଏ ।

୨୦୭୬୧. ନୌକା ଥାଇ ଯେ ପହଁରେ,
ଡାକ ବୋଲେ, ମୁଁ କି କରିବି ତାରେ ।

୨୦୭୬୨. ନଖଦର୍ପଣରେ ରଖିବା ।

୨୦୭୬୩. ନ ଚଷା ସଜ୍ଜନାୟତେ ।

୨୦୭୬୪. ନଦୀରେ ପୁଣି ବାଲିବନ୍ଧ ।

୨୦୭୬୫. ନଦୀ କତାର ଗଛ ।

୨୦୭୬୬. ନଦୀୟାର ଗୋରାଚାନ୍ଦ ।
(ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଶ୍ରୀଚୈତନ୍ୟଙ୍କୁ ନଦୀୟାର ଗୋରାଚାନ୍ଦ ବୋଲି କୁହାଯାଏ, କାରଣ ସେ ନଦୀୟାରୁ ହିଁ ଧର୍ମପ୍ରଚାର ଆରମ୍ଭ କରିଥିଲେ ।)

୨୦୭୬୭. ନ ଦେବାୟ ନ ଧର୍ମାୟ ।

୨୦୭୬୮. ନବାବ ସାହେବଙ୍କ ଘୋଡ଼ାର ଅଭାବ ନାହିଁ ।

୨୦୭୬୯. ନିୟନ ବୁଜିଲେ ସବୁ ଅନ୍ଧକାର ।

୨୦୭୭୦. ନରମର ବାଘ, ଗରମରେ ଶିଆଳ ।

୨୦୭୭୧. ନହୁରୁଣୀରେ ତାଳଗଛ କାଟିବା । (ଅସମ୍ଭବ ବ୍ୟାପାର)

୨୦୭୭୨. ନଳ ରାଜା, ଗଣକ ସାହୁ ।

୨୦୭୭୩. ନଷ୍ଟ ନାରୀର ପରିଚୟ, ବୁଦ୍ଧି ଗୁଣରେ ସତୀ ହୁଏ ।

୨୦୭୭୪. ନଷ୍ଟର ଗୁରୁ, ଦୁଷ୍ଟର ଗୋଁସେଇ ।

୨୦୭୭୫. ନାହିଁ ସୁଖଂ ଦୁଃଖୈର୍ବିନା ଲଭ୍ୟତେ ।

୨୦୭୭୬. ନାହିଁ ଘରେ ଖାଇ ବଡ଼ ।

୨୦୭୭୭. ନାହିଁ ପୁଅ ଠାରୁ, ଦାସୀ ପୁଅ ଭଲ ।

୨୦୭୭୮. ନ ଦେଲେ କୁକୁର, କାନ୍ଧ ଉପରେ ଚଢ଼େ ।

୨୦୭୭୯. ନାହିଁ ଧନ ତ ଯାଅ ବଣ ।

୨୦୭୮୦. ନାହିଁ ଅନ୍ନ, ଖାଅ ଦେଇ ଲୁଣ ।

୨୦୭୮୧. ନାହିଁ ମାମୁଁ ଭଲ, ନା କଣା ମାମୁଁ ଭଲ ।

୨୦୭୮୨. ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ ।

୨୦୭୮୩. ନ ଧରୁଣୁ କାନ୍ଦିଏ ।

୨୦୭୮୪. ନାଆ ଉପରେ ଗାଡ଼ି, ଗାଡ଼ି ଉପରେ ନାଆ ।

୨୦୭୮୫. ନାକ ଝାଡ଼ି କହୁଛନ୍ତି କଥା, ଭାଙ୍ଗିଯିବ ନୋଥର ଶୁଣୁଣି ପତା ।

୨୦୭୮୬. ନାକ ପୋଡ଼ା ବଇଦ ।

୨୦୭୮୭. ନାକରେ କାମ କି ନିଶ୍ୱାସରେ କାମ ।

୨୦୭୮୮. ନାଚିବାକୁ ଯାଇ ଓଢ଼ଣାକୁ ଡର ।

୨୦୭୮୯. ନାଚି ନ ଜାଣି ଅଗଣା ଚଷେ ।

୨୦୭୯୦. ନାଚି ନ ଜାଣି ଅଗଣା ଦୋଷ ।

୨୦୭୯୧. ନଣ୍ଡା ଆଉ କେତେଥର ମଶାଣିକୁ ଯିବ ।

୨୦୭୯୨. ନାଚେ ଭଲ, ଘୁରେ ଓଲଟା ।

୨୦୭୯୩. ନାଚିବାକୁ ଲାଗିଲେ ଓଢ଼ଣୀର କି କାମ ।

୨୦୭୯୪. ନ ଛୁଉଁଣୁ କାଉଁ କାଉଁ ।

୨୦୭୯୫. ନ ଜାଣି ଅନ୍ଧି ସନ୍ଧି, ଖେଞ୍ଚୁ ଦେଖିଲେ କଞ୍ଚାକଦଳୀ କାନ୍ଦି ।

୨୦୭୯୬. ନାଟ ଭୃକୁଟି କର ନାହିଁ ।

୨୦୭୯୭. ନାଡ଼ୀ ନକ୍ଷତ୍ର ଟାଣି ବାହାର କରିବା ।

୨୦୭୯୮. ନ ପଢ଼ି ପଣ୍ଡିତ ।

୨୦୭୯୯. ନ ପଢ଼େଇଲେ ପୁଅ, ସଭିଙ୍କ ଆଗରେ ଥୁଅ ।

୨୦୮୦୦. ନ ବେଇ କହ୍ନେଇର ମା ।
ନା ଭାଙ୍ଗେ ନା ମଚକେ ।

୨୦୮୦୧. ନା ଭଲ ନା ମନ୍ଦ, କଥା କହିଲେ ଛନ୍ଦ ।

୨୦୮୦୨. ନାଆଁକୁ ଗଉଡ଼ କାଞ୍ଜି ଖାଏ ।

୨୦୮୦୩. ନ ମରୁଣୁ ଭୂତ ।

୨୦୮୦୪. ନାଆଁକୁ ତାଳ ପୋଖରୀ, କିନ୍ତୁ ଘଟ ବୁଡ଼େନି ।

୨୦୮୦୫. ନାଆଁରେ ଧର୍ମଦାସ, ପୁଣ୍ୟର ଲେଶମାତ୍ର ନାହିଁ ।

୨୦୮୦୬. ନାଆଁରେ ଧନ୍ୱନ୍ତରୀ, ଚିକିତ୍ସାରେ ଯମ ।

୨୦୮୦୭. ନଳା କାଟି ପାଣି ଆଣିବା ।

୨୦୮୦୮. ନିକାମିଆ ଦରଜି, ପୁଅର ମୁହଁ ସିଲେଇ କରେ ।

୨୦୮୦୯. ନିତି ରୋଗ, ଚହିଁକି ଆଖି ବଙ୍କା ।

୨୦୮୧୦. ନିତି ସ୍ୱପ୍ନରେ ବାଘ ଖାଏ, କେଉଁ ଦିନ କାହାର ଭଲ ଯାଏ ।

୨୦୮୧୧. ନିଦ୍ରା ନାହିଁ ନିର୍ଦ୍ଧନୀର, ନିଦ୍ରା ନାହିଁ ରୋଗୀର ।

୨୦୮୧୨. ନିଧିମା ତାଳରେ ଝିଙ୍ଗା (=ଚହ୍ଣା)
ବୋହୂକୁ ମାରି ବଜାଏ ଶିଙ୍ଗା ।

୨୦୮୧୩. ନିମ୍ବତଳ ଦେଇ ଯାଅ ନାହିଁ, ନିମ୍ବଫଳ କି ଖାଅ ନାହିଁ ।

୨୦୮୧୪. ନିମ୍ବ ପିତା, ଗହମା (=ନିମ୍ବଭଳି କ୍ଷୁଦ୍ରବୃକ୍ଷ) ପିତା, ପିତା କଣ୍ଟାପଦ୍ମର ଫଳ ।

୨୦୮୧୫. ନି ବଗାଳର ଖୋଦା ବଗାଳ ।
(ଅନାଥର ନାଥ ଶ୍ରୀଜଗନ୍ନାଥଙ୍କ ଭଳି ଗୋରୁ ଗୋଠରେ ବଗାଳ ନଥିଲେ, ଈଶ୍ୱରହିଁ ଏକମାତ୍ର ବଗାଳ ହୋଇ ଦେଖାଶୁଣା କରିଥାଆନ୍ତି ।)

୨୦୮୧୬. ନିର୍ଗୁଣ ଅଦାର ତିନିଗୁଣ ରାଗ ।

୨୦୮୧୭. ନିର୍ଗୁଣ ପୁରୁଷର ତିନିଗୁଣ ବିକ୍ରମ ।

୨୦୮୧୮. ନିର୍ଦ୍ଧନର ଧନ ହେଲେ ଦିନରେ ଦେଖେ ତାରା ।

୨୦୮୧୯. ନିର୍ବାଣ ଦାପେ କିଛି ତୈଳ ଦାନ୍, ଚୌର ଗତେ ବା କିମ୍ଭୂ ସାବଧାନଂ ।

୨୦୮୨୦. ନୀଚ ଯଦି ଉଚଭାଷେ, ସୁବୁଦ୍ଧି ଉଡ଼ାଏ ହସେ ।

୨୦୮୨୧. ନୀଚ ଲୋକର କଥା କଇଁଛର ମଥା ।

୨୦୮୨୨. ନିରୋଗ ଶରୀରେ, ବୈଦ୍ୟର ଭୟ କ'ଣ?

୨୦୮୨୩. ନୂଆ ନୂଆ ତେନ୍ତୁଳି ମଞ୍ଜି, ପୁରୁଣା ହେଲେ ତାଳରେ ଗୁଞ୍ଜି ।

୨୦୮୨୪. ନୂଆରାଜାର ନୂଆ ବିଚାର ।

୨୦୮୨୫. ନୂଆ ଯୋଗୀର ଭିକ୍ଷା କି?

୨୦୮୨୬. ନେଙ୍ଗଟା ଗଳାରେ ମୋତିର ମାଳ ।

୨୦୮୨୭. ନେଙ୍ଗଟି ମୂଷା (=ଚୁଟିଆ) ପାହାଡ଼ କାଟେ ।

୨୦୮୨୮. ନଣ୍ଡା ମୁଣ୍ଡକୁ ଖୁଣ୍ଟାର ଭୟ ।

୨୦୮୨୯. ନିଶାରେ ଛାତି ଫାଟେ, କୁକୁର ମୁହଁ ଚାଟେ ।

୨୦୮୩୦. ନେଙ୍କା, ବଙ୍କା, ଟଳ-ଟଳ, କଛା, ତିନିଜଣ ପ୍ରତ୍ୟୟ କରନାହିଁ ବାଛା ।

୨୦୮୩୧. ନ ସହେ ଧୂଆଁ ଯାହାକୁ, ସେ ନୁହଁଇ କମାର କୁଳକୁ ।

୨୦୮୩୨. ନଦୀ କୂଳରେ କୂଅ ଖୋଳିବା ।

୨୦୮୩୩. ନଅର -ଘର ବନାନ୍ତି ଅଜ୍ଞଗଣ, କ୍ରୟ କରନ୍ତି ବିଜ୍ଞଜନ ।

୨୦୮୩୪. ନଙ୍ଗର ଭଳି ସମୁଦ୍ରରେ ବାସ,
ପହଁରା ସଙ୍ଗରେ ତା'ର ନାହିଁ ଅବକାଶ ।

୨୦୮୩୫. ନଷ୍ଟ ନାରୀ ଯାହାର, ଧରାରେ ନର୍କ ତାର ।

୨୦୮୩୬. ନ ଖସଡ଼ିଲେ ସୁନ୍ଦର ପାଦ ହୁଏ ନାହିଁ । (ଠକିକି ଶିଖିବା ।)

୨୦୮୩୭. ନୂଆ ଲୁଗା ନ ପାଇଲେ ପୁରୁଣା ଲୁଗା ଛାଡ଼ନା ।

୨୦୮୩୮. ନଡ଼ନଡ଼ ପୋତା ଗଛର ତେଜ ହୁଏ ନାହିଁ ।

୨୦୮୩୯. ନଷ୍ଟ ନାରୀ ଶଇତାନର ପୁଷ୍ପଗୁଚ୍ଛ ।

୨୦୮୪୦. ନଦୀର ଜଳ ପ୍ରଦାନ । (ସମୁଦ୍ରରେ ପାଦ୍ୟାଅର୍ଘ୍ୟ)

୨୦୮୪୧. ନଷ୍ଟ ଲୋକକୁ ଫାଶୀ କାଠରୁ ଉତ୍ଲେଇଲେ,
ସେ ତୁମକୁ ଟଙ୍ଗେଇ ଦେବ ।

୨୦୮୪୨. ନ ଶୁଙ୍ଘାଶୁଙ୍ଘି କରି କୁକୁରବି, କୁକୁର ପାଖକୁ ଆଗାଏ ନାହିଁ ।
(ପରିଚୟ ନ ପାଇ ଆଗନ୍ତୁକଙ୍କ ସଙ୍ଗରେ ଆଳାପ ଅକର୍ତ୍ତବ୍ୟ ।)

୨୦୮୪୩. ନଦୀ ଧୋଇ ଦେଲେ ମଇଲା ଜଳ କହି ନିନ୍ଦା କରିବା ।

୨୦୮୪୪. ନକଲ ବିଦ୍ୟାରେ ଅକଲ ନଷ୍ଟ ।

୨୦୮୪୫. ନଦୀର ଶୋଭା ବନ୍ୟା ବରଷା,
ବଗିଚା ଶୋଭା ଫଳ
ବ୍ରାହ୍ମଣର ଶୋଭା ପଇତା ଗୋଛା,
ନାରୀର ଶୋଭା ବାଳ ।

୨୦୮୪୬. ନଣଦ ମଲା ଭଲ ହେଲା, ପେଟରେ ଭାତ ଶାନ୍ତି ପାଇଲା ।

୨୦୮୪୭. ନଣନ୍ଦିନୀ ପ୍ରେମବାଦିନୀ, ଜଳେଇ ହରିଲା ଦିନରଜନୀ ।

୨୦୮୪୮. ନରମରେ ଧରମ ମାରେ, ଦୁର୍ଦ୍ଦାନ୍ତକୁ ଗ୍ରାମଦେବତୀ ଡରେ ।

୨୦୮୪୯. ନଷ୍ଟ ହେଲା ଜମି ଖଣ୍ଡ, ମଝିରେ ହେଲା ବାଟ ।
ନଷ୍ଟ ହେଲା ନୂଆବୋହୂ, ନିତି କରେ ହାଟ ।

୨୦୮୫୦. ନାରୀର ରୂପ, ବଣର ପ୍ରତିଧ୍ୱନି ଆଉ ଇନ୍ଦ୍ରଧନୁ ଶିଘ୍ର ଉଭେଇ ଯାଏ ।

୨୦୮୫୧. ନାରୀର ବଳ ଆର୍ତ୍ତନାଦ,
ଚୋରର ବଳ ମିଥ୍ୟାବାଦ ।

୨୦୮୫୨. ନାଚି ନଜାଣି ନାଚୁଣୀ କହେ ଅଗଣା ବଙ୍କା ।

୨୦୮୫୩. ନାକ ବାଳ ଛିଣ୍ଡାଇଲେ କି କେବେ, ଶରୀରର ଭାର ଲାଘବ ହୁଏ ?

୨୦୮୫୪. ନାରୀମାନଙ୍କର ଏକ ସପ୍ତାହରେ ସାତ ଶୁକ୍ରବାର ।

୨୦୮୫୫. ନାରୀର ଆବଦାର ମେଣ୍ଟେଇବା ପାଇଁ,
ସେ ପୁରୁଷ ଏବେବି ଜନ୍ମ ହୋଇ ନାହିଁ ।

୨୦୮୫୬. ନାରୀର ବାକ୍ୟ ଶିରିଶ ଅଠା ।

୨୦୮୫୭. ନାରୀ ହୀନ ନୁହେଁ, ଜଳହୀନ ହଂସ ।

୨୦୮୫୮. ନାପିତ (ଭଣ୍ଡାରି) ର ବିବାହରେ ବରଯାତ୍ରୀ ମାତ୍ର ହିଁ ବରକର୍ତ୍ତା ।

୨୦୮୫୯. ନାହିଁ ଫକୀରର ଘର ବାଡ଼ି, କାମ ଦାମ ନାହିଁ ।
ଯେଉଁ ଘରେ ଯାଏ ଫକୀର, ସେଇ ଘରର ଜ୍ବାଇଁ ।

୨୦୮୬୦. ନାଉରିଆର ଏକ ନାଆ, ନି-ନାଉରିଆର ଶହେ ନାଆ ।

୨୦୮୬୧. ନା ବାଛୁରୀର ପେଟରେ, ନା ଦୁହାଁଳିର ଭାଣ୍ଡରେ ।

୨୦୮୬୨. ନିଜେ ଗଧ ହୋଇ ଯେ ଆପଣାକୁ ହରିଣ ଭାବେ,
ସେ ନାଚ ଦେଖିଲା ବେଳେ ଆପଣା ଭ୍ରମର ଟେର ପାଏ ।

୨୦୮୬୩. ନିରାପଦେ ଯଦି ଇଚ୍ଛା ସଂସାର ଯାପନ,
ଶିଖିବାର ହେଉ ତୁମର ନୟନ ।
ଅନାୟାସେ ପରିତ୍ରାଣ ଲଭ ଜନଗଣ ।
ଗର୍ଦ୍ଦଭର ସମ କର୍ଣ୍ଣ (ଶ୍ରବଣଶୀଳ), ଅତି କଠିଣ ମୁଣ୍ଡ ।
ଓଟର ସମାନ ସ୍କନ୍ଧ, ଶୁକରର ତୁଣ୍ଡ ।
ହରିଣର ସମ ରଖ ଯୁଗଳ ଚରଣ ।

୨୦୮୬୪. ନିତାନ୍ତ କୋମଳ ହୃଦୟା ଜନନୀ ।

୨୦୮୬୫. ନିକମା ଭଣ୍ଡାରୀ ବିରାଡ଼ିକୁ ଧରି ଖିଅର କରେ ।

୨୦୮୬୬. ନିର୍ବୋଧ ଆଉ କୁମ୍ଭୀର ଆପଣାର ମୁଠା ଛାଡନ୍ତି ନାହିଁ ।

୨୦୮୬୭. ନିଷ୍କର୍ମା ଚଷାର ୫୮ ଟି ଦାଆ ।

୨୦୮୬୮. ନିଷ୍ପାପ ଆତ୍ମାକୁ ଧାସା କହନ୍ତି ।

୨୦୮୬୯. ନିଜ ନାରୀ ନୁହେଁ କେଭେ କୋତାର ସୋପାନ ।
ବାରମ୍ବାର ଆକର୍ଷଣ ଆଉ ବିସର୍ଜ୍ଜନ ।

୨୦୮୭୦. ନିର୍ବୋଧର ପ୍ରତି ଯଦି ଦୈତଭାବ ରଖ ।
ତେବେ ତା'ର ପଛେପଛେ ତୁମେ ଯାଅ ।
୨୦୮୭୧. ନିର୍ଦ୍ଦୋଷ ଯେଉଁ ଜନ ଚାହେଁ,
ପଦ ବୃକ୍ଷରେ ଖର୍ଚ୍ଚରେ ସେ ଜନ ଯାଏ ।
୨୦୮୭୨. ନିକଉଡ଼ିଆ ଗଲା ହାଟ, ହାଟ ଦେଖି ଗାଣ୍ଡି ଫାଟ ।
୨୦୮୭୩. ନିଜ ବେଳକୁ କାହାଣପଣ, ପରବେଳକୁ କମ କମ ।
୨୦୮୭୪. ନିଜର ଧନ ପରକୁ ଦେଇ,
ବୈରାଗୀ ନାଚେ କାତୁଆ (= ଆତୁ) ଧରି ।
୨୦୮୭୫. ନିଜ ପୁଅକୁ ଯେତେ ମାରେ, ସେତେ ଡାକେ ମା',
ପର ପୁଅକୁ ଯେତେ ଖବାଏ କିଛି କହେ ନା ।
୨୦୮୭୬. ନିଜ ବୁଦ୍ଧିରେ ତରି, ପର ବୁଦ୍ଧିରେ ମରି ।
୨୦୮୭୭. ନିଜ ହାତରେ ଘଡ଼ି, ସମୟ କେତେ ପଚାରି ।
୨୦୮୭୮. ନିମକହାରାମ ମୀରଜାଫର, ପାଦ ତଳେ ପଡ଼ି ମର ।
୨୦୮୭୯. ନିଜେ ମୋଡ଼େ ନିଜ କାନ,
ଏଇ ଶଳାର ନାହିଁ କୁଳ ମାନ ।
୨୦୮୮୦. ନିଜ କାମରେ ବଢ଼େ ଚାପ, ପର କାମରେ ମନର ଭାର ।
୨୦୮୮୧. ନିଶ୍ଚିତ ଛାଡ଼ି ଯେ ଅନିଶ୍ଚିତକୁ ଯାଏ,
ଏକୂଳ ସେକୂଳ ଦିକୂଳ ହରାଏ ।
୨୦୮୮୨. ନିଶା ଖାଇଲେ ଦିଶା ବଢ଼େ, ସିଦ୍ଧି (=ଭାଙ୍ଗ) ଖାଇଲେ ବୁଦ୍ଧି ବଢ଼େ ।
୨୦୮୮୩. ନୀଚ ଲୋକର ଉଞ୍ଚା କଥା ପ୍ରାଣ ନାହିଁ ସହେ,
କେହି ଦେଖିଛି ଘୋଡ଼ା ପେଟରୁ ଡିମ୍ବ ବାହାରେ ।
୨୦୮୮୪. ନୂଆ ବୋହୂ ରାନ୍ଧୁଛି ପତୁଆ ହାରା ବଟା ଦେଇ
ବାସ୍ନା ଯାଏ ଆମ ଲାଲ ବଜାର ତେଇଁ ।
୨୦୮୮୫. ନେବା ଚକ୍ଷୁରେ ସମସ୍ତଙ୍କର ହରିଦ୍ରା ବର୍ଣ୍ଣ ।
୨୦୮୮୬. ନେଙ୍ଗଟି ପିନ୍ଧିଲା ବେଳେ ବି ଜୟ ଢାକ-ଢୋଲ ବଜାଇବା ?
୨୦୮୮୭. ନେଙ୍ଗଟିର ଦୈରାତ୍ମ୍ୟ ଘରେ ନିଆଁ ଦେବା । ନ୍ୟାୟ ।
୨୦୮୮୮. ନେକେଡା (ବାଘ)କୁ ନିମନ୍ତଣ ପାଇଁ ଛାଗଳ ଅନାଗତ ।

୨୦୮୮୯. ନେଙ୍କେଡାକୁ ଯେତେ ଖୁଆଅ ସେ ବଣ ଆଡକୁ ଚାହୁଁଥିବ ।

୨୦୮୯୦. ନେଙ୍କେଡା ମଧ୍ୟରେ ମେଳ ଥିଲେ, କୁକୁରର ଲୋପାପଡ଼ି ।

୨୦୮୯୧. ନେଙ୍କେଡାଙ୍କ ସାଙ୍ଗରେ ରହିବାକୁ ହେଲେ,
ନେଙ୍କେଡା ଭଳି ଚିତ୍କାର କର (= ବୋବାଅ) ।

୨୦୮୯୨. ନେଙ୍କେଡ଼ା ଜନ୍ମ ହୋଇ କେବେ ହେଁ ଖେଙ୍କିଶିଆଳ ହୁଏନାହିଁ ।

୨୦୮୯୩. ନେଙ୍କେଡା ହାତରୁ ପଳେଇ ଯାଇ, ଭାଲୁ ଥାବାରେ ପଡ଼ିବା ।

୨୦୮୯୪. ନେଙ୍କେଡ଼ାକୁ ପଚାର କେଉଁ ସମୟରେ ଖୁବ୍ ଥଣ୍ଡା ।
ସେ କହିବ ସୂର୍ଯ୍ୟୋଦୟ ସମୟରେ ।
(ଏହି ସମୟରେ ଗ୍ରାମ ମଧ୍ୟକୁ ତା'ର ପ୍ରବେଶ କରିବାର ସାଧ୍ୟ ଥାଏ ନାହିଁ । )

୨୦୮୯୫. ନେଙ୍କେଡ଼ା କହେ– 'ତୁମର ମିଠା କଥା, କିନ୍ତୁ ମୁଁ ଗାଁ ଭିତରକୁ ଯିବି ନାହିଁ ।'

୨୦୮୯୬. ନଣ୍ଡା ମୁଣ୍ଡର ଝଙ୍କାର ଡର ।

୨୦୮୯୭. ନାରୀ ଦୋଷରେ ପୁରୁଷ ନଷ୍ଟ, ସଂସାର ନାଶ ହୁଏ ।
ରାଜା ଦୋଷରେ ରାଜ୍ୟ ନଷ୍ଟ, ପ୍ରଜା କଷ୍ଟ ପାଏ ।

୨୦୮୯୮. ନାହିଁର ଘରେ ଖାଇର ବସା ।

୨୦୮୯୯. ନାଟର କୌଶଳ ପଗଡ଼ି ଚିହ୍ନାଏ,
ଧୂର୍ତ୍ତକୁ ବଡାସର କୋପ ଡରାଏ ।

୨୦୯୦୦. ନ ଦେଖିବୁ ଜାତି, ଜଳୁଥାଉ ବତି ।

୨୦୯୦୧. ନା ବେଇଲା ମା, ନା ବେଇଲା ଝି,
ରାଗ ଖାଇ ମଲେ ପଡ଼ା ପଡ଼ୋଶୀ ।

୨୦୯୦୨. ନମାଜ ରୋଜାର ଲେଶ ନାହିଁ, ମକ୍କା ଯିବାକୁ ଧଡ଼ପଡ଼ାଏ ।

୨୦୯୦୩. ନାଁ ରହେମ ବାଁଶ (ବାଉଁଶ) ନା ବାଜେ ବାଁଶରୀ ।

୨୦୯୦୪. ନାରୀ ଚିହ୍ନ ହସେଇ, କଳସୀ ଚିହ୍ନ ଭସେଇ ।

୨୦୯୦୫. ନାରୀର ଯଉବନ, ନୟନର ପାଣି ।

୨୦୯୦୬. ନଳାରେ ନଳାରେ ପାଣି ଯାଏ, ଛିଦ୍ର ମାରେ ତାଳି ।

୨୦୯୦୭. ନ ବେଇଲା ନାରୀର ଏକ ଦୋଷ ।
ବେଇଲା ନାରୀର ଶତେକ ଦୋଷ ।

୨୦୯୦୮. ନଦୀର ଚିକଣ (=ସୌନ୍ଦର୍ଯ୍ୟ) ବନ୍ୟା ବରଷଣ,
ବାଳିର ଚିକଣ ବାଆ,
ନାରୀର ଚିକଣ ସ୍ୱାମୀ ପରିଜନ,
ଛୁଆର ଚିକଣ ମାଆ ।

୨୦୯୦୯. ନଥିଲା ଘର ମାଇପର ଶୋକ ବେଶୀ ।

୨୦୯୧୦. ନୁଣ ଆଣିବାର ଦମ୍ ନାହିଁ, ବୋହୂ କେଶ ବିନ୍ୟାସ କରୁଛି ।

୨୦୯୧୧. ନୂଆ ନୂଆ ଢଙ୍ଗ,
ଦି'ଚାରି ପୃଷ୍ଠା ଇଂରେଜୀ ପଢ଼ି,
ମଦନା ହେଲା ଜବର ଜଙ୍ଗ ।

୨୦୯୧୨. ନିଜର କଛା ଫିଟି ଦୋହଲୁ ଥାଏ,
ପରର କଟୁକ୍ତିରେ ରଙ୍ଗ ଲଗାଏ ।

୨୦୯୧୩. ନିଜ ଛୁଆକୁ ତୁହ୍ଲେଇ, ପର ଛୁଆକୁ ଖୁଆଏ ।

୨୦୯୧୪. ନିଜର ଦୁଃଖ ସହି ନପାରେ, ପରର ଦୁଃଖ ସହିପାରେ ।

୨୦୯୧୫. ନିଜ ଜମିକୁ ବିହନ ନାହିଁ, ପର ଚକ କାଟି ବଢ଼ାଏ ଭୂଇଁ ।

୨୦୯୧୬. ନିଃସନ୍ତାନର ଝିଅ ଗୁଣ-ଗ୍ରାମର କି ?
ନିଜେ ସେ ନମଲେ ସରଗ ଦେଖିବ କି ?

୨୦୯୧୭. ନିଜ ଆଡ଼କୁ ଚାହାଁ, ଲୋ ଖେନ୍ଦି,
ପରକୁ କିଆଁ କହୁ ପେଚା ପେନ୍ଦି ?

୨୦୯୧୮. ନା ଖୁଆଇଲା ଭାତ ଡାଲି, ନା ଖୁଆଇଲା ଶାଗ,
ଶାଳୀ ବୋଲି ଗାଳି ଦେଲା, ଏହାହିଁ ପାଞ୍ଚ ଲାଖ ।

୨୦୯୧୯. ନାକ ଫୋଡ଼ା ଶ୍ୟାମ ଗୋସାଇଁ, ନଗଦ ଛଡ଼ା ଧାର ନାହିଁ

୨୦୯୨୦. ନାରୀ ଦୋଷରେ ପୁରୁଷ ନଷ୍ଟ, ସଂସାର ନାଶ ହୁଏ
ରାଜା ଦୋଷରେ ରାଜ୍ୟ ନଷ୍ଟ, ପ୍ରଜା କଷ୍ଟ ପାଏ ।

୨୦୯୨୧. ନାହିଁର ଘରେ ଖାଇର ବସା ।

୨୦୯୨୨. ନାଗର (=ଲମ୍ପଟ ବ୍ୟକ୍ତି) ଧନା ଚାଇଁ (=ଠକାମି)
ତିନ ଛଡ଼ା ଉଦଳା ନାହିଁ

୨୦୯୨୩. ନାହିଁ ଦିଶ (=ଦିଗ), ଖାଏ ଗରଳ ବିଷ ।

୨୦୯୨୪. ନାଠା (=ପିତୃ ସନ୍ତାନହୀନ)ର ନାହିଁ ଗରବ
ଦୋକାନର ନାହିଁ ପରବ ।

୨୦୯୨୫. ନାପିତ ହେଲେ କବିରାଜ, ବାଳ କାଟିବ କିଏ ?

୨୦୯୨୬. ନାରୀ ନ କରନ୍ତି କି କାଣ୍ଡ, ରକତରେ ବାନ୍ଧନ୍ତି ମୁଣ୍ଡ ।
(ମହାଭାରତରେ ଦ୍ରୌପଦୀଙ୍କ ବସ୍ତ୍ରହରଣ ବେଳେ ପ୍ରତିଜ୍ଞା କରିଥିଲେ ଦୁଃଶାସନର ରକ୍ତରେ କେଶ ଧୋଇ ବାନ୍ଧିବା ପର୍ଯ୍ୟନ୍ତ ମୁକୁଳା ରଖିବେ । ଭୀମ ଦୁଃଶାସନର ଉରୁକୁ ଗଦାରେ ପ୍ରହାର କରି ନିର୍ଗତ ରକ୍ତ ଆଣି ଦେବାରୁ ଦ୍ରୌପଦୀ କେଶବନ୍ଧନ କରିଥିଲେ ।)

୨୦୯୨୭. ନମୋ ନମସ୍ତେ ଯୋଗେଶ୍ୱର ।    ମୋର ଅପ୍ରାଧ କ୍ଷମାକର ॥
ନମୋ ନମସ୍ତେ ଦେବସ୍ୱାମୀ ।    ନମୋ ନମସ୍ତେ ଅନ୍ତର୍ଯ୍ୟାମୀ ॥
ନମୋ ନମସ୍ତେ ଭକ୍ତବନ୍ଧୁ ।    ନମୋ ନମସ୍ତେ କୃପାସିନ୍ଧୁ ॥
ନମୋ ନମସ୍ତେ ହେ ଜୀବନ ।    ନମୋ ନମସ୍ତେ ହେ ପରମ ॥
ନମୋ ନମସ୍ତେ ନାରାୟଣ ।    ନମୋ ନମସ୍ତେ ଭଗବାନ ॥
ନମୋ ନମସ୍ତେ ପରଂବ୍ରହ୍ମ ।    ମହାଶୂନ୍ୟ ଯେ ତୋ ଆଶ୍ରମ ॥
ନମୋ ନମସ୍ତେ ଦଇତ୍ୟାରି ।    ନମୋ ନମସ୍ତେ ନରହରି ॥
ନମୋ ନମସ୍ତେ ହେ ରାଘବ ।    ନମୋ ନମସ୍ତେ ହେ ମାଧବ ॥
ନମୋ ନମସ୍ତେ ଦାଶରଥି ।    ନମୋ ନମସ୍ତେ ଜୀବପତି ॥
ନମୋ ନମସ୍ତେ ହର୍ତ୍ତାକର୍ତ୍ତା ।    ନମୋ ନମସ୍ତେ ମୋକ୍ଷଦାତା ॥
ନମୋ ନମସ୍ତେ ହେ ମୁକୁନ୍ଦ ।    ନମୋ ନମସ୍ତେ ରାମଚନ୍ଦ୍ର ॥
ନମୋ ନମସ୍ତେ ବିଘ୍ନହର ।    ନମୋ ନମସ୍ତେ ବେଦବର ॥
ନମୋ ନମସ୍ତେ ଗୋବର୍ଦ୍ଧନ ।    ନମୋ ନମସ୍ତେ ଘନଶ୍ୟାମ ॥
ନମୋ ନମସ୍ତେ ଦାମୋଦର ।    ନମୋ ନମସ୍ତେ ପୀତାମ୍ବର ॥
ନମୋ ନମସ୍ତେ ଚିନ୍ତାମଣି ।    ନମୋ ନମସ୍ତେ ଚକ୍ରପାଣି ॥
ନମୋ ନମସ୍ତେ ନିରଞ୍ଜନ ।    ନମୋ ନମସ୍ତେ କଳ୍ପଦ୍ରୁମ ॥
ନମୋ ନମସ୍ତେ ବିଶ୍ୱଗୁରୁ ।    ନମୋ ନମସ୍ତେ କଳ୍ପତରୁ ॥
ନମୋ ନମସ୍ତେ ବାଞ୍ଛାନିଧି ।    ମୋ ବାଞ୍ଛା କର ହେ ପ୍ରସିଦ୍ଧି ॥
ନମୋ ନମସ୍ତେ ମହାପ୍ରଭୁ ।    ଏ ଦେହ କିମ୍ପାଇଁ ରଖିବୁ ॥
ଏ ଦେହ ଯେବେତୁ ରଖିବୁ ।    ଭକତି ଯୋଗମାର୍ଗେ ଦେବୁ ॥

(ଅରକ୍ଷିତ ଦାସ)

୨୦୯୨୮. ନଥାଇ ଯହିଁରେ ପବନ । ନାହାଁନ୍ତି ପଞ୍ଚଭୂତ ପୁଣ ॥
ଚନ୍ଦ୍ର ସୂର୍ଯ୍ୟଙ୍କ ଗତି ନାହିଁ । ଗୁରୁ କହିଲେ ତାହା ପାଇଁ ॥
ସେଠାରୁ ଶୁଣି ଯେ ନିଗମ । ଜନ୍ମ ହୋଇଲେ ପରଂବ୍ରହ୍ମ ॥
ବିନ୍ଦୁରେ ଅର୍ଦ୍ଧମାତ୍ରା ରହି । ତହିଁରୁ ଜନ୍ମ ପ୍ରାଣ ବହି ॥
ପ୍ରଣବ ଓଁକାରରୁ କହି । ଏକାକ୍ଷର ଯେ ତହିଁ ରହି ॥
(ବଳରାମ ଦାସ)

୨୦୯୨୯. ନାରାୟଣ ନାରାୟଣ ଜୟ ଗୋବିନ୍ଦ ହରେ
ନାରାୟଣ ନାରାୟଣ ଜୟ ଗୋପାଳ ହରେ ।

୨୦୯୩୦. ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ
ବଳଭଦ୍ର ସୁଭଦ୍ରାଭ୍ୟାଂ ଜଗନ୍ନାଥାୟ ତେ ନମଃ ।
(ନୀଳାଚଳବାସୀ ଶାଶ୍ବତ ପରମାତ୍ମା ଶ୍ରୀ ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କୁ ନମସ୍କାର ।)

୨୦୯୩୧. ନ ଗଚ୍ଛେତାଂ ପିତାପୁତ୍ରୌ ନ ଗଚ୍ଛେତ୍ ସୋହଦରଦ୍ବୟମ୍
ନବ ନାର୍ଯ୍ୟୋ ନ ଗଚ୍ଛେୟୁର୍ନଗଚ୍ଛେତ୍ ବ୍ରାହ୍ମଣତ୍ରୟମ୍ ॥
(ସ୍ଥଳ ଓ କାଳ ବିଶେଷରେ ଏକତ୍ର ପିତାପୁତ୍ର, ଦୁଇ ସହୋଦର ଭାଇ, ନଅଜଣ ସ୍ତ୍ରୀ ଓ ତିନିଜଣ ବ୍ରାହ୍ମଣ ଯାତ୍ରା କରିବା ଅନୁଚିତ ।)

୨୦୯୩୨. ନାନ୍ନୋଦକସମଂ ଦାନଂ ନତିଥିର୍ଦ୍ୱାଦଶୀ ସମା
ନ ଗାୟତ୍ର୍ୟାଃ ପରୋ ମନ୍ତ୍ରଃ ନ ମାତୁଃ ପରଦୈବତାମ୍ ॥
(ଜଳ ଓ ଅନ୍ନଦାନ ସଦୃଶ ଦାନ ନାହିଁ । ଦ୍ୱାଦଶୀ ସଦୃଶ ତିଥି, ଗାୟତ୍ରୀ ମନ୍ତ୍ର ଅପେକ୍ଷା ଉତ୍କୃଷ୍ଟ ମନ୍ତ୍ର ଓ ମାତାଠାରୁ ବଳି ଉତ୍କୃଷ୍ଟ ଦେବତା ନାହାନ୍ତି ।)

୨୦୯୩୩. ନିର୍ଲ୍ଲଜ ଘରକୁ ଅଇଜା ଯାଉଛି
ତାକୁ ନ ମାଡ଼ଇ ଲାଜ ।
ବେହେରା ନାହିଁକି ପାଳିଙ୍କି ନାହିଁ ଲୋ
ବର ତ ହେଲାଣି ସଜ ।

୨୦୯୩୪. ନିତି ଦେଖୁ ପରା କଦମ୍ବ ମୂଳରେ
ଆଜି ତ ଦେଖୁନୁ ଦାଣ୍ଡେ ।
ମୋହନ ମନ୍ତର ବଂଶୀରେ ରଖିଛି
କଳା ହୋଇ ଚୋକା ଖଣ୍ଡେ ।

୨୦୯୩୫. ନଈ ସେପାରିରେ ନାଉରିଆ ଭାଇ
ଡାକ ପକାଉଛି କିଏ ।
ବଡ଼ ବୋହୂ ମୋର ବଡ଼ ସୁହାଗୀ ଲୋ
ଟୋପାଏ ମନ୍ଦାଏ ଦିଏ ।

୨୦୯୩୬. ନୀଚ ଲୋକ ଯେବେ ଉଚ୍ଚ କଥା କହେ
ସମସ୍ତେ କରନ୍ତି ଟାହି ।
ହଳ କଲା ବିଲ ଆବୁଡ଼ା ଖାବୁଡ଼ା
ସମାନ କରଇ ମଇ ।

୨୦୯୩୭. ନଈପାଣି ଗଲା ନଈର ଧାରେ ଲୋ
କୁଅଁପାଣି ମୁଁ ପାଇବି ।
ଦୀପ ଜଳୁଥିବ ପୁଅ ଖେଳୁଥିବ
ଭଗାରି ଗୁଣ କହିବି ।



## ଢମାଳି (କୋବାବାଡ଼ିଆ)

୨୦୯୩୮. ନଈକି ପିଙ୍ଗିଳି ମୁଆଁରେ,
ନଈକି ପିଙ୍ଗିଳି ମୁଆଁ
ଦଶପଲା ରାଜା ମାଙ୍କଡ଼ମୁହାଁ,
ନିଶରେ ଲାଗିଛି ନିଆଁ ରେ ।

୨୦୯୩୯. ନଈକି ମାଠିଆ ଗଡ୍ଡୁରେ,
ନଈକି ମାଠିଆ ଗଡ୍ଡୁ
କାନପୁର ଲୁଗା ପିତଳ ଖଡ୍ଡୁ,
ରଜା ଦରବାରେ ପଡ୍ଡୁରେ ।
ନଈରେ ନାଆ ଯାଉଛି ରେ,
ନଈରେ ନାଆ ଯାଉଛି
ବାରହାତି ଲୁଗା କମ ପଡ଼ିଛି,
କଥାରୁ ଜଣା ଯାଉଛି ରେ ।
ନଈ ପହରିଆ ଜୋକ ରେ,
ନଈ ପହରିଆ ଜୋକ
କାନର ପଗଡ଼ି ଝକମକ,
ଖଦି ଲୁଗା ବଡ଼ ସୁଖ ରେ ।
ନଈରେ କୋଚିଆ ଗାତ ରେ,
ନଈରେ କୋଚିଆ ଗାତ
ବଡ଼ବୋହୂ ଦେଲା ପଖାଳଭାତ,
ମାରିନେଲା ସନିପାତ ରେ ।
ନଈରେ କି ମାଛ ମଲା ରେ,
ନଈରେ କି ମାଛ ମଲା
କାପ ହଲେଇକି କିମ୍ବାର ନେଲା,
ଠିଆ ଡହ୍ନ ପଡ଼ିଥିଲା ।
ନଈକି ପିଙ୍ଗିଳି ଗିଲରେ,
ନଈକି ପିଙ୍ଗିଳି ଗିଲ

ନଈ ଚାରିପାଖେ ମନ୍ଦାର ଫୁଲ,
ବୁଢ଼ୀକି ଝିଙ୍କିଲା ଚିଲ ରେ ।
ନଈ ପାଣି ହୁକୁହୁକୁ ରେ,
ନଈ ପାଣି ହୁକୁହୁକୁ
କିଏ ନେଇଗଲା ଜାଇଫୁଲକୁ
ତଳ ଦିଗ ରାଇଜକୁ ରେ ।
ନାଆମଙ୍ଗ ପାଣି କେତେ ରେ,
ନାଆମଙ୍ଗ ପାଣି କେତେ
ନାଆମଙ୍ଗ ପାଣି ଅକାତ କାତେ,
ବୁଡ଼ାଇ ମାରିବି ତୋତେ ରେ ।

## ଢମାଳି (କୁମ୍ଭାମାଡ଼)

୨୦୯୪୦. ନଈପାଣି ହୁକୁହୁକୁ
ଜାଇଫୁଲ ନଈପାଣି ହୁକୁହୁକୁ
ଅଇଲା କାଳିଆ ଧଇଲା ବୁକୁ
ମୋ ଛାତି କଲା ଦୁକୁଦୁକୁ
ଲୋ ଖରା ମଉଳ ବେଳେ,
ରଥ ଦଉଡ଼ି ପଡ଼ିଛି ତଳେ,
ମୋ ଖରା ମଉଳ ବେଳେ ।
୨୦୯୪୧. ନଈରେ ନାଆ ନାଉରୀ ରେ
ନଈରେ ନାଆ ନାଉରୀ
ତୋ ମନେ ଅଛି କି ମୋ ମନେ ଅଛି
ମୋ ଚାକୁଣ୍ଡା ବଣ ଧାଉଁରି ଲୋ
ନ ଯା' ଲବଙ୍ଗଲତା,
ଫେରି ଆସିଲେ,
ଫେରି ଆସିଲେ କଥା ବାରତା ଲୋ
ନ ଯା'ଲବଙ୍ଗଲତା ।

## ୨୦୯୪୨. ନାରୀ ବିହିଁଙ୍କର ଢମାଳୀରେ ପ୍ରଶ୍ନ-ଉତ୍ତର

ପ୍ରଶ୍ନ - ଅହି ମସ୍ତକରେ ବସିଛି ହରି ,
ସୈନ୍ୟ ଘିରି ହେଲା ବିଧବା ନାରୀ,
କହିଦେବ ଏହା ଭାବି ।
ତେବେଟି ତୁମ୍ଭର ବଚନ ପାଳିଣ
ଦାସୀ ପରି ପାଶେ ଥିବି ।

ଉତ୍ତର - ନନ୍ଦୀବୃଦ୍ଧି ହୋଇ ସର୍ପ ଭାସୁଥିଲା,
ତାପରେ 'ମଣ୍ଡକୀ' ଯାଇ ବସିଲା,
ବିଧବା ହୋଇଲା 'ତାରା' ।
ବାଳୀ ମରିଥିଲା ସୁଗ୍ରୀବେ ବରିଲା
ଶୁଣ ସେ ବଚନ ସାରା ।

ପ୍ରଶ୍ନ - ଅଟିହିଁ କଠିଣ ପୁଣି ଯୁଗଳ ଶରୀର
ସ୍ତ୍ରୀ, ପୁରୁଷ ଭାବେ ରହିଥାଏ ନିରନ୍ତର ।
ନାରୀମାନେ ତାହାକୁ ହେ ବେଭାର କରନ୍ତି,
ସେ ଯୁଗଳ ମୂର୍ତ୍ତି ବିଷ୍ଣା ସମସ୍ତେ ଭକ୍ଷନ୍ତି ।
ଏମନ୍ତ ସେ କେ ଅଟଇ କହିଦିଅ ତୁହି,
ତୋ ପରିଚାରିକା ରୂପେ ରହିଥିବି ମୁହିଁ ।

ଉତ୍ତର - ଜଣା ପଡ଼ିଗଲା ତୋର କଥାର ମରମ,
ଯା କହିଲୁ ତୁଟିଲା ମୋ ମନର ଭରମ ।
'ଚକି' ବୋଲି ନାମ ତାର କହିଦେଲି ମୁହିଁ,
ନିଃସନ୍ଦେହରେ ଏବେ ବୁଝୁଥାଅ ତୁହି ।

ମୁଣ୍ଡ - ମୁଣ୍ଡ ନାହିଁ ପୁଣି ତାର ହାତ ଗୋଡ଼ କଟା,
ମନୁଷ୍ୟଙ୍କୁ ଗିଳିବାକୁ କରେ ନାନାଛଟା
ସ୍ତ୍ରୀ, ପୁରୁଷ, ବାଳ ବୃଦ୍ଧ ଯେତେକ ଅଛନ୍ତି,
ସେ ପଦାର୍ଥ ସଙ୍ଗେ ସଙ୍ଗୀ ହେବାକୁ ଇଚ୍ଛନ୍ତି ।
ସେ ପଦାର୍ଥ କାହିଁ କେଉଁଠାବରେ ମିଳଇ;
ମନୁଷ୍ୟଙ୍କୁ ପାଇ ଟାକୁକରି ଯେ ଗିଳଇ ।
ଏପରି ବିଷମ କଥା ଯେ କହିବ ମୋତେ,

ତାହା ଘରେ ଦାସୀ ପରି ଖଟୁଥିବି ନିତ୍ୟେ ।

ଉତ୍ତର - କହିଦେବି ମୁହିଁ ସେହିକଥାର ଯେ ସନ୍ଧି,
ଅକାରଣେ କିପାଁ ତୁହି ହେଉଅଛୁ ଧନ୍ଦି ।
'କୁକୁରତା' ବୋଲିଣ ତାକୁ କହନ୍ତି ଜଗତେ,
ହେଲା କି ନ ହେଲା ମନେ ବୁଝନ୍ତୁ ସମସ୍ତେ ।

ପ୍ରଶ୍ନ - ଅଛି ଏକ ପଦାର୍ଥ ଯେ ଅତି ଚମତ୍କାର,
ଯାହା ଦେଖେ ହୋଇଯାଏ ସେହି ପରକାର ।
ଆଦର କରିଣ ଘରେ ସମସ୍ତେ ରଖନ୍ତି,
ଯେତେବେଳେ ଇଚ୍ଛା ହୁଏ ତାହାକୁ ଦେଖନ୍ତି ।
କିଏ ସେହି କହିଦିଅ ମନର ହରଷେ
ତା' ଘରେ ଖଟିବି ମୁହିଁ ଛ ମାସ ବରଷେ ।

ଉତ୍ତର - ଜାଣିଲି ମୁଁ ସେ ପଦାର୍ଥ ଅଟଇ 'ଦର୍ପଣ'
ସାଦରେ ଝିଅ ବୋହୂକୁ କରନ୍ତି ଅର୍ପଣ ।
ଯା ଆସିଲା ମୋ ମନକୁ କହିଦେଲି ମୁହିଁ,
ଯାହା ଇଚ୍ଛା ତାହା ଏବେ ଭାବୁଥାଅ ତୁହି ।

ପ୍ରଶ୍ନ - ଅଛି ଏକ ପଦାର୍ଥ ଯେ ଜଗତ ମଧରେ,
ନୀଚଜାତିମାନେ ତାକୁ ରଖନ୍ତି ଯେ ଘରେ ।
ବିଶାଳ ଉଦର ତାର ଆଶ୍ଚର୍ଯ୍ୟ ଅଟଇ,
ପ୍ରତିଦିନ ଲକ୍ଷ ପ୍ରାଣୀ ଧରି ସେ ଭକ୍ଷଇ ।
କି ପଦାର୍ଥ ଅଟଇ ସେ କହିଦିଅ ମୋତେ,
ଦାସୀ ହୋଇ ଖଟିବି ତୋ ପାଦେ ଦିନାକେତେ ।

ଉତ୍ତର - ତୋ କଥାର ଅର୍ଥ ଯଦି କହିଦେବି ମୁହିଁ,
ମୋ ଦେହ ଛୁଇଁଣ କହ କିସ ଦେବୁ ତୁହି ।
ସେ ପଦାର୍ଥ ନାମ ଏବେ କହୁଅଛି ଶୁଣ,
ମୀନଧରା 'ଜାଲ' ସେହି କହିଲି ତା ଗୁଣ ।

ପ୍ରଶ୍ନ - ପବନରୁ ବଳି ଗତି ଅଟଇ ଚଞ୍ଚଳ,
ତାକୁ କେହି ନ ଦେଖଇ ସେ ପୁଣି ଅଟଳ
କ୍ଷଣକେ ଛାଡ଼ି ଯାତି କୁଟୁମ୍ବ ସକଳ,

ପୁଣି କ୍ଷଣକରେ କାନ୍ଦି ହୁଅଇ ବିକଳ ।
ଭଲ ମନ୍ଦ ବିଚାର କରଇ ସର୍ବଠାଇଁ
ଧନୀ ବା ନିର୍ଦ୍ଧନିପାଶେ ସର୍ବଦା ସେ ଥାଇ ।
କେ ବା ସେହି ଜନ ଅଟେ କହିଦିଅ ଭାବି,
ସର୍ବଦା ତୁମ୍ଭର ଦାସୀ ଭାବେ ଖଟିଥିବି ।

ଉତ୍ତର - ସଚରାଚର ବ୍ରହ୍ମାଣ୍ଡ ଜୀବଦେହେଁ ସେହି,
ରହିଛି ଗୁପ୍ତରେ 'ମନ' କହିଲି ବୁଝାଇ ।
ଫିଟୁ ମନରୁ ସନ୍ଦେହ ଯାହା ଏ କହିଲା,
ସମସ୍ତେ ମିଳିଣ ବୁଝ ହେଲା କି ନହେଲା ।

ପ୍ରଶ୍ନ - ମୋଟ ଦେହ ପୁଣି ଡେଙ୍ଗା ଦେଖିବାକୁ ଅତି,
ତା ଗର୍ଭରେ ନାରାୟଣ କରିଥାନ୍ତି ସ୍ଥିତି ।
ଦେଖିବାକୁ ସମସ୍ତେ ତାହାକୁ ଯା'ନ୍ତି ଧାଇଁ,
କେ ବା ସେ ଅଟଇ ଅବା ରହିଥାଏ କାହିଁ ।
କହିଦିଅ ସହି ତୁହି ନାମ କିସ ତାର,
ରହିଥିବି ଚରଣରେ ହୋଇ ପରିଚାର ।

ଉତ୍ତର - ପୁରୀଧାମେ ରହିଥାଏ 'ରଥ' ସେ ଅଟଇ,
ପ୍ରତିବର୍ଷ ଜଗନ୍ନାଥ ପାଦେ ସେ ଖଟଇ ।
ଭାବି କହିଦେଲି ଏହା ହେଉଛି କି ନାହିଁ
ନୋହିଲେ ଫେରାଇ ନେବି ମୋ କଥାକୁ ମୁହିଁ ।

ପ୍ରଶ୍ନ - ଏକଦିନେ ସ୍ୱର୍ଗପୁରେ ଦେବ ଚାରିଗୋଟି,
ସଭା କରି ବସିଛନ୍ତି ପ୍ରଭାତରୁ ଉଠି ।
ନବଗୋଟି ମୁଣ୍ଡେ ଅଛି ଉଣେଇଁଶ ନେତ୍ର ।
ଅଷ୍ଟାଦଶ କର୍ଣ୍ଣ ଅଟେ ତିନିଗୋଟି ଗାତ୍ର ।
ଷଡ଼ ପାଦ, ଚୌଦ ବାହୁ ଅଛଇ ଏମନ୍ତ,
ବୁଝି ଅର୍ଥ କର କଳି ନ ହେବ ଯେମନ୍ତ ।

ଉତ୍ତର - ଏ କଠିଣ ପ୍ରଶ୍ନ ସହି କାହିଁ ରଖିଥିଲୁ ।
ଏତେକାଳେ ଏହା ମୋତେ ଫିଟାଇ କହିଲୁ ।
ହେଉ ତେବେ ଶୁଣ ତୋର ପ୍ରଶ୍ନର ଉତ୍ତର,

'ଶିବ', 'ଶିବା', 'ରାହୁ' ପୁଣି 'ଶ୍ରୀ କାର୍ତ୍ତିକେଶ୍ୱର'
ତୋ ଭାବର ଅର୍ଥ ମୁହିଁ କରିଲି ପୂରଣ,
ଅନ୍ୟ ଅର୍ଥ ଥାଇପାରେ ନୋହିଲା ସ୍ମରଣ ।
ରହିଲା ବହୁତ କଥା ଆସ ଯିବା ସହି ।
ଆଉ ଦିନେ ହେବା ପୁଣି ନାଆଁ ଦିଆଦେଇ ।
ଏ ଢଗଢମାଳୀ କଥା ହେଲା ସମାପନ ।
ପଢ଼ି ଶୁଣି ଜନେ ହୁଅ ଆନନ୍ଦିତ ମନ ।

## ଭଗାରିପୁର

୨୦୯୪୩. ନନାଙ୍କ ଦାରୁଣ ପଣ, ନାହିଁ ନଥିବ ତ ସଂସାରେ ଜାଣ
ମୋ ଠାରେ ବଡ଼ କୃପଣ, ବୋଇଲେ ଦୁଃଖ କିପାଇଁ
ବରଷ ନ ପୂରୁଁ ଆଣିବି ମୁହିଁ, ଏତେ କୋହ କାହିଁପାଇଁ ।

## ବେଦୀ ଫେରନ୍ତି କାନ୍ଦଣା

୨୦୯୪୪. ନୃପତିପଣରେ ସିଂହ ସମାନ, ହେ ଭାଇ
ଶୃଗାଳ କେବେ କି ହେବ ଭାର୍ଜନ, ହେ ଭାଇ
ତୁମ ଶ୍ରୀଚରଣେ ଧୂଳି ସମାନ, ହେ ଭାଇ
ଆଉ କେହି କେବେ ହେବ ଭାର୍ଜନ, ହେ ଭାଇ
ମନ କରିଥିଲେ ସ୍ୱର୍ଗରୁ ପାରିଜାତ, ହେ ଭାଇ
ଆକାଶୁ ନକ୍ଷତ୍ର ତୋଳି ଆଣିଥାନ୍ତ ହେ ଭାଇ
ସମୁଦ୍ର ଲହଡ଼ୀ କେତେ ଗଣିଲ ମୋ ଭାଇ
ମୋ ଲାଗି ସବୁ ତ ଭୁଲିଣ ଗଲ ମୋ ଭାଇ
ବସିଲା ଚଢ଼େଇର ପକ୍ଷୀ କିପାଇଁ ମୋ ଭାଇ
କାହିଁପାଇଁ ଗଣି ପାରିଲ ନାହିଁ, ମୋ ଭାଇ
ମୋ କରମକୁ ସାତ ଅକ୍ଷର ହେ ମୋ ଭାଇ
ପୂର୍ଣ୍ଣ ଯାହା ତୁମେ କରି ନ ପାରିଲ ହେ ମୋ ଭାଇ
ପରଙ୍କ ବୁଦ୍ଧିରେ ପ୍ରଳୟ ହେଲା ହେ ମୋ ଭାଇ
ମୋ ବେଳକୁ ବୁଦ୍ଧି କିଏ ହରିଲା,ହେ ମୋ ଭାଇ

୨୦୯୪୫. ନିମ୍ବ ଫଳ ସିନା ଗଛକୁ ପିତା,
ମୁଁ କିଆଁ ହୋଇଲି ତମକୁ ପିତା ।

## ହେ ନୂଆବୋହୂ

୨୦୯୪୬. ନୂଆ ଖଡ଼ଖଡ଼ି ଆସିଲୁ ଦିନୁଁ,
ଝର ଝର ପାଣି ଝରିଲା ଘନୁଁ
ଭୁଲେଇ ଉହିଲ ପର ବରାଦ,
ମୋ'ଠେଇ ଥିଲା ତୁମରି ବାଦ,
ସାଙ୍ଗ ହୋଇ କରି ଗାଧୋଉଥିଲେ,
ଏକାଥାଳି ଭାତ ଖାଉଣ ଥିଲେ,
ନନା ନଥିଲେ ଏକାଠି ଶୋଇ,
କେତେ ଗୀତ ମତେ ଦିଅ ଶିଖେଇ ।

## ଗୋଠ ବାହୁଡ଼ା ମହାପ୍ରଭୁ ସେ

୨୦୯୪୭. ନଇକି ମାଠିଆ ଗଡୁ
କାହ୍ନୁପୁର ଲୁଗା ପିତଳ ଖଡୁଲୋ
ରାଜା ଦରବାରେ ପଡୁ ।
୨୦୯୪୮. ନନାଙ୍କ ବାଡ଼ିରେ ପଶିଲା ମିରିଗ,
ଭାଙ୍ଗିଲା କମଳା ଡାଳ
କହି ପଠେଇଲେ ଦେଉ ପଠେଉବୁ ଲୋ
ବୋଉ, ବେକ ସୋରିଷିଆ ମାଳ ।
୨୦୯୪୯. ନଈ ଆରପାଖେ କେ' କେ' ଯାଉଚ ଲୋ
ମୋ ଠାରୁ ଖବର ନିଅ
ଗୁଆ ପେଡ଼ି ପେଡ଼ି, ପାନ ବିଡ଼ି ବିଡ଼ି
ବାପାଙ୍କ ପାଖରେ ଦିଅ ।
୨୦୯୫୦. ନଡ଼ିଆ ଗୋଟମା କଷି
ଦୂର ରାଇଜରେ ଦେଇଚ ନନା ହେ
ଦିନ ଗଣୁଥିବି ବସି ।

୨୦୯୫୧. ନୂଆ ପୋଖରୀର ପାଣି
ବଡ଼ଘର ବୋଲି ଦେଇଚ ବାପା ହେ
କେରାଣ୍ଡି ଦିଅଚି ଗଣି ।

୨୦୯୫୨. ନୂଆ ପୋଖରୀର ପଙ୍କ
ବଡ଼ ଘର ବୋଲି ଦେଇଚୁ ବୋଉ ଲୋ
ପେଟରେ କାଟନ୍ତି ଅଙ୍କ,

## ପୁଅବିଭା ମଙ୍ଗଳ

୨୦୯୫୩. ନ ଖାଇବୁ ବାବୁ ତୁରେ
ଗୋଡ଼ମୋଡ଼ା ଶାଗ
କନିଆଁର ମାଆ ତତେ
ପରଶିବ ଆଗ । ୧ ।
ନଖକଟା ପତ୍ରେ ବାବୁ
ଦେଇଥିବେ ଲୁଣ
ଜାଣିଶୁଣି ବାବୁ ତୁରେ
କରିବୁ ଭୋଜନ । ୨ ।
ନ ଖାଇବୁ ବାବୁ ତୁରେ
ଖିରିସାର ପାଣି
କନିଆଁର ମାଆ ତତେ
ପରଶିବ ଆଣି । ୩ ।
ନଖାଇବୁ ବାବୁ ତୁରେ
କଳକଳା ଗୁଆ
ଶାଳୀମାନେ ଚିଡ଼େଇବେ
ମାଇପ ଚାଟୁଆ । ୪ ।
ନଖାଇବୁ ବାବୁ ତୁ ରେ
ହୁମତଳ ମହୁ
ଜାଣି ଶୁଣି ବିଭାହେବୁ
ଦଶରଥ ବୋହୂ । ୫ ।

ନ ଖାଇବୁ ବାବୁ ତୁରେ
ହୁମତଳ ଘିଅ
ଜାଣି ଶୁଣି ବିଭାହେବୁ
ଜନକର ଝିଅ । ୬ ।
ନଖାଇବୁ ବାବୁ ତୁରେ
'ଉଚ୍ଛୁ'ର ତକୁଳି
ଉଚ୍ଛୁର ହୋଇଲେ ବାବୁ
ଦେବେଟିରେ ଗାଳି । ୭ ।
ନଖାଇବୁ ବାବୁ ତୁ ରେ
ଚଉଠି ଜାକରା
ସଭାର ତଳରେ ତୋତେ
କରିବେ ନାକରା । ୮ ।
ନ ଖାଇବୁ ବାବୁ ତୁ ରେ
ପାଞ୍ଚଦିନ ମଣ୍ଡା
ଗୁହାଳ କଣରେ ତୋତେ
କରିଦେବେ ମେଣ୍ଢା । ୯ ।
ନ ଖାଇବୁ ତୁ ରେ
ଛଦିନ ଚିଚୋଉ
ଚିଉ ଜାଣି ଖଟିଥିବେ
ନ ଆସିବୁ ଆଉ । ୧୦ ।

୨୦୯୫୪. ନଣନ୍ଦ ଶୁଣିବ, ଧିକ୍କାରି ବୋଲିବ,
ଦୋଚାରୀ ହୋଇବି ସବୁ ତୁଣ୍ଡେ ।
ଲୋକ ଲାଜ କଥା ମରଣର ବ୍ୟଥା,
ଆଉ କି ଚାଲିବି ରାଜଦାଣ୍ଡେ ।।

୨୦୯୫୫. ନାନା ଛବି ହେଉ ମୋହନୀ ଲଗାଉ,
ବଳେ ହରି ଲୋଡ଼ୁ ପର ନାରୀ ।
ପବନକୁ ଫାନ୍ଦ ଗଗନର ଚାନ୍ଦ,
ଏହା ଲୋଡ଼ୁଅଛୁ କରେ ଧରି ।

# ରଜଦୋଳି ଗୀତ

୨୦୯୫୬. ନଈରେ ଚାଲିଛି ନାଆ
ନାଉରିଆ ଭାଇ ମଥାରେ ଟୀକା
ସମଲେଇ ହେଲେ ସାହା

୨୦୯୫୭. ତୁଆ ପାଟଣାର ପାଟ
ତୁଆ ଚନ୍ଦନରେ ରତ୍ନ ମୁକୁଟ
ଲକ୍ଷ୍ମୀନାରାୟଣ ଭେଟ ।

୨୦୯୫୮. ନେଉଳ ଗାତୁଛି ମାଟି
ଭାଇଙ୍କ ଗମ୍ଭୀରା ଅନାଇଁ ଦେଲି
ହସରେ ଯାଉଛି ଫାଟି ।

୨୦୯୫୯. ନଡ଼ିଆ ଗୋଟମା କଷି
ଦୂର ରାଇଜରେ ଦେଇତୁ ଝିଅ ଲୋ
ବୋଉ, ଦିନ ଗଣୁଅଛି ବସି ।

୨୦୯୬୦. ନାଲକୁ ଫିଙ୍ଗିଲି କାଣ୍ଡ
ସତେ କି ଦେଖିବି ବୋଉକୁ ମୋର ଲୋ
ଶିରୀ ପୁରଷ୍ତମ ଦାଣ୍ଡ ।

୨୦୯୬୧. ନିମ୍ବ କି ମଧୁର ହେବ
ସାରୀ ଶୁଆ ପରି ପଢ଼ାଉଥିବ
ପର କି ଆପଣା ହବ,

୨୦୯୬୨. ନଈ ପାଣି ଯାଏ ଥିରି
ବାଇକଲା ମୋତେ ରଜା ଚାକେରୀ
କେତେ ଚାହୁଁ ଥାଉ ଫେରି ।

୨୦୯୬୩. ନିଆଁ ଖୁଣ୍ଟା ଦାଉ ଦାଉ
ତୋ ଲାଗି ପଛକେ ଜୀବନ ଯାଉ
କଥା ଯୁଗେ ଯୁଗେ ଥାଉ, ସଜନୀ

୨୦୯୬୪. ତୁଆ କରେଇର ଭାତ
ଧରିଲା ଚୁଙ୍କୁଡ଼ି ମାଇଲା ନାତ
ତୁମ୍ଭ କଥା ନାହିଁ ସତ ଲୋ ।

୨୦୯୬୫. ନଈକୁ ଫିଙ୍ଗିଲି କଣ୍ଢ଼
କାଣ୍ଢ଼ ରାଇଜରୁ ଆସିଛି ଢେମା ଲୋ,
କିଏ ରଖିଥିଲା ସାଂତି ।

୨୦୯୬୬. ନଈକୁ ଫିଙ୍ଗିଲି ବାଡ଼ି
ଭାଉଜ ତ ମୋର କନକ ଗୋରୀ,
କାଛି ପିନ୍ଧେ କଳା ମେଘିଶାଢ଼ୀ ।

## ଓଷା ମନସା

୨୦୯୬୭. ନିଆଁ ଟିକେ ମାଗିଗଲି ନନ୍ଦସୁତ ଘର
ନନ୍ଦସୁତ ଶୋଇଛନ୍ତି ଗମ୍ଭୀରି ଭିତର
କି ହାଣ୍ଡି ଧୋଇଲ ରାଧେ ହସ୍ତେ ନାହିଁ କଳା
କି ଖୋଷା ଖୋଷିଲ ରାଧେ କଦମ୍ବର ଭେଳା
ଖୋଷା ଗୋଟିକରେ ଅଛି ନାଗେଶ୍ୱର ଫୁଲ
ଖୋଷା ଗୋଟିକର ଅବା କେ କରିବ ମୂଲ ।
ଷୋଳଟି ଦୁଆରକୁ ଷୋଳଟି କବାଟ
ଷଗଡ଼ ଧୂଳିରେ ପ୍ରଭୁ କରୁଛନ୍ତି ନାଟ ।
ବିରିର ଭାରିଜା ଯେ ସୁନାର ବେଢ଼ାଣି
ଏକାବଳା ପଟିକ ଯେ ପଡ଼ିଲା ଭାଳେଣି
ରାଧାକୁ ଆଣିଗଲେ ରଥରେ ବସାଇ
ଗୁଆପାନ ଭାଙ୍ଗିଦେଲେ ଜଙ୍ଘରେ ବସାଇ
ଗୁଆପାନ ଭାଙ୍ଗୁ ଭାଙ୍ଗୁ ମାଡ଼ିଗଲା ନିଦ୍ରା
ମହାନିଦ୍ରା ମାଡ଼ିଗଲା ବାଳକୁ ଚୁମୁଳା ।
ସାଙ୍ଗ ଲୋକେ ଛାଡ଼ିଗଲେ ନ ଦିଶିଲା ବାଟ
କିଏ ଦେଖେଇବ ନେଇ ପ୍ରଭୁ ଜଗନ୍ନାଥ ।

## ଶିଶୁ ଶୁଆଇବା ଗୀତ

୨୦୯୬୮. ନାହିଁ ଲୋ ନାହିଁ, ନାହିଁ ଲୋ ନାହିଁ,
ମୋ ଗଣ୍ଡିବନ୍ଧା ସୁନା କାହିଁ ?
ମୋ ବାପଧନ କାହିଁ ?
ମୋ ଧନ ପଡ଼ିଲାଣି ଶୋଇ ।

## ଶଗଡ଼ିଆ ଗୀତ

୨୦୯୬୯. ନଇ ତ ନଇ ଯେ ବାର ବାଙ୍କେ ନଇ,
ଅଣ୍ଡିରା ରାଜହଂସ ଯାଇଛି ପାଣି ଖାଇ,
ମୋ ପକ୍ଷୀର ପାଦ ନାହିଁ ଡାଳେ ତ ବସଇ,
ଏହା ତୁ କହି ଦେବୁରେ ପାଠୁଆ,
ମୂରୁଖ ପଚାରଇ ହୋ ।
୨୦୯୭୦. ନଇ ତ ନଇ ଯେ ବାର ବାଙ୍କେ ନଇ,
ଆଗରେ ପାଞ୍ଚ ହଳ ପଛରେ ଚାଲେ ମଇ,
ଡାହାଣ ବଳଦ ଝାଲେରି କାଠି ଖରେ ବାଇ ହୋ ।
୨୦୯୭୧. ନଇକ୍ଷଣକୁ ଚାହିଁ ଶ୍ରୀରାମଚନ୍ଦ୍ର କହି,
ନେବାପାଇଁ ଆମ୍ଭନ୍ତ ଭରଥ ଆସିଛନ୍ତି,
ନଇକ୍ଷଣ ଶାନ୍ତି ତ ରାମର ବୋଲ ଶୁଣି,
ନୃପବୀର ରାମ ଚରଣ ନମଇଁ ଭ୍ରଥ ମଣି ହୋ ।
୨୦୯୭୨. ନ ଛିଣ୍ଡା ନ ଛିଣ୍ଡା ବୋହୂ ଏ ଦୋଳ ମୁକ୍ତଟ
ଯେତେକ ପାଇବି ମୁଁ ଦାନ ଯଉତୁକ
ଗୋଡ଼କୁ ଗୋଡ଼ ବଳା ମଥାକୁ ମଥାମଣି
ଆହୁରି ଦରବେ ଆଣିବି ବୋହୂ ଲୋ
ତୋର ସାଙ୍ଗକୁ ସଉତୁଣୀ ଯେ - ହ, ହ ।

(ଲଙ୍କା ଦାଣ୍ଡଧୁଆ)

୨୦୯୭୩. ନହୁଲି ବୟସୀ ମୋ ସୀତା ରଘୁନାଥ
ନିର୍ମାଖି ପରାୟେ ବନସ୍ତେ କଲେ ବାସ

ନିର୍ଦ୍ଦୟା କଇକେୟୀ ଛଦ୍ମ ବୁଦ୍ଧି କଲା
ନବୀନ ଘନଶ୍ୟାମ ମୂରତିକୁ ଯେ
ବନକୁ ପେଷିଦେଲା ହୋ ।

୨୦୯୭୪. ନୃପତି ହୁଅନ୍ତେ ରାମ ଅଯୋଧ୍ୟା ଭୁବନ
ନକ୍ଷତ୍ରପତି ଜାଣି ଖଟନ୍ତେ ମନ୍ତ୍ରୀଗଣ
ନବରତ୍ନ ହାର ଜାନକୀ ଗଳେ ଶୋହି
ତୁଆ ପାଟେ ଅଭିଷେକ ଯେ ହୁଅନ୍ତେ
ସୀତା ମାୟି ହୋ ।

(ମନାଇଁ ଦାଣ୍ଡଧୁଆ)

୨୦୯୭୫. ନାଗରବର ହରି ନିକଟରେ ଛନ୍ତି
ନୟନେ ନ ଦିଶନ୍ତି ବିହାର କରନ୍ତି
ନୟନେ ଦେଖିଲେ ତୁ ହୋଇବୁ ସଫଳ
ନାମ ଆଶ୍ରେ କଲେ ମୂଢ଼ରେ ମନାଇଁ
ଜଗତୁ ହେବୁ ପାର ହୋ ।

୨୦୯୭୬. ନାଗରବର ହରି ନିକଟେ ନାହାନ୍ତି
ନୟନେ ଦିଶନ୍ତି ତ ବିହାର ନ କରନ୍ତି
ନୟନ ବୁଜି ଦେଖ ହୋଇବୁ ସଫଳ
ନାମେ ଆଶ୍ରେ କର ମୂଢ଼ ହେବୁ ତୁ ଅଜାମରା

## ଚଇତପରବ ଗୀତ

୨୦୯୭୭. ନବଘନ ଧନ ନବ କାଳିଆ
ଦୂରକୁ ଦିଶଇ ତୋରା
ତମର ଆମର ପୀରତି କଲେ
ମୁକୁତା ଗୁନ୍ଥିଲା ପରା
ରମଣୀ ବସୁଧା କୁଆର ଦେବୀ
ରତି ରସେ ବସିଥିବି ।

୨୦୯୭୮. ନଦୀ ଖଣ୍ଡି ଖଣ୍ଡି ମୋ ସରୁ ଧନ ।
ବୁଣି ଗଲୁ ବାଲି ସୁଆଁ
ନାଇଁ ମିଳି କରି ମିଳିଲା ଆଚେ
ପଞ୍ଜୁରାରେ ଥିବା ଶୁଆ
ଆସିଇ କି ? ବାବୁ ! ପଞ୍ଜୁରୀ ଶୁଆ
ଧର ଶୁଆ କଥା କୁଆ ।

୨୦୯୭୯. ନିତି ଫୁଲ ଖୋସା ଆଖି କଜଳ
ଦୁଆରେ ଜନ ତରାସ
ଦୂରେ ଥିଲେ ବନ୍ଧୁ କି ଲାଭ ଆଚେ
ଆମ ଗାଁଏ ଭାରି ଆସ
ବାତିରି ପତର ଭାରିଲା ଗଭା
ଏକାଠାରେ ଥିଲେ ଶୋଭା ।

## ଭାଗବତ ପଦ

୨୦୯୮୦. ନିଜ ରକ୍ଷଣେ ଅସମ୍ଭବ । ସେ କାହୁଁ ପରକୁ ରଖିବ ।
୨୦୯୮୧. ନିଜ ଅର୍ଜିଲା କର୍ମମାନ । ଆପେ ହୁଅନ୍ତି ସାବଧାନ ।
୨୦୯୮୨. ନାନା ବୃକ୍ଷରୁ ମଧୁ ଆଣି । ସଞ୍ଚଇ ନିଜ ଗୃହେ ପୁଣି ।
୨୦୯୮୩. ନ ଦଭେ ନ ଖାଇ ସଞ୍ଚଇ । ତାହାର ମୁଖେ ଅଗ୍ନି ଦେଇ ।



## ହିତୋପଦେଶ

୨୦୯୮୪. ନ ଦେବାୟ ନ ବିପ୍ରାୟ ନ ବନ୍ଧୁଭ୍ୟୋ ନ ଚାତ୍ମନେ
କୃପଣସ୍ୟ ଧନଂ ଯାତି ବହ୍ନି ତସ୍କର ପାର୍ଥିବୈଃ ।
(କୃପଣ ଲୋକର ଧନ ଦେବତାଙ୍କ ଉଦ୍ଦେଶ୍ୟରେ କି ବ୍ରାହ୍ମଣଙ୍କ ଉଦ୍ଦେଶ୍ୟରେ କିମ୍ବା ନିଜ ଉଦ୍ଦେଶ୍ୟରେ ବ୍ୟୟିତ ହୁଏନାହିଁ । କେବଳ ଅଗ୍ନିଦ୍ୱାରା ଭସ୍ମୀଭୂତ ହୁଏ, ଚୋରମାନଙ୍କ ଦ୍ୱାରା ଅପହୃତ ହୁଏ ଅଥବା ରାଜାଙ୍କ ଦ୍ୱାରା ବଳପୂର୍ବକ ନିଆଯାଏ ।)

୨୦୯୮୫. ନ ସ୍ତ୍ରୀଣାମପ୍ରିୟଃ କଶ୍ଚିତ୍ ପ୍ରିୟୋ ବାଽପି ନ ବିଦ୍ୟତେ ।
ଗାବସ୍ତୃଣମିବାଽରଣ୍ୟେ ପ୍ରାର୍ଥୟନ୍ତେ ନବଂ ନବମ୍ ।
(ସ୍ତ୍ରୀମାନଙ୍କ ପକ୍ଷରେ କେହି ଅପ୍ରିୟ ନୁହନ୍ତି । ଗାଈମାନେ ଅରଣ୍ୟରେ ନୂଆ ନୂଆ ଘାସ ଚରିଲା ପରି ସ୍ତ୍ରୀମାନେ ନିତ୍ୟ ନୂତନ ପୁରୁଷ କାମନା କରିଥାନ୍ତି ।)

୨୦୯୮୬. ନ ନରସ୍ୟ ନରୋ ଦାସୋ ଦାସସ୍ତ୍ୱର୍ଥସ୍ୟ ଭୂପତେ
ଗୌରବଂ ଲାଘବଂ ବାଽପି ଧନାଽଧନନିବନ୍ଧନମ୍ ।
(ହେ ରାଜନ୍, ମନୁଷ୍ୟ ମନୁଷ୍ୟର ଦାସ ହୁଏ ନାହିଁ; କିନ୍ତୁ ଧନର ଦାସ ହୁଏ । ଏହି ଧନ ହେତୁରୁ ମନୁଷ୍ୟର ମହତ୍ତ୍ୱ ପ୍ରକାଶ ପାଏ, ପୁଣି ଧନର ଅଭାବରୁ ସେ ଲଘୁତ୍ୱ ଲାଭ କରେ ।)

୨୦୯୮୭. ନ ହି ତଦ୍‌ବିଦ୍ୟତେ କିଞ୍ଚିଦ୍ ଯଦର୍ଥେନ ସିଦ୍ଧ୍ୟତି ।
ଯତ୍ନେନ ମତିମାଂସ୍ତସ୍ମାଦର୍ଥମେକଂ ପ୍ରସାଧୟେତ୍ ।।
(ସଂସାରରେ ଏପରି କିଛି ନାହିଁ ଯାହା ଧନ ଦ୍ୱାରା ସିଦ୍ଧ ହୋଇ ନ ପାରିବ । ତେଣୁ ବୁଦ୍ଧିମାନ ଲୋକ ଅତି ଯତ୍ନରେ କେବଳ ଧନ ଉପାର୍ଜନ କରିବା ବିଧେୟ ।)

୨୦୯୮୮. ନ ସ୍ୱଳ୍ପସ୍ୟ କୃତେ ଭୂରି ନାଶୟେନ୍ମତିମାନ୍ନରଃ ।
ଏତ ଦେବାତ୍ର ପାଣ୍ଡିତ୍ୟଂ ଯତ୍ସ୍ୱଳ୍ପାଦ୍ଭୂରିରକ୍ଷଣମ୍ ।।
(ବୁଦ୍ଧିମାନ ଲୋକ ଛୋଟ ଜିନିଷ ପାଇଁ ବଡ଼ ଜିନିଷକୁ ନାଶ କରନ୍ତି ନାହିଁ । ଛୋଟ ଜିନିଷକୁ ଛାଡ଼ି ବଡ଼କୁ ରକ୍ଷା କରିବା ହେଉଛି ପାଣ୍ଡିତ୍ୟର ପରିଚାୟକ ।)

୨୦୯୮୯. ନଦୀନାଂ ଚ କୁଲାନାଂ ଚ ମୁନୀନାଂ ଚ ମହାତ୍ମନାମ୍ ।
ପରୀକ୍ଷା ନ ପ୍ରକର୍ତ୍ତବ୍ୟା ସ୍ତ୍ରୀଣାଂ ଦୁଶ୍ଚରିତସ୍ୟ ଚ ।।
(ନଦୀର, ବଂଶର, ମୁନିଙ୍କର, ମହାପୁରୁଷଙ୍କର, ସ୍ତ୍ରୀର ଓ ଦୁରାତ୍ମା (ଦୁଶ୍ଚରିତ୍ର)ମାନଙ୍କର ପରୀକ୍ଷା କରିବା ଅନୁଚିତ ।)

୨୦୯୯୦. ନାମୃତଂ ନ ବିଷଂ କିଞ୍ଚି ଦେକାଂ ମୁକ୍ତ୍ୱା ନିତମ୍ବିନୀମ୍ ।

ଯସ୍ୟାଃ ସଙ୍ଗେନ ଦିବ୍ୟେତ ମିୟତେ ଚ ବିୟୋଗତଃ ॥

(ଯୁବତୀ ରମଣୀ ଛଡ଼ା ଏ ସଂସାରରେ ଅମୃତ ବା ବିଷ ବୋଲି ଅନ୍ୟ କୌଣସି ବସ୍ତୁ ନାହିଁ । ଯୁବତୀର ସଂସର୍ଗରେ ମନୁଷ୍ୟର ଜୀବନ ଓ ବିଚ୍ଛେଦରେ ମରଣ ।)

୨୦୯୯୧. ନାତି ପ୍ରସଙ୍ଗଃ ପ୍ରମଦାସୁ କାର୍ଯ୍ୟେ
ନେଚ୍ଛେଦ୍‌ବଳଂ ସ୍ତ୍ରୀଷୁ ବିବର୍ଦ୍ଧମାନମ୍ ।
ଅତି ପ୍ରସକ୍ତୈଃ ପୁରୁଷୈର୍ଯତସ୍ତାଃ
କ୍ରୀଡ଼ନ୍ତି କାକୈରିବଲୂନପକ୍ଷୈଃ ।

(ସ୍ତ୍ରୀମାନଙ୍କଠାରେ ଅଧିକ ଆସକ୍ତ ରହିବା ଉଚିତ୍ ନୁହେଁ । ସେମାନଙ୍କର ବଳର ବର୍ଦ୍ଧନ ଇଚ୍ଛା କରିବା ଅନୁଚିତ । କାରଣ, ପକ୍ଷ କଟାଯାଇଥିବା କୁଆ ସହିତ ଖେଳିଲା ପରି ସେମାନେ ଅତ୍ୟଧିକ ପୁରୁଷମାନଙ୍କ ସହିତ ଖେଳନ୍ତି ।)

୨୦୯୯୨. ନିସ୍ତ୍ରିଂଶଂ ହୃଦୟଂ କୃତ୍ୱା ବାଣୀମିକ୍ଷୁରସୋପମାମ୍ ।
ବିକଲ୍ପୋଽତ୍ର ନ କର୍ତ୍ତବ୍ୟୋ ହନ୍ୟାଦେବାପକାରିଣମ୍ ।

(ହୃଦୟକୁ ତରବାରୀ ପରି କଠୋର, କଥାକୁ ଇକ୍ଷୁରସ ପରି ମଧୁର କରି ନିଜର ଅପକାରୀକୁ ବଧ କରିବ । ଏଥିରେ କୌଣସି ଦ୍ୱିଧା କରିବ ନାହିଁ ।)

୨୦୯୯୩. ନ ବିତ୍ତଂ ଦର୍ଶୟେତ୍ ପ୍ରାଜ୍ଞଃ କସ୍ୟ ଚିତ୍ସ୍ୱାଳ୍ପମପ୍ୟହୋ ।
ମୁନେରପି ଯତସ୍ତସ୍ୟ ଦର୍ଶନାଚ୍ଚଲତେ ମନଃ ॥

(ବୁଦ୍ଧିମାନ ଲୋକ ନିଜର ଧନ ସ୍ୱଳ୍ପ ହୋଇଥିଲେ ହେଁ, ତାହା ଅପରକୁ ଦେଖାଇବା ଉଚିତ୍ ନୁହେଁ । କାରଣ ଧନକୁ ଦେଖିଲେ ମୁନିମାନଙ୍କର ମନ ମଧ ବିଚଳିତ ହୋଇଥାଏ ।)

୨୦୯୯୪. ନ ବିଶ୍ୱସେଦ ବିଶ୍ୱସ୍ତେ ବିଶ୍ୱସ୍ତେ ନାତି ବିଶ୍ୱସେଦ୍ ।
ବିଶ୍ୱାସାଦ୍ ଭୟମୁତ୍ପନ୍ନଂ ମୂଳାନ୍ୟପି ନିକୃନ୍ତତି ॥

(ଅବିଶ୍ୱାସୀ ଲୋକକୁ ବିଶ୍ୱାସ କରିବା ଉଚିତ୍ ନୁହେଁ । ବିଶ୍ୱସ୍ତ ଲୋକକୁ ମଧ ଅତ୍ୟଧିକ ବିଶ୍ୱାସ କରିବା ଉଚିତ୍ ନୁହେଁ । କାରଣ ବିଶ୍ୱାସରୁ ଜାତ ଭୟ ମୂଳକୁ ମଧ ନଷ୍ଟ କରିଦିଏ ।)

୨୦୯୯୫. ନ ବଧ୍ୟତେ ହ୍ୟବିଶ୍ୱସ୍ତୋ ଦୁର୍ବଳୋଽପି ବଳୋତ୍କଟୈଃ ।
ବିଶ୍ୱସ୍ତାଶ୍ଚାଶୁ ବଧ୍ୟନ୍ତେ ବଳବନ୍ତୋଽପି ଦୁର୍ବଳୈଃ ॥

(ଅବିଶ୍ୱସ୍ତ ଦୁର୍ବଳ ଲୋକକୁ ମଧ ସବଳ ଲୋକ ବଧ କରିପାରେ ନାହିଁ; କିନ୍ତୁ ଦୁର୍ବଳ ଲୋକ ଦ୍ୱାରା ବିଶ୍ୱାସକାରୀ ବଳବାନ୍ ଲୋକ ମଧ ନିହତ ହୋଇଥାଏ ।)

୨୦୯୯୬. ନାଭ୍ୟୁତ୍ଥାନକ୍ରିୟା ଯତ୍ର ନାଳାପା ମଧୁରାକ୍ଷରାଃ
ଗୁଣଦୋଷ କଥା ନୈବ ତତ୍ର ହର୍ମ୍ୟଂ ନ ଗମ୍ୟତେ ।।
(ଯେଉଁଠାରେ ଉନ୍ନତି ନାହିଁ; କି ମଧୁର ଆଳାପ ନାହିଁ, କି ଗୁଣ ଦୋଷ କଥାରେ ଚର୍ଚ୍ଚା ନାହିଁ, ସେ ଘରକୁ ଯିବା ଉଚିତ୍ ନୁହେଁ ।)

୨୦୯୯୭. ନ ତଥା ବାଧ୍ୟତେ ଲୋକେ ପ୍ରକୃତ୍ୟା ନିର୍ଦ୍ଧନୋ ଜନଃ ।
ଯଥା ଦ୍ରବ୍ୟାଣି ସଂପ୍ରାପ୍ୟ ତୈର୍ବିହୀନୋଽସୁଖେ ସ୍ଥିତଃ ।।
(ପ୍ରଥମେ ଧନପ୍ରାପ୍ତ ହୋଇ ଯେ ପରେ ଧନହୀନ ହୋଇଥାଏ, ସେ ଯେତେ କଷ୍ଟ ଭୋଗ କରେ, ସ୍ୱଭାବତଃ ନିର୍ଦ୍ଧନ ଲୋକ ସେତେ କଷ୍ଟ ଅନୁଭବ କରେନାହିଁ ।)

୨୦୯୯୮. ନହି ସାଂଶୟିକଂ କୁର୍ଯ୍ୟାଦିତ୍ୟୁବାଚ ବୃହସ୍ପତିଃ ।
(ନୀତିଶାସ୍ତ୍ର ପ୍ରଣେତା ବୃହସ୍ପତି କହିଅଛନ୍ତି ଯେ ସଂଶୟଯୁକ୍ତ କୌଣସି କାର୍ଯ୍ୟ କରିବା ବିଧେୟ ନୁହେଁ । )

୨୦୯୯୯. ନ ସା ସ୍ତ୍ରୀତ୍ୟଭିମନ୍ତବ୍ୟା ଯସ୍ୟା ଭର୍ତ୍ତା ନ ତୁଷ୍ୟତି ।
ତୁଷ୍ଟେ ଭର୍ତ୍ତରି ନାରୀଣାଂ ତୁଷ୍ଟାଃ ସ୍ୟୁଃସର୍ବଦେବତାଃ ।।
(ଯେଉଁ ସ୍ତ୍ରୀ ଠାରେ ପତି ସନ୍ତୁଷ୍ଟ ନୁହନ୍ତି ସେ ସ୍ତ୍ରୀ ପଦବାଚ୍ୟା ନୁହେଁ । ସ୍ୱାମୀ ସନ୍ତୁଷ୍ଟ ରହିଥିଲେ ନାରୀମାନଙ୍କର ସମସ୍ତ ଦେବତା ସନ୍ତୁଷ୍ଟ ହୁଅନ୍ତି ।)

୨୧୦୦୦. ନ କିଂ ଦଦ୍ୟାନ୍ନ କିଂ କୁର୍ଯ୍ୟାତ୍ ସ୍ତ୍ରୀଭିରଭ୍ୟର୍ଥିତୋ ନରଃ
ଅନଶ୍ୱା ଯତ୍ର ହ୍ରେଷ୍ୟନ୍ତେ ଶିରଃ ପର୍ବାଣି ମୁଣ୍ଡିତମ୍ ।।
(ସ୍ତ୍ରୀମାନେ ପ୍ରାର୍ଥନା କଲେ ମନୁଷ୍ୟ କଅଣ ନ ଦିଏ ବା କଅଣ ନକରେ । ସ୍ତ୍ରୀର ପ୍ରାର୍ଥନାରେ ଘୋଡ଼ା ନହୋଇ ମନୁଷ୍ୟ ହ୍ରେଷାରବ କରିପାରେ, ନିଷିଦ୍ଧ ଦିନରେ ମଧ ମୁଣ୍ଡିତ (ଲଣ୍ଡା) ହୋଇପାରେ ।)

୨୧୦୦୧. ନାସାଂ କଶ୍ଚିଦଗମ୍ୟୋଽସ୍ତି ନାସାଂଚ ବୟସିସ୍ଥିତିଃ ।.
ବିରୂପଂ ରୂପବନ୍ତଂ ବା ପୁମାନିତ୍ୟେବ ଭୁଞ୍ଜତେ ।।
(ଏହି ନାରୀମାନଙ୍କ ପକ୍ଷରେ କେହି ଅଗମ୍ୟ ନୁହେଁ । ଏମାନଙ୍କର ବୟସ (ଯୁବା, ପୌଢ଼, ବୃଦ୍ଧ) ବିଚାର ନଥାଏ । ଏମାନେ ସୁରୂପ ଓ କୁରୂପର ବିଚାର ନକରି ପୁରୁଷମାତ୍ରେ ଭୋଗ୍ୟ ବୋଲି ମନେ କରନ୍ତି ।)

୨୧୦୦୨. ନାଗ୍ନିସ୍ତୃପ୍ୟତି କାଷ୍ଠାନାଂ ନାପଗାନାଂ ମହୋଦଧିଃ ।
ନାନ୍ତକଃ ସର୍ବଭୂତାନାଂ ନ ପୁଂସାଂ ବାମଲୋଚନା ।।
(କାଷ୍ଠ ଭସ୍ମ କରିବା ଦ୍ୱାରା ଅଗ୍ନି, ବହୁ ନଦୀର ସଙ୍ଗମଦ୍ୱାରା ସମୁଦ୍ର ଓ ପ୍ରାଣୀମାନଙ୍କର

ସଂହାର ଦ୍ୱାରା ଯମ ତୃପ୍ତ ନହେଲା ପରି କାମିନୀମାନେ ବହୁ ପୁରୁଷର ସଙ୍ଗମରେ ମଧ ତୃପ୍ତ ହୁଅନ୍ତି ନାହିଁ।)

୨୧୦୦୩. ନୀତି ତିନି ପ୍ରକାର ।

୧) ଚାଣକ୍ୟଙ୍କ ମତରେ - 'ସତ୍‌କାର୍ଯ୍ୟ କରିବା ।'

୨) ଶୁକ୍ରାଚାର୍ଯ୍ୟଙ୍କ ମତରେ - 'ମିତ୍ର ଅର୍ଜନ କରିବା ।'

୩) ବୃହସ୍ପତିଙ୍କ ମତରେ - 'ବିଶ୍ୱାସ ନ କରିବା ।'

୨୧୦୦୪. ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।

(ସତର କୌଣସି କାଳେ ଅଭାବ ନାହିଁ ଓ ଅସତର କୌଣସି କାଳେ ଅବସ୍ଥିତି ନାହିଁ ।)

୨୧୦୦୫. ନକୁଳଃ ସର୍ବ କାର୍ଯ୍ୟାଣି ଅହି ସର୍ବତ୍ର ବାଧତେ ।

୨୧୦୦୬. ନଗ୍ନ କ୍ଷପଣକଃ ଦେଶେ ରଜକଃ କିଂ କରିଷ୍ୟତି ।

୨୧୦୦୭. ନ ଚଳତି ଖଳୁବାକ୍ୟଂ ସଜ୍ଜନାନାଂ କଦାଚିତ୍ ।

୨୧୦୦୮. ନ ମିଥ୍ୟା ପାଚକଂ ପରଂ

୨୧୦୦୯. ନରାଣାଂ ନାପିତୋ ଧୂର୍ତ୍ତଃ ।।

୨୧୦୧୦. ନ ହରି ଶଙ୍କରୋ ବ୍ରହ୍ମା ।

୨୧୦୧୧. ନିରସ୍ତେ ପାଦପେ ଦେଶେ ଏରଣ୍ଡୋପି ଦ୍ରୁମାୟତେ ।

୨୧୦୧୨. ନିର୍ବାଣ ଦୀପେ କିମୁ ତୈଳ ଦାନଂ
ଚୌରେ ଗତେ ବା କିମୁ ସାବଧାନଂ ।
ବୟୋ ଗତେ କିଂ ବନୀତା ବିଳାସଃ ।
ପୟୋ ଗତେ କିଂ ଖଳୁ ସେତୁବନ୍ଧଃ ।

୨୧୦୧୩. ନମ୍ରନ୍ତି ଫଳିନୋ ବୃକ୍ଷା ନମ୍ରନ୍ତି ଗୁଣିନୋ ଜନାଃ ।
ଶୁଷ୍କ କାଷ୍ଠଂ ଚ ମୂର୍ଖଂ ଚ ଭଜ୍ୟତେ ନ ଚ ନମ୍ରତେ ।



# ଦନାଇ ବଚନ

୨୧୦୧୪. ନଅଣ୍ଡିଆ ଲୋକ କଲେ ବେଉସା,
ଗରିବ ଲୋକ ଯେବେ ଖାଏ ନିଶା,
ପାଠ ପଢି ଯେହୁ ଘରେ ବସଇ,
ମାହାରୀ ହୋଇ ଯାର ରୂପ ନାହିଁ,
ନୂଆ ପୁଆଣିଆ ଗଲେ ବିଦେଶ,
ଯୁବତୀ ବେଳେ ପାଚେ ଯାର କେଶ,
ବଢିଲା ଝିଅ ଥାଏ ଯାର ଘରେ,
ରୋଗ, ଅଭାବ ସଦା ଯାକୁ ଘାରେ,
କରଜ ଆଣି ଯେ ନପାରେ ସୁଝି,
ଆୟ ବ୍ୟୟ ଯେହୁ ନପାରେ ବୁଝି,
ରାଜାର କ୍ରୋଧେ ପଡେ ଯେଉଁ ଜନ,
ଯାହାର ପୁତ୍ର ହୁଅଇ ଅଜ୍ଞାନ,
ବାଞ୍ଝ ହୋଇ ରହେ ଯେବଣ ନାରୀ,
କାମୁକ ଯଦି ହୁଏ ବ୍ରହ୍ମଚାରୀ,
କାଣ୍ଡୋଇ ନାରୀ ଥାଏ ଯାର ଘରେ,
ପର ନାରୀକୁ ଯେ ଗୁପତେ ହରେ,
ଦୂର ଥାନରେ କରେ ଯେହୁ କ୍ଷେତ,
ବଣିଆ ସାଙ୍ଗରେ ବସଇ ମିତ ।
ଦନାଇ କହି - ମନ ବ୍ୟାକୁଳ ସଦାବେଳେ ହୋଇ ।

୨୧୦୧୫. ନଅଣ୍ଟ ବେଳେ ଅଣ୍ଟେ ନାହିଁ, ବାହୁଡିର ଥଣ୍ଟ ନାହିଁ,
ଅଭ୍ୟାଗତର କଣ୍ଟ ନାହିଁ, ଖାଟକର ଆଣ୍ଟ ନାହିଁ,
ଦନାଇ ଛାଣ୍ଟ ନାହିଁ ।

୨୧୦୧୬. ନଈକୂଳିଆ କ୍ଷେତ, ପରହସ୍ତଗତ ବିତ୍ତ,
ଅତୁଡିଶାଳରେ ପୁତ, ଧୋଇଲୀଙ୍କର ଚିତ୍ତ,
ଘଡଘଡିଆ ବରଷା, ବୋଲେ ଦନା ନାହିଁ ଭରସା ।

୨୧୦୧୭. ନଈ କୂଳିଆ ତେଣ୍ଡା, ବାହା ସାମର୍ଥ ଭେଣ୍ଡା,
ପୂରଦିଆ ଉଜାମଣ୍ଡା, ଚୋଖ ପାଣିଦିଆ ଖଣ୍ଡା
ଛେନା ପଣାକୁ ମରିଚ ଗୁଣ୍ଡା
ଦନେଇ ମନକୁ କରେ ଥଣ୍ଡା ।

୨୧୦୧୮. ନଈରେ ନଈ ମିଶିଲେ, ପାଣି ବଢେ ସୁଅ ବଢେ,
ଭାଇରେ ଭାଇ ମିଶିଲେ, ଧନ ବଢେ ମାନ ବଢେ,
ପିଲାରେ ପିଲା ମିଶିଲେ, କଳି ବଢେ ଗୋଳ ବଢେ,
ଲୋକରେ ଦନାଇ ମିଶିଲେ, ଢଗ ବଢେ ରଙ୍ଗ ବଢେ ।

୨୧୦୧୯. ନଈ ହୋଇ ଯେବେ ନ ଦିଏ ଥଳ,
ମେଘ ହୋଇ ଯେବେ ନ ଦିଏ ଜଳ;
ବନ୍ଧୁ ହୋଇ ଯେବେ ନ ଦିଏ ବଳ,
ଗଛ ପୋତି ଯେବେ ନ ଦିଏ ଫଳ;
ପୋଷିଲା ପୁଅ ଯେବେ ହୁଏ ଖଳ,
ଅତି ତୃଷାରେ ନ ମିଳିଲେ ଜଳ;
ପାଇକ ହୋଇ ନଜାଣିଲେ କଳ,
ଡଙ୍ଗା ଯେବେ ହୁଏ ଟଳମଳ;
କରଣ ପୁଅ ନଜାଣିଲେ ନଳ (=ମାପ);
ପୋଇଲୀ ହୋଇ ଯେ କରଇ ଛଳ,
ପୋଖରୀ ଖୋଳି ମାଡିଗଲେ ଦଳ;
କହେ ଦନାଇ ଏ କର୍ମ ଅଚଳ ।

୨୧୦୨୦. ନଈ ବଢିଲେ କେଉଟ ରଜା,
ଝିଅ ବଢିଲେ ଯୋଇଁଚି ଖୋଜା ।
ମାଣ୍ଡିଆ ବଢିଲେ ଅଳପ ଫଳ,
ଘାଆ ବଢିଲେ ଦେହକୁ କାଳ ।
ଗୋଠ ବଢିଲେ ବଢଇ ଦୁଃଖ,
ଜହ୍ନ ବଢିଲେ ରାତିର ସୁଖ ।
ବଅ ବଢିଲେ ବିନ୍ଧର ଭାରି,
ଚିନ୍ତା ବଢିଲେ ହୁଅନ୍ତି ଘାରି ।

ଋଣ ବଢିଲେ ବିକଳ ମନ,
ଶତ୍ରୁ ବଢନ୍ତି ବଢିଲେ ଧନ ।
ସାପ ବଢିଲେ ବଢଇ ଚକ୍ର,
ବାଉଁଶ ବଢିଲେ ହୁଅଇ ବକ୍ର ।
ପାଣ ବଢିଲେ ରଖନ୍ତି ନିଶ,
ଦୁଃଖ ବଢିଲେ ଖାଆନ୍ତି ବିଷ ।
ପିଲା ବଢିଲେ ବଢେ ଜଞ୍ଜାଳ,
ପଠାଣ ବଢିଲେ କରନ୍ତି ଗୋଳ ।
ମାଛ ବଢିଲେ ସୁଆଦ ବଢେ,
ଚଷା ବଢିଲେ ପାଠ ବଢେ ।
ଧାନ ବଢିଲେ ଅମାର ବନ୍ଧା,
ଭୂତ ବଢିଲେ ଭଣ୍ଡାରୀ ଲୋଡା ।
ମୂଷା ବଢିଲେ ପଡଇ କାଳ,
ମଣିଷ ବଢିଲେ ବୁଦ୍ଧି ପାକଳ ।
ଶାଳୀ ବଢିଲେ ବଢଇ ଟାହି,
ଦାରୀ ବଢିଲେ ବଢଇ ଛଇ ।
ଦୋକାନ ବଢିଲେ ବଢଇ କାଳି,
ଦନାଇ ବଢିଲେ ବଢେ ପହଲୀ ।

୨୧୦୨୧. ନଉକାରୁ ବଳି ଯାନ ନାହିଁ,
ଅନ୍ନଦାନଠାରୁ ଦାନ ନାହିଁ,
ଛାଡି ପାନଠାରୁ ପାନ ନାହିଁ,
କୁକୁର କାନରୁ କାନ (= ଶ୍ରବଣ ଶକ୍ତି) ନାହିଁ,
ଘଇତା ଆନରୁ ଆନ (=ରାଣ) ନାହିଁ,
ପୁରଷ୍ତମ ବଳି ଥାନ ନାହିଁ,
ଚମ୍ପା ଧାନରୁ ଧାନ ନାହିଁ,
ଦନାଇରୁ ବଳି ହୀନ ନାହିଁ ।

୨୧୦୨୨. ନଖରେ କାଡେ ଯେ ଭୂମିରେ ଗାର,
ଅଧୁଆ ପାଦେ ଯେ କରେ ଆହାର,

ଗୋବୋଧ ଦୋଷ ଯେ ରଖେ ଲୁଚାଇ,
ବଳକ୍ରାରେ ପର ନାରୀ ହରଇ,
ଲୋଭରେ ଜାଳଇ ଯେ ଓଷ୍ଠ ଜାଳ,
ଘୋର ନିଦ୍ରା ଯାଏ ସଞ୍ଜ ସକାଳ,
ନିଜ ଦେହରେ ବସିବା ଥାନରେ,
ହାତ ଥାପୁଡି ତାନ ଲୟ କରେ,
କୁବେର ପରାଏ ହେଉ ସେ ଧନୀ,
ଶେଷେ ବୁଲଇ ଭିକ୍ଷା ପାତ୍ର ଘେନି,
ବୋଲେ ଡକାଇ ଏମାନଙ୍କୁ ନମାନି ।

୨୧୦୨୩. ନ ଜାଣି ଯେ କଥା କହେ, ତା ମୁଣ୍ଡରେ ଟାକର ।
ନ ଦେଖି ଯେ ସାକ୍ଷୀ ହୁଏ, ତା ମୁଣ୍ଡରେ ଟାକର ।
ପଇସା ନଥାଇ ମୂଲାଇ ବସେ, ତା ମୁଣ୍ଡରେ ଟାକର ।
ପରନାରୀକୁ ଯେ ନିଠାଇ ଚାହେଁ, ତା ମୁଣ୍ଡରେ ଟାକର ।
ହରିଙ୍କ ନାମ ଦିନେ ନ ଭଜିଲେ, ନାଇ ମୁଣ୍ଡରେ ଟାକର ।

୨୧୦୨୪. ନ ଡେଇଁବ କୁଅ, ନ ଖେଳିବ ଜୁଅ,
ନ ପଶିବ ଦ୍ୱନ୍ଦେ , ନ ପଡିବ ଫାନ୍ଦେ,
ନ ଭୁଞ୍ଜିବ ସଞ୍ଜେ, ନଶୋଇବ ଗଞ୍ଜେ (= କ୍ରୟ ବିକ୍ରୟ ସ୍ଥାନ)
ଡକାଇର ମନ ରଞ୍ଜେ ।

୨୧୦୨୫. ନଦୀ ହୋଇ ଯେବେ ନ ଥାଏ ଜଳ,
ଗ୍ରାମ ହୋଇ ନାହିଁ ଗୋଳ ଚହଳ,
ଯୁବା ସ୍ତିରୀ ମୁଣ୍ଡେ ନ ଥିଲେ ବାଳ,
ବରଷା ରାତିରେ ନ ଥିଲେ ଜାଳ,
ପାଣି ଗଲେ ଯେବେ ବାନ୍ଧୀରି ଡାଳ,
ଖାଇବା ଦ୍ରବ୍ୟରୁ ବାହାରେ ବାଳ,
ବନ୍ଦ ବାନ୍ଧି ଯେବେ ନାହିଁ ପାଳ,
ଜମା‌ଜନ ଯେବେ ନ ଥାଏ ଶାଳ,
ଏଣୁରି ପିଠାରୁ ଉଠିଲେ ନାଳ,
ବୋଲେ ଡକାଇ ଏ କଥା ନିଷ୍ଫଳ ।

୨୧୦୨୬. ନଦୀରେ ପଶେ ଯେ ନ ଧରି ବାଡ଼ି,
ବ୍ରାହ୍ମଣର ଯେବେ ଛିଣ୍ଡା ସଂଘାଡ଼ି (= ପଇତା)
ଅଖ ନ ସଜାଡ଼ି ଯେ ଚାଳାଏ ଗାଡ଼ି,
ବାସି ଶେଯ ଛାଡ଼େ ଦିନ ଦି ଘଡ଼ି,
ଲୁଗା ନ ପିନ୍ଧଇ ଯେତୁ ସଜାଡ଼ି,
ବନ୍ଧୁଘର ଯାଏ ଦି' ଦିନ ଛାଡ଼ି,
ବୋଲେ ଦନାଇ ଏ ଅତି ଅନାଡ଼ି ।

୨୧୦୨୭. ନନ୍ଦ ବାନ୍ଧେ କୂଅ, କୁଳ ବାନ୍ଧେ ପୁଅ,
କାମତା ବାନ୍ଧେ ଭୂଅ, ପରକୁ ବାନ୍ଧେ ଝୁଅ,
ଅଫିମ ବାନ୍ଧେ ଗୁହ, ଚତୁରଙ୍ଗ ବାନ୍ଧେ ବୁଅ (=ସୈନ୍ୟବିହ୍ନ),
ଦନାଇ ବାନ୍ଧେ ଦୁଅ (=ପହଚା) ।

୨୧୦୨୮. ନନ୍ଦିଘୋଷ (= ଜଗନ୍ନାଥଙ୍କ ରଥ) ଯେବେ ଭାଙ୍ଗଇ ଘର,
ବାବାଜୀ ମାତାକୁ କଲେ ବାହାର ।
ଅତିଖରଚୀର ହେଲେ ନିଅଣ୍ଟ,
ନାଟୁଆର ଯେବେ ପଡଇ କଣ୍ଠ ।
ବନଜୀବ ଯେବେ ଖାଆନ୍ତି କ୍ଷେତ,
ବଡ ଦେଉଳରେ ବାଜିଲେ ବେତ ।
ଝଡ ବରଷାରେ ଯେ ଡଙ୍ଗା ବୁଡି,
ପୋଷିଲା ଶୁଆ ଯେବେ ଯାଏ ଉଡି ।
ବଇରାଗୀ ଯେ ନ କଲେ ଉପାୟ,
ରାଜା ହୋଇ ଯେବେ କରେ ଅନ୍ୟାୟ ।
ଢଣ୍ଟ ଯେବେ ନ ରଖଇ ମାହାରୀ,
ବୋଲେ ଦନାଇ ନାହିଁଟି ଗୁହାରି ।

୨୧୦୨୯. ନଂପୁସକ କେବେ ରମଣ ଇଚ୍ଛେ କି
ବେଶ୍ୟା ଲୋଡଇ କି ହେବାକୁ ବାହା,
ବୈଷ୍ଣବେ ଇଚ୍ଛେ କି ଆମିଷ ବ୍ୟଞ୍ଜନ
ଲେଖନକାର କି ଇଚ୍ଛଇ ଦାଆ ।
କର୍ପୂର ଚନ୍ଦନ ଲୋଡେ କି ଘୁଷୁରି,

ସପତଣୀ ଲୋଡେ କେଉଁ ରମଣୀ ।
ଶାଗୁଣା ଇଚ୍ଛେ କି ପକ୍ୱ ଚୂତଫଳ
ତସ୍କର ଇଚ୍ଛେ କି ଚନ୍ଦ୍ର ରଜନୀ ।
ପାଷାଣ୍ଡ ଇଚ୍ଛେ କି ହରିଭକ୍ତ ରସ
ରାଣୀ ଇଚ୍ଛଇ କି ହେବାକୁ ଦାସୀ ।
ଜୀବମାତ୍ରକେ ରମଣ ଇଚ୍ଛଇ,
ଧନ ଇଚ୍ଛଇ କି ଯୋଗୀ ସନ୍ନ୍ୟାସୀ ।
ସତୀ ନାରୀ କେବେ ଇଚ୍ଛଇ କି ଜାର,
ଛାଗଳ ଇଚ୍ଛେ କି ଗଙ୍ଗା ସ୍ନାହାନ,
ବୋଲେ ଦନାଇ କହିଲେ କି ହେବ,
ଯାହାର ପ୍ରକୃତି ଅଟେ ଯେସନ ।

୨୧୦୩୦. ନଳିତା କାଟେ ଯେ ପାକଳ ଫଳ,
ମଇତ୍ର ବସଇ ଦେଖିଣ ଖଳ,
ରାଣ୍ଡଙ୍କ ସଙ୍ଗେ ଯେ ଚଳ ପ୍ରଚଳ,
ଫରି ଖେଳଇ ନଜାଣି କଳ,
ସ୍ୱାମୀର କଥାରେ ଯେ କରେ ଛଳ,
ଭାଗୁଆ କ୍ଷୀର ହେଲେ ତଳ ତଳ,
ଖଡି ଟାଣ ନାହିଁ ଯେ କଷେ ନଳ,
ବାଟରେ ଘାଟରେ ଯେ ଛାଡେ ମଳ,
ଘରକୁ ଆସେ ଠିଆକରି ହଳ,
କହେ ଦନାଇ ଏ ବଡ ଅକଳ ।

୨୧୦୩୧. ନ ମୁଦଇ ଯେହୁ ଘରର ଆଡି,
ଚଢଇ ଯେହୁ ଦରଭଙ୍ଗା ଗାଡି,
ଗୁଣ ଛେଦରା ପଇତା ସଂଘାଡି,
ପେଜ ଗାଳି ନାଳେ ଦିଏ ଅଜାଡି,
ଉଚ୍ଚଜାତି ହୋଇ ଖାଇଲେ ତାଡି,
ବଣିଆ ରଖେ ଯେବେ ନିଶ ଦାଢି,

ଗୁରୁଜନଙ୍କୁ ଯେ ମାରେ ଧପାଡି,
ବୋଲେ ଦନାଇ ବାଜିଯାଏ ବାଡି ।

୨୧୦୩୨. ନଙ୍ଗୀ ଧରି ଯେତୁ ନ ଜାଣେ ଲାଖ,
କଳିବେଳେ ଭାଇ ନ ମାଡେ ପାଖ,
ବାରବର୍ଷ ପୁଅ ଲୋଡଇ କାଖ,
ଆପଣା ମନକୁ ଆପେ ଚଲାଖ,
ବଡ ଦୋକାନକୁ ନାହିଁ ଗରାଖ,
କହେ ଦନାଇ ଏ ନିଲଠା ମାଖ (=ଆଡ଼ମ୍ବର) ।

୨୧୦୩୩. ନ ଲୋଡୁଣୁ ଯେତୁ ମଧସ୍ଥ ହୁଏ,
ଧନ ରଖି ଯେତୁ ହାତ ପତାଏ,
ଦରିଦ୍ର ଲୋକ ରହେ ବନ୍ଧୁଘରେ,
ନାରୀ ଥାଇ ଯେ ପରଦାର କରେ,
ନାରୀ ବାପଘରେ କାଟେ ବୟସ,
ରୋଗୀ ଛାଡି ଯେ ଦେଖେ ଯାତ୍ରାରସ,
ଋଣ ପାଇଁ ଯେ ମିତ୍ର ଘର ଧାଏଁ,
ଶ୍ୱଶୁର ଘରେ ବହୁକାଳ ରହେ,
କଥାଗପି ବସେ ନ ସାରି ଧନ୍ଦା,
ବୋଲେ ଦନାଇ ଏ ଅକଲଅନ୍ଧା ।

୨୧୦୩୪. ନଷ୍ଟ ଗୁଆ ଦକ୍ଷିଣା ବାୟେ (= ଗୁଆଚଅଁର ଧଇଲାବେଳେ ଦକ୍ଷିଣା ପବନ),
ଝିଅ ନଷ୍ଟ ଦୋଚାରୁଣୀ ମାୟେ,
ବୋହୂ ନଷ୍ଟ ପରର ଘରେ,
ପୁଅ ନଷ୍ଟ ପର ଦାରାରେ,
ପିତା ନଷ୍ଟ ଯେ କରଇ ଋଣ,
ରତନ ନଷ୍ଟ ଯେବେ ଥାଏ ଖୁଣ,
ଦେହ ନଷ୍ଟ ପିଉବୃଦ୍ଧିରେ,
ଦନାଇ ନଷ୍ଟ ପର ବୁଦ୍ଧିରେ ।

୨୧୦୩୫. ନାଚୁଆ ଦାରୀର ପାଚୁଆ ଗୋଡ,
ଗୁଡିଆ ଦୋକାନୀ ହାତରେ ଖୋଡ ( = କୁଷରୋଗ),

ଝୋଟୁଅ ଭିକାରୀ ଆଣୁଆ ତୋଡ,
ବିହନ ବୁଣେ ନ ଧରି ଦିଓଡ (= ଚାଷ),
ବୁଆ ବିବାହୀର ମୁହଁରେ ଥୋଡ,
ପାଇଟିଆଙ୍କ ନ ପାଏ ବୋଅଡ (= ଭାତ),
ହଗୁରା ପିଲା ନ ଛାଡିଲେ କୋଡ,
ବୋଲେ ଦନାଇ ଏ ବଡ ଅକଡ ।

୨୧୦୩୬. ନାହାକୁ କାତ, ସାପକୁ ଗାତ;
ପିଲାକୁ ଆତ, ଭାଇକୁ ଭାତ;
ନାରୀକୁ ଯାତ, ଚେଙ୍ଗକୁ ଖାତ;
ଖରାକୁ ବାତ,
ଦନାଇ କହେ - ବଡ ଯାଗାତ (=ଯୋଗାଏ) ।

୨୧୦୩୭. ନିଜନ ହୋଇ ରହେ ଯେ ଚାକର,
ଦରଶନ ଭିତ ଯେଉଁ ଠାକୁର,
ହାତକୁ ବଡ ଯେଉଁ ଭାକୁର (= ମାଛ),
ନିର୍ଭୟା ହୋଇଣ ଯେଉଁ କୁକୁର,
ବୋଲେ ଦନାଇ ଏ ବଡ ଉକୁର ( = ଭଲ) ।

୨୧୦୩୮. ନିଜ ପାଉଣାରୁ ଅଧିକ ନିଏ,
ତାକୁ ଜାଣିବ ଅଧମ ।
ନିଜ ପାଉଣାରୁ ସମାନ ନିଏ,
ତାକୁ ଜାଣିବ ମଧମ ।
ନିଜ ପାଉଣାରୁ କମଟି ନିଏ,
ତାକୁ ଜାଣିବ ଉତ୍ତମ ।
ପର ପାଇଁ ଯିଏ ଗଣ୍ଠିରୁ ଦିଏ,
ଦନାଇ ବୋଲଇ ସୁଧମ ।

୨୧୦୩୯. ନିଜ ହାତରେ ଖାଅ ଭାଙ୍ଗିପାନ,
ନିଜ ଘରେ କୁଟି ଖାଇବ ଧାନ,
ନିଜ ବଳ ବୁଝି ଜାଡିବ ତାନ,
ନିଜେ ପରଖି ଯେ ଚଢିବ ଯାନ,

ନିଜ ସ୍ନେହିଙ୍କୁ ପକାଇବ ଆନ,
ନିଜ ଇଚ୍ଛା ଥିଲେ କରିବ ଦାନ,
ବୋଲେ ଦନାଇ ସୁଖର ଏମାନ ।

୨୧୦୪୦. ନିର୍ଦ୍ଦୋଷ ଲୋକ ଯେବେ ଦିଏ ଡଣ୍ଡ,
ଦୋଷୀ ଲୋକ ଯେବେ ନ ପାଏ ଦଣ୍ଡ,
ରାଜା ପୁଅ ଯେବେ ହୁଏ ଉଦଣ୍ଡ,
ଗହଣା ଭଣ୍ଡାରୀ ହୁଏ ବିଖଣ୍ଡ (= କଟୁଭାଷୀ),
ରାଜଗୁରୁ ଯେବେ ହୁଅନ୍ତି ଭଣ୍ଡ,
ରାଜା ରାଗରେ ହୁଏ ପରଚଣ୍ଡ,
ବଟରଗାଇ ନ ପାଆନ୍ତି ଷଣ୍ଢ,
ବୋଲେ ଦନାଇ ସେ ରାଇଜ ଭଣ୍ଡ ।

୨୧୦୪୧. ନୀରୋଗ ଲୋକର ନିଦ ଚାଉଁ ଚାଉଁ,
ତାକୁ ଜାଣିବ ଚିନ୍ତାଳ (=ଚୋଠା) ।
ଘରକାମ ଛାଡି ଦୁଆର ବସା,
ତାକୁ ଜାଣିବ ଛିଣ୍ଡାଳ ।
ସଉଦା ନକରି ହାଟ ଭ୍ରମଣି,
ତାକୁ ଜାଣିବ ଚିଟାଳ (=ବ୍ୟୟକୁଣ୍ଠ),
ଗାଧୁଆ ତୁଠରେ ଲହରପହର
ତାକୁ ଜାଣିବ ବିଟାଳ (=ଦୁଶ୍ଚରିତ୍ର) ।
ହିତକଥାକୁ ଯେ ପିତା ମଣଇ,
ଦନାଇ ବୋଲଇ ଧୀଟାଳ (=ଯାହାର ବୁଦ୍ଧି ବିଚଳିତ)

୨୧୦୪୨. ନିଚେତା ଓଖର କେ ଦିଏ ପିଙ୍ଗି ?
କୋଢିଆ (=କୁଷ୍ଠରୋଗୀ) ସାଙ୍ଗରେ କେ ହୁଏ ସଙ୍ଗୀ ?
ସତୀ କାର ବାକ୍ୟେ ଯାଏ କି ମଙ୍ଗି ?
ଚୋଳିଲା ଘରକି କେ ଦିଏ ଭାଙ୍ଗି ?
ଚିନ୍ତାଗ୍ରସ୍ତ ଲୋକ ଥାଏ କି ରଙ୍ଗୀ ?
ଚିରରୋଗୀ ନାରୀ କି ନବରଙ୍ଗୀ ?
ଛାର ଦନାଇର ଥାଏ କି ଅଙ୍ଗୀ ? (= ଗର୍ବ) ?

୨୧୦୪୩. ନିର୍ଲ୍ଲଜୀ ନାରୀ ଯା, ଋଣ ବହୁତ;
ଜ୍ଞାତିରେ ଅପଚ, ମୁରୁଖ ସୁତ;
ଅଲସୁଆ ଭାଇ, ଦରିଦ୍ର ଜୋଇଁ;
ରଜାଙ୍କର ଯେହୁ, ବିଅଇ ନାହିଁ;
କୃପଣ ପ୍ରଭୁ, ଘରପାଖେ ଘାଇ;
ବୋଲେ ଦନାଇ ତାର ରକ୍ଷା ନାହିଁ ।

୨୧୦୪୪. ନିର୍ଲ୍ଲଜ ହୋଇଣ ଯେଉଁ ଭିକାରୀ,
ହସକୁଳୀ ହୋଇ ଯେଉଁ ମାହାରୀ,
କଅଁଳ-କୁହା ହୋଇ ଯେ ବେପାରୀ,
ଆଖି ଛଟକିଆ ଯେ ନୃତ୍ୟକାରୀ,
ଦନାଇ ଚିଲ୍ଲାଏ -
ଅଣ୍ଟାରୁ ପଇସା ନିଏ ଓଟାରି ।

୨୧୦୪୫. ନୂଆ ବୋହୂର ଯେ ତୁଣ୍ଡଟି ଖର,
ନୂଆ ଗାଈ ଯେବେ ନ ମଣେ ଘର;
ନୂଆ ବସନ ଚନ୍ଦାଘରୁ ଚିରା,
ନୂଆ ବନ୍ଧୁ ହୋଇ ନାହିଁ ପଚରା,
ନୂଆ ଗୁତ ଯେବେ ହୁଅଇ ପିତା,
ବିଦେଶକୁ ଯାଏ ନୂଆ ଘଇତା,
ନୂଆ ଘର ବୁଅ ଧଇଲେ ଘୁଣ,
ବୋଲେ ଦନାଇ ଏ ନୁହେଁ କାରଣ ।

୨୧୦୪୬. ନୂଆ ବୋହୂ ଯେବେ ନ ଜାଣେ ରାନ୍ଧି,
ସଧବା ନଥାଏ କେଶକୁ ବାନ୍ଧି,
ମଧ୍ୟସ୍ଥ ହୋଇ ଯେ ନ ଜାଣେ ଫନ୍ଦି,
ବୋଲେ ଦନାଇ ଏ ହୁଅନ୍ତି ଧନ୍ଦି ।

୨୧୦୪୭. ନୂଆ ଗଣିକା ଯେ ପୁରୁଣା ବୈଦ୍ୟ,
ନୂଆ ରସକୋରା ଗୋକ୍ଷୀର ସଦ୍ୟ,
ନୂଆ ବାନ୍ଧବ ଯେ ପୁରୁଣା ତୈଳ,
ନୂତନ ଭୂଷଣ ପୁରୁଣା ଶୌଳ (=ଶେଉଳ ମାଛ),

ଦନାଇ କହି -
ପହଳୀରେ ନୂଆ ପୁରୁଣା ନାହିଁ ।

୨୧୦୪୮. ନୃପତି ହୋଇ ଯାର ନାହାନ୍ତି ମନ୍ତ୍ରୀ,
ପଇସା ନ ଧରି ହାଟକୁ ଯାନ୍ତି,
ଠକ ଠାକ ନାହିଁ ଯେବଣ ତନ୍ତ୍ରୀ,
କହେ ଦନାଇ ଏ ଅତି କୁଜାତି ।

୨୧୦୪୯. ନୃପତି ହୋଇ ଯେ ରାଜ୍ୟ ନ ପାଳନ୍ତି
ଲଜ୍ଜାବତୀ ଯେବେ ଦାରୀ ହୁଅନ୍ତି,
ଚିନ୍ତା ନ କରି ଯେ କଥା କହନ୍ତି,
ରାତି ଅଧରେ ଯେ ଭାତ ଖାଆନ୍ତି,
ଗୁରୁବାରେ ରାମଲୀଳା ଗାଆନ୍ତି,
ବୋଲେ ଦନାଇ ଏ ହୀନ ବୋଲାନ୍ତି ।

୨୧୦୫୦. ନୌଶାସ୍ତ୍ର ନ ପଢି ହୁଏ ଜିରାଟ (= ନୌଚାଳକ),
ଶସ୍ତ୍ର ନ ଉଣ୍ଡି ଯେ ଚଳାଏ ଥାଟ,
ଅଖଟୁ ଲୋକ ଗୋଷ୍ଠୀରେ ପହଁରେ,
(ଅନ୍ୟ ଲୋକମାନଙ୍କ ସାଙ୍ଗରେ ପହଁରେ, ବୁଡିଗଲେ ଅନ୍ୟଲୋକଙ୍କୁ ଧରି ପକାଏ)
ଡାକୁ (=ଡକାଏତ) ପକ୍ଷେ କଟା ପାଇକ ଘରେ,
ଅମଣିଆ ଗୋରୁ ଶଗଡ ବାହେ,
ତୁମ୍ବ ନ ପରଖି ନିଆଁ ଲଗାଏ ।
( ପୁରୀ ଶସନମାନଙ୍କରେ ଲମ୍ବା ଚଉଡା ଟାଣ କାଠରେ ବଡ ଗାତ ଖୋଳି ତା ଭିତରେ ବାରୁଦ ଖୁନ୍ଦି ବାଣ କରନ୍ତି । ଘଡିବାଣ ପରି ତହିଁରୁ ଝରା ବହୁତ ଦୂରକୁ ଉଠେ । ସେ କାଠ ଅକସ୍ମାତ ଫାଟିଗଲେ ବହୁତ ଲୋକ ମରନ୍ତି ।)
ଅଭ୍ୟାସ ନ କରି ଲାଉଇ ନଳୀ (=ବନ୍ଧୁକ)
ବନଟି ବୁଲାଏ ନ ଜାଣି ଖେଳି,
ପରକୁ ମାରି ନିଜେ ମରେ ସେହି,
ପହଳୀ ପ୍ରବନ୍ଧେ ଦନାଇ କହି ।

୨୧୦୫୧. ନୌ ଶାସ୍ତ୍ର ନ ପଢ଼ି ହୁଏ ଜିରାଟ (= ନୌଚାଳକ)
ଶସ୍ତ୍ର ନ ଭଣ୍ଡି ଯେ ଚଳାଏ ଥାଟ

ଅଖଟୁ ଲୋକ ଗୋଷ୍ଠୀରେ ପଶିଁରେ (=ଅନ୍ୟ ଲୋକ ସାଙ୍ଗରେ ପଶିଁରେ,
ବୁଡ଼ିଗଲେ ଅନ୍ୟ ଲୋକକୁ ଧରିପକାଏ ।)
ଡାକୁ (=ଡକାଏତ) ପଶେ କଟା ପାଇକ ଘରେ
ଅମଣିଆ ଗୋରୁ ଶଗଡ଼ ବାହେ
ତୁମ୍ବ ନ ପରଖି ନିଆଁ ଲଗାଏ ।
ଅଭ୍ୟାସ ନ କରି ଲାଛଇ ନଳୀ (=ବନ୍ଧୁକ)
ବନାଟି ବୁଲାଏ ନ ଜାଣି ଖେଳି
ପରକୁ ମାରି ନିଜେ ମରେ ସେହି
ପଚଳି ପ୍ରବନ୍ଧେ ଦନାଇ କହି ।
(ତୁମ୍ବ ଅର୍ଥାତ୍ - ପୁରୀ ଶାସନମାନଙ୍କରେ ଲୟା ଚଉଡ଼ା ଟାଣ କାଠରେ ବଡ଼ ଗାତ ଖୋଳି ତା ଭିତରେ ବାରୁଦ ଖୁନ୍ଦି ବାଣ ତିଆରି କରନ୍ତି । ତହିଁରୁ ନିଆଁ ଝୁଲ ବହୁତ ଉପରକୁ ଉଠେ । ସେ କାଠ ଅକସ୍ମାତ୍ ଫାଟିଗଲେ ନିଆଁ ଛିଡ଼ିକି ପଡ଼େ । ଫଳରେ ବହୁତ ଲୋକ ଖଣ୍ଡିଆ ଖାବରା ହୋଇ ମରନ୍ତି ।)

୨୧୦୫୨. ନଖରେ ଭୂଇଁରେ କାଟଇ ଗାର,
ଦର ଧୂଆ ପଦେ ପଶଇ ଘର,
ଦାନ୍ତକୁ ଭଲ କରି ଯେ ନ ଘଷେ,
ମଇଳିଆ ଲୁଗା ପିନ୍ଧିବାକୁ ରସେ,
ନୁଖୁରା ରଖଇ ମୁଣ୍ଡର ବାଳ,
ଘୋର ନିଦ୍ରା ଯାଏ ସଞ୍ଜ ସକାଳ,
ନଙ୍ଗଳା ହୋଇ ଯେ ପହୁଡ଼ଇ,
ଅତି ଭୋଜନ ହାସ୍ୟକୁ କରଇ,
ନିଜ ଦେହରେ ବସିବା ପୀଡାରେ,
ହାତ ଥାପୁଡ଼ି ତାଳ ଲୟ କରେ,
କୁବେର ପରାଏ ହୋଇଲେ ଧନୀ,
ବୁଲଇ ସଦା ଭିକ୍ଷା ପାତ୍ର ଘେନି,
(ଦାରୀକୁ ବିଟପୀ ଗାଳି ସୁଆଦ)
ନିଲଠା ହୋଇଣ ଯେଉଁ ଭିକାରୀ,

ହସକୁଳୀ ହୋଇ ଯେଉଁ ମାହାରୀ,
କଅଁଳ କୁହା ହୋଇଯେ ବେପାରୀ,
ଆଖି ଛଟକିଆ ଯେ ନୃତ୍ୟକାରୀ,
ଅଣ୍ଡାରୁ ପଇସା ନିଏ ଓଟାରି,
ନିଉନ ହୋଇ ଯେ ଗୃହେ ଚାକର,
ନିର୍ଭୟା ହୋଇ ଯେ ବଣ କୁକୁର,
ପବଛଡା ଥାଏ ଯେଉଁ ଆଖୁର,
ପୁଅମୁଣ୍ଡ ପୋତି ରହେ ଆଗର,
କଳି ଗୋଳ ନାହିଁ ଯେବଣ ଘର,
ତେଲ ବୁଡବୁଡୁ ଯେଉଁ ଆଚାର,
ସମଦରଶୀ ସଙ୍ଗରେ ବିଚାର,
ସବୁ ପଦାର୍ଥ ମିଳେ ଯେ ବଜାର,
ନାଟବେଳେ ଦାରୀର ଯେ ଆଖିଠାର,
ବଡ ପୋଖରୀ ଥାଏ ଯେ ପଡାର,
ପାଲା ବାଲାଙ୍କର କଥା ଚାତର,
ବାଡି ଖେଳରେ ଜାଣେ ଯେ ଇଦର,
ବରତ ନଦିଏ ମାସ ଅଧର,
ପୁଷ ମାସରେ କରେ ଯେ ବେପାର,
ଖିଅର ହୁଅଇ ସୋମ ବୁଧର,
ଦନାଇ କହେ, ଏସବୁ ନିକର ।



# ରୂଢ଼ିପ୍ରତ୍ୟୟ

୨୧୦୫୩. ନଅଖାଇ ପଣା - କୌଣସି ବ୍ୟକ୍ତିର ମୃତ୍ୟୁର ନବମ ଦିବସରେ ବ୍ରାହ୍ମଣ ଓ ଜ୍ଞାତି - କୁଟୁମ୍ବମାନଙ୍କୁ ଦିଆଯିବା ଚକଖିଆ ସାମଗ୍ରୀ ।

୨୧୦୫୪. ନଅଙ୍କିଆ - ଦୁର୍ଭିକ୍ଷ ପ୍ରପୀଡ଼ିତ, ଅତି ରଙ୍କାଳିଆ ।

୨୧୦୫୫. ନଅ ଛଅ - ବହୁ ସଂଖ୍ୟକ, ଅନେକ ।

୨୧୦୫୬. ନଅ ଛଅ କହିବା - ମିଥ୍ୟା କଥା କହିବା ।

୨୧୦୫୭. ନଅ ଛୁଇଁବା - ସାପ କାମୁଡ଼ିବା ।

୨୧୦୫୮. ନଟା ଛଅଟା - ଅନେକ, ବହୁ ସଂଖ୍ୟକ ।

୨୧୦୫୯. ନଅଣ୍ଠ ଥଣ୍ଠ - ଅନଟନ ଓ ପ୍ରଚୁର ହେବା ଅବସ୍ଥା ।

୨୧୦୬୦. ନଅ ଚୁଂଣ ଛଅ ଭଜା - ନାନା ପ୍ରକାର ସ୍ୱାଦିଷ୍ଟ ଭୋଜନ ।

୨୧୦୬୧. ନଅର କୋଳି - ନରକୋଳି ।

୨୧୦୬୨. ନଅର ଚଢ଼ି - ଏ ପ୍ରକାର ଚଢ଼ି ।

୨୧୦୬୩. ନଅର ଦାରୀ - ରାଜାଙ୍କ ରକ୍ଷିତା ବେଶ୍ୟା ବା ନର୍ତ୍ତକୀ ।
(ନଅର ଦାରୀ ଦାଣ୍ଡରେ ବୁଲେ,
ରାଜା ବିଜେ କଲେ ଦାଣ୍ଡ କବାଟ ପଡ଼େ ।)

୨୧୦୬୪. ନଅର ବଳିତା - ସୂର୍ଯ୍ୟ, ଚନ୍ଦ୍ର ।

୨୧୦୬୫. ନଅର ମୁଥା / ନାଗର ମୁଥା - ଏକ ପ୍ରକାର ବଡ ମୁଥା ।

୨୧୦୬୬. ନଇବେଦ୍ - ନୈବେଦ୍ୟ, ଭୋଗ ।

୨୧୦୬୭. ନଇପଠା - ନଈକୂଳରେ ବା ମଝିରେ ପଟୁ ପଡି ଉଚ୍ଚ ଉର୍ବର ଭୂମି ।

୨୧୦୬୮. ନଈଶୁଆ - ଯେଉଁ ଲୋକ ନଈରେ ଶୁଏ । (ଗାଳିଦେବା ଅର୍ଥରେ)

୨୧୦୬୯. ନଉତି ଖେଳ - ଦୋଳ ପୂର୍ଣ୍ଣିମା ସମୟରେ ଗଉଡମାନେ ଲଉଡି ଧରି ଯେଉଁ ଖେଳ ଖେଳନ୍ତି ।

୨୧୦୭୦. ନଉବଦ୍ - ଯୋଡି ନାଗରା ।

୨୧୦୭୧. ନଉସନ୍ଧାଧିକ - ଖୁବ ନିପୁଣ, ଚତୁର ।

୨୧୦୭୨. ନଏଦ୍ ତରା - ନଦୀ ତୀର ।

୨୧୦୭୩. ନଏଲାଟା - ଅତି ନିସ୍ୱଃ ।

୨୧୦୭୪. ନକ୍ସାଲ୍ - ପଶ୍ଚିମବଙ୍ଗର ନକ୍ସାଲ ବାଡ଼ିରୁ ଜନ ଶୋଷଣ ବିରୁଦ୍ଧରେ ବାମପନ୍ଥୀ ଗୋଷ୍ଠୀ ଦ୍ୱାରା ଆରମ୍ଭ ହୋଇଥିବା ଆନ୍ଦୋଳନ । ପରେ ଏହା ନକ୍ସାଲ୍‌ପନ୍ଥୀ କାର୍ଯ୍ୟକଳାପ ରୂପେ ପରିଚିତ ହେଲା ।

୨୧୦୭୫. ନକଟକ - ଅତି ସାମାନ୍ୟ ମାତ୍ର ।

୨୧୦୭୬. ନକଠକ - ନଗଦ କାରବାର, ରୋକ୍‌ଠୋକ୍ ।

୨୧୦୭୭. ନକଠକବାହାପିଆ - ନିଆଁଗିଳା, ଘୋର ମିଥ୍ୟାବାଦୀ ।

୨୧୦୭୮. ନକଡ ଛକଡ - ଗୋଳମାଳ, ଅଡୁଆ ।

୨୧୦୭୯. ନକଡା ଛକଡା - ଅତି ହେୟ, ନଗନ୍ୟ, ମୂଲ୍ୟହୀନ ।

୨୧୦୮୦. ନକରାତ୍ମକ - ଅସ୍ୱୀକୃତିପୂର୍ଣ୍ଣ, ବିରୁଦ୍ଧ, ନାସ୍ତିବାଚକ ।

୨୧୦୮୧. ନକ୍ଷତ୍ର ଏଣ୍ଡୁରୀ - ଛୋଟ ଏଣ୍ଡୁରୀ ପିଠା ।

୨୧୦୮୨. ନଖ୍ୟୁଳିଆ - ଅଳ୍ପ ଝୋଳ ଥିବା ତରକାରୀ ।

୨୧୦୮୩. ନଖ୍ ବିରଲି / ନଖକୋଣୀ - କଣନଖା, ନଖ କୋଣରେ ହେବା ଘାଆ ।

୨୧୦୮୪. ନଖିବିସା - ନଖ ଘା ।

୨୧୦୮୫. ନଖମୁଡି - ନଖର ଅଗ୍ରଭାଗ ।

୨୧୦୮୬. ନଖରୁଳି /ନଖହରଣୀ - ନହୁରୁଣୀ ।

୨୧୦୮୭. ନଖ ଉଷୁମ - ସାମାନ୍ୟ ତାପ ।

୨୧୦୮୮. ନଖାନଖି - ନଖଦ୍ୱାରା ପରସ୍ପରକୁ ଆକ୍ରମଣ କରିବା ।

୨୧୦୮୯. ନଖିତହଁରି - ସରୁ ଧଡିଆ ଲୁଗା ।

୨୧୦୯୦. ନଗଦ ଆସ୍ତି - ଚଳନ୍ତି ସମ୍ପତ୍ତି ।

୨୧୦୯୧. ନଙ୍ଗଲ୍ ବୁଡା - ତାରାପୁଞ୍ଜ ବିଶେଷ । ଏମାନେ ଉଦୟ ନ ହେଲେ ଲଙ୍ଗଳ ଯୋଚନ୍ତି ନାହିଁ । ସମ୍ବଲପୁରର ଖଡ଼ିଆଲମାନେ ବୈଶାଖମାସ ନହେଲେ ଲଙ୍ଗଳ ଯୋଚନ୍ତି ନାହିଁ; ଅର୍ଥାତ୍ ଧାନବୁଣାବୁଣି କାମ କରନ୍ତି ନାହିଁ। ଏଣୁ ଏହି ତାରାପୁଞ୍ଜକୁ 'ଲଙ୍ଗଲ୍ ବୁଡ଼ା' କହନ୍ତି ।

୨୧୦୯୨. ନଙ୍ଗା ଘୋଡା ପାଉଛା- ଚାରି ଦଉଡି କଟା ବ୍ୟକ୍ତି । ଏକାକୀ ବ୍ୟକ୍ତି ।

୨୧୦୯୩. ନଚକାଇବା - ଲହଲହ କରିବା । ଝଙ୍କେଇ ଝଙ୍କେଇ ବଳପୂର୍ବକ ଟାଣିବା ।

୨୧୦୯୪. ନଜର ପକାଇବା - ପାପ ଦୃଷ୍ଟି, ଲୋଭ ଦୃଷ୍ଟି ।

୨୧୦୯୫. ନଜବରବନ୍ଦୀ - ଅଟକ ରଖିବା । କଇଦି କରି ରଖିବା ।

୨୧୦୯୬. ନଜର ବାଗ୍ - ବଡଲୋକଙ୍କ ଗୃହ ସଂଲଗ୍ନ ପ୍ରମୋଦ ଉଦ୍ୟାନ ।

୨୧୦୯୭. ନଜରବାଜି - କୁହୁକ, ଭେଲିକି ।

୨୧୦୯୮. ନଜରାନା - ଭେଟି, ଉପଢୌକନ ।

୨୧୦୯୯. ନଟକୁଟିଆ / ନଟଖଟ / ନଖ ଖଟିଆ - ଗୋଲମାଲିଆ, ଅଡୁଆ, ଦୁଃଷ୍ଟ ।

୨୧୧୦୦. ନଟ ନାଗର / ନଟବର- ଶ୍ରୀକୃଷ୍ଣ ।

୨୧୧୦୧. ନଟନାରୀ - ଅଭିନେତ୍ରୀ, ବେଶ୍ୟା, ନର୍ତ୍ତକୀ, ନଷ୍ଟା ସ୍ତ୍ରୀ, ନାଟକର ମୁଖ୍ୟ ନାୟିକା ।

୨୧୧୦୨. ନଟେଇ ପଟେଇ - ଛଟପଟ, ଆସକ୍ତି ପ୍ରେମ ସମ୍ପର୍କ ।

୨୧୧୦୩. ନଟେଶ୍ୱର - ମହାଦେବ, ତାଣ୍ଡବ ନୃତ୍ୟକାରୀ ଶିବ ।

୨୧୧୦୪. ନଥି ଦୋରସ୍ତ କରିବା- ନଥିର ସମସ୍ତ କାଗଜ ପତ୍ର ଧାରାମତେ ସଜ୍ଜିତ କରି ରଖିବା ।

୨୧୧୦୫. ନଦିଆ ଚାନ୍ଦ - ଶ୍ରୀ ଚୈତନ୍ୟ (ନବଦ୍ୱୀପର ଚନ୍ଦ୍ର ସ୍ୱରୂପ) ।

୨୧୧୦୬. ନନ୍ଦନନ୍ଦନ - ନନ୍ଦଙ୍କର ପୁତ୍ର ଶ୍ରୀକୃଷ୍ଣ ।

୨୧୧୦୭. ନନ୍ଦନନ୍ଦିନୀ - ବିଜୁଳି କନ୍ୟା, ଦୁର୍ଗା । (କଥିତ ଅଛି - ଦୁର୍ଗା ନନ୍ଦଙ୍କ ଔରସରେ ଯଶୋଦାଙ୍କ ଗର୍ଭରୁ କନ୍ୟାରୂପେ

ଜନ୍ମିଥିଲେ । ବାସୁଦେବ ଦେବକୀଙ୍କ ଗର୍ଭଜାତ ଶ୍ରୀକୃଷ୍ଣଙ୍କୁ ଆଣି ଯଶୋଦାଙ୍କ କୋଳରେ ରଖି ତାଙ୍କ କୋଳରୁ ଏହି କନ୍ୟାକୁ ନେଇ କଂସର ବନ୍ଦୀଶାଳାରେ ଦେବକୀଙ୍କ କୋଳରେ ରଖିଥିଲେ । କଂସ ଏହାଙ୍କୁ ଧରି କଚାଡ଼ିବା ସମୟରେ ସେ କଂସ ହାତରୁ ଖସିଯାଇ ଶୂନ୍ୟରେ ଉଭେଇ ଗଲେ । ସେ ପୂର୍ବଜନ୍ମରେ ସତୀ, ନନ୍ଦଗୋପ ଦକ୍ଷପ୍ରଜାପତି ଓ ଯଶୋଦା ଦକ୍ଷପତ୍ନୀ ଥିଲେ । )

୨୧୧୦୮. ନଫର ଚାକର - ଚାକର ଆଦି ।

୨୧୧୦୯. ନଫରନଫର - ଜବରଦସ୍ତି ଆତ୍ମୀୟତା, ଦେଖାଣିଆ ଭାବ ।

୨୧୧୧୦. ନବଗୁଞ୍ଜରଣ - ନଅଗୋଟି ପଶୁପକ୍ଷୀଙ୍କର ଭିନ୍ନ ଭିନ୍ନ ଅଙ୍ଗ ବିଶିଷ୍ଟ କାଳ୍ପନିକ ଜୀବ ବିଶେଷ । ଯଥା - ବୃଷଭର ଚୂଳ, ସାପ ଲାଙ୍ଗଳ, ମଣିଷର ପଦ୍ମଫୁଲ ଧରିଥିବା ହାତ, କୁକୁଡ଼ାର ମୁଣ୍ଡ, ମୟୂର କଣ୍ଠ, ସିଂହ କଟି, ବାଘ ପାଦ, ଅଶ୍ୱପାଦ ଓ ହସ୍ତୀପାଦ । ମହାଭାରତ ସମୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହିରୂପରେ ସାକ୍ଷାତ କରିଥିଲେ ।

୨୧୧୧୧. ନବଜ କରିବା - ଥଟ୍ଟା କୌତୁକ କରିବା ।

୨୧୧୧୨. ନବ ଦୁରୁଗା - ଛଇଳୀ ସ୍ତ୍ରୀ ।

୨୧୧୧୩. ନବ ପଲ୍ଲିକା - ପ୍ରଥମ ରଜସ୍ୱଳା ହୋଇଥିବା ବାଳିକା ।

୨୧୧୧୪. ନବମ ଦଶା - ପ୍ରାଣରୋଧ ଅବସ୍ଥା,ମରଣାତକ ଅବସ୍ଥା । କାମଜଦଶା ଦଶଗୋଟି ଯଥା - ଅଭିଳାଷ, ଚିନ୍ତା, ସ୍ମୃତି, ଗୁଣକଥନ, ଉଦ୍‌ବେଗ, ପ୍ରଳାପ, ଉନ୍ମାଦ, ବ୍ୟାଧି, ଜଡ଼ତା ବା ମୂର୍ଚ୍ଛା ଓ ମରଣ । ଶରୀରର ଦଶ ଦଶା, ଯଥା - ଗର୍ଭବାସ, ଜନ୍ମ, ବାଲ୍ୟ, କୌମାର, ପୌଗଣ୍ଡ, ଯୌବନ, ସ୍ଥାବିର୍ଯ୍ୟ, ଜରା, ପ୍ରାଣରୋଧ ଓ ବିନାଶ ।

୨୧୧୧୫. ନବାବୀ କାଇଦା - ବଡଲୋକଙ୍କ ଉପଯୁକ୍ତ ଚଳଣି ବା ରୀତି ।

୨୧୧୧୬. ନବାବୀ କାରଖାନା - ବଡଲୋକୀ ଆଡମ୍ବର ।

୨୧୧୧୭. ନଭୂତୋ ନ ଭବିଷ୍ୟତି- ଯେଉଁ କଥା ସମ୍ଭବ ହୋଇ ନଥିଲା କି ହେବ ନାହିଁ ।

୨୧୧୧୮. ନମାଜ୍‌ଗା - ମସଜିଦ୍‌ର ଯେଉଁ ଅଂଶରେ ମୁସଲମାନ୍ ମାନେ ନମାଜ ପାଠ କରନ୍ତି ।

୨୧୧୧୯. ନମାଜିଆ / ନମାଜୀ- ମୁସଲମାନ ଶାସ୍ତ୍ରବିଧି ଅନୁସାରେ ପ୍ରତିଦିନ ଯିଏ ନମାଜ ପଢନ୍ତି ।

୨୧୧୨୦. ନମ୍ରାଗ୍ର - ନଇଁ ପଡିଥିବା ଅଗ୍ର ।

୨୧୧୨୧. ନମ୍ରାଙ୍ଗ - ସୁକୋମଳ ଶରୀର ବିଶିଷ୍ଟ ।

୨୧୧୨୨. ନୟନ ଜୋଡି - ସଡକର ଦୁଇ ପାଖରେ ଥିବା ଜଳ ନିର୍ଗମନର ନାଳ ।

୨୧୧୨୩. ନରକ୍‌ଖିଆ - ଏ ପ୍ରକାର ଗାଳି ।

୨୧୧୨୪. ନରନାଥ / ନରମଣି - ରାଜା, ନରପତି ।

୨୧୧୨୫. ନରେ ବା ଗୁଞ୍ଜରେ ଅଶ୍ୱତ୍ଥମା ହତ - ଦ୍ୱିଅର୍ଥ ବୋଧକ ବାକ୍ୟ ବିଶେଷ ।

୨୧୧୨୬. ନଷ୍ଟାଶ୍ୱରଥ ନ୍ୟାୟ - ଦୁଇଜଣ ଦୁଇଟି ପୃଥକ୍ ରଥରେ ଚଢି ପାରିଧି କରିବାକୁ ଯାଇଥିବା ଅବସ୍ଥାରେ ଦାବାଗ୍ନିଦ୍ୱାରା ଜଣଙ୍କର ଘୋଡା ଓ ଆଉ ଜଣଙ୍କର ରଥ ନଷ୍ଟ ହୋଇ ଯିବାରୁ, ଦୁହେଁ ଯାକ ଜଣକର ରଥରେ ଅନ୍ୟ ଜଣଙ୍କର ଘୋଡାକୁ ଯୋଚି ବଣରୁ ପଳାଇ ଆସିବାକୁ ସମର୍ଥ ହୋଇଥିଲେ । ଏହିପରି ଦୁଇଜଣଙ୍କର ଉପାୟକୁ ସଂଯୋଗକରି କୌଣସି ବିନପଦରୁ ଉଦ୍ଧାର ପାଇବା ସ୍ଥାନରେ ଏହି ନ୍ୟାୟର ଦୃଷ୍ଟାନ୍ତ ଦିଆଯାଏ ।

୨୧୧୨୭. ନହେଲା ବାଗିର୍ - ଅନାୟାସରେ, ନିର୍ଭୟରେ, ଆଗପଛ ନଭାବି ।

୨୧୧୨୮. ନହଡି ଭାଙ୍ଗିବା - ନିଜ ଆଡୁ ଆସୁଥିବା ସମୁଦ୍ରର ଲହଡିକୁ ଛାଡି ପଡାଇ ସମ୍ଭାଳିବା ।

୨୧୧୨୯. ନାଆଁ ଗାଆଁ - ଠିକଣା, ପରିଚୟ ।

୨୧୧୩୦. ନାଇଲି ଛାଇଲି ହେବା- ଖୋସାମତ କରିବା, ନେହୁରା ହେବା । ଛଳ ପୂର୍ବକ ନମ୍ରତା ପ୍ରକାଶ କରିବା ।

୨୧୧୩୧. ନାଉଲିଛାଉଲି ହେବା- ନାଳେଇ ଛାଳେଇ ହେବା । ଦୀନତା ପ୍ରକାଶ କରିବା ।

୨୧୧୩୨. ନାଳେଇ ଚାଳେଇ ହେବା - ଖୋସାମତ କରିବା । ନିଜର ଅକ୍ଷମତା ପ୍ରକାଶ କରିବା ।

୨୧୧୩୩. ନାଉଆ ଦୁଧୀ - ଲାଉରଳି ବଡ ସ୍ତନଯୁକ୍ତ ।

୨୧୧୩୪. ନାଉଆ ପେଟା - ଲାଉପରି ବଡ ପେଟ, ଅଡଲ ପେଟିଆ ।

୨୧୧୩୫. ନାଁଆଁଦିଆ - ପ୍ରହେଳିକା ।

୨୧୧୩୬. ନାଁ ଦିଆ - ନାମ କରଣ, ପିଲାଙ୍କର ନାମକରଣ ଉତ୍ସବ ।

୨୧୧୩୭. ନାଁରେ କୁକୁରା ପାଳିବା- କୌଣସି ବ୍ୟକ୍ତିକୁ ଅତ୍ୟନ୍ତ ଘୃଣା କରିବା ।

୨୧୧୩୮. ନାକ ଅଗରେ ରାଗ /
ନାକଦଣ୍ଡିରେ ରାଗ - ସାମାନ୍ୟ ରାଗିଯିବା ପ୍ରକୃତି, ଚିଡଚିଡା ପ୍ରକୃତି ।

୨୧୧୩୯. ନାକ କାଟିବା - ପ୍ରକାଶ୍ୟରେ ଅପମାନିତ କରିବା ।

୨୧୧୪୦. ନାକ କାନ ମୋଡିହେବା- ବଡ ହଇରାଣ ହେବା ।

୨୧୧୪୧. ନାକ ଛିଞ୍ଚାଡିବା / ନାକ ଟାଉଁଟାଉଁ କରିବା -ଘୃଣାରେ ନାସିକା କୁଞ୍ଚ କରିବା ।

୨୧୧୪୨. ନାକ ପୋଛିବାକୁ ସମୟ ନଥିବା - ଅତ୍ୟନ୍ତ ବ୍ୟସ୍ତ । କାର୍ଯ୍ୟ ବ୍ୟସ୍ତତା ପାଇଁ ଅବସର ଅଭାବ ।

୨୧୧୪୩. ନାକ ବାଳଧରା - ପୂର୍ବକାଳର ଅବଧାନ ମାନେ ଦେଉଥିବା ଏକ ଦଣ୍ଡ ବିଶେଷ । ଏଥିରେ ଅପରାଧୀ ଗୋଟିଏ ହାତରେ ନାକପୁଡ଼ାକୁ ଚିପି ଧରିଥାଏ ଓ ଆର ହାତରେ ଚୁଟିକୁ ଧରିଥାଏ ଏବଂ ବାରମ୍ବାର ଉଠୁଥାଏ ଓ ବସୁଥାଏ ।

୨୧୧୪୪. ନାକ ମାଛି - ମାଛି ପରି ଆକାର ବିଶିଷ୍ଟ ନାକ ଯୁକ୍ତ ଅଳଙ୍କାର ବିଶେଷ ।

୨୧୧୪୫. ନାକରେ କାଠି ପୁରାଇ ଛିଙ୍କିବା - କୌଣସି ଆପଦକୁ ବରଣ କରି ଆଣିବା ।

୨୧୧୪୬. ନାକରେ ଦଉଡି ଲଗାଇ ଟାଣିବା - କୌଣସି ବ୍ୟକ୍ତିକୁ ଅନ୍ୟର ଇଚ୍ଛାମତେ ବାଧ କରାଇ କାମକରାଇବା, ହଟହଟା କରିବା ।

୨୧୧୪୭. ନାଗ ଚୁଚୁନ୍ଦ୍ରା ଧରିବା ନ୍ୟାୟ - ବିଷମ ବା ଅସାଧ ସମସ୍ୟାରେ ପଡିବା ଅବସ୍ଥା । ନାଗସାପ ଚୁଚୁନ୍ଦ୍ରାକୁ ଧରିଲେ ଚୁଚୁନ୍ଦ୍ରା ଦେହର ଦୁର୍ଗନ୍ଧ ହେତୁ ତାକୁ ଖାଇପାରେ ନାହିଁ । ଅଥଚ ତାକୁ ଛାଡ଼ିପାରେ ନାହିଁ। କାରଣ ପ୍ରବାଦ ଅଛି ଯେ - ତାକୁ ଛାଡ଼ିଦେଲେ ସାପର ଆଖି ଫୁଟିଯିବ ।

୨୧୧୪୮. ନାଚିଲା ଲୋକକୁ ଲାଜ ନାହିଁ ଦେଖିଲା ଲୋକକୁ ଲାଜ- କୌଣସି ଲଜ୍ଜାଜନକ କାର୍ଯ୍ୟ କରିବା ବ୍ୟକ୍ତି ସେପରି କାର୍ଯ୍ୟକରି ଲଜ୍ଜାବୋଧ କରେନା, କିନ୍ତୁ ଦେଖଣାହାରୀ ଦେଖି ଲଜ୍ଜିତ ହୁଏ । ଏପରି ସ୍ଥଳେ ଏହା ପ୍ରୟୋଗ ହୁଏ ।

୨୧୧୪୯. ନାଚର ଗୁରୁ - ଓସ୍ତାଦ୍ ।

୨୧୧୫୦. ନାଚର ଗୁରୁ ଗୋବର୍ଦ୍ଧନ -ଯେଉଁ ବ୍ୟକ୍ତି କୌଣସି ଘଟଣାର ସୂତ୍ରଧର ଥାଇ ବାହାରେ ଚିହ୍ନାପଡେ ନାହିଁ । ଅଥଚ ସେଇ କାର୍ଯ୍ୟକୁ ନିୟନ୍ତ୍ରଣ କରେ ।

୨୧୧୫୧. ନାଡ ଫୁଲ କରି ଟେକି ଦେବା - ପୋଷ୍ୟ ପୁତ୍ର ଗ୍ରହଣ କରିବା ଏକ ପ୍ରକାର ରୀତି । ଶିଶୁ ଜନ୍ମ ହେବା ସଙ୍ଗେ ସଙ୍ଗେ ପୂର୍ବକୃତ ସଙ୍କଳ୍ପ ବା ଅଙ୍ଗୀକାର ଅନୁସାରେ ଶିଶୁକୁ ପୋଷିଆଁ ମାତାଙ୍କ ହାତକୁ ଟେକି ଦେବା । ନବଜାତ ଶିଶୁର ନାଭି ସଂଲଗ୍ନ ନାଡ଼ ଓ ଫୁଲ କଟା ହେବା ପୂର୍ବରୁ ଶିଶୁକୁ ପାଳନ କରିବା ନିମନ୍ତେ ଅନ୍ୟ ସ୍ତ୍ରୀ ହାତରେ ଅର୍ପଣ କରିବା ।

୨୧୧୫୨. ନାଡି ନକ୍ଷତ୍ର - ଜନ୍ମ ନକ୍ଷତ୍ର ।କୌଣସି ବ୍ୟକ୍ତିର ଗୁପ୍ତ ରହସ୍ୟ । ମଣିଷର ଅଭ୍ୟାସ ଓ ଗତିବିଧି ।

୨୧୧୫୩. ନାଡ ମାରିବା - ଗୋଇଠା ମାରିବା ।

୨୧୧୫୪. ନାଡ ଉଠାଇବା - ନାଡ ମାରିବା ନିମନ୍ତେ ଗୋରୁ ପଛକୁ ଗୋଡ ଚିଆଡିବା ।

୨୧୧୫୫. ନାଦାନ୍ ଛଅବିଶ୍ୱା - ଅତ୍ୟନ୍ତ ଗରିବ ଅବସ୍ଥା ।

୨୧୧୫୬. ନାହୁର ବାହୁର / ଇହୁର ବାହୁର-ଏକତ୍ର ଲଗାଲଗି ହୋଇ ଅସୁନ୍ଦର ରୂପେ ଅବସ୍ଥିତ ବହୁ ବସ୍ତୁ ।

୨୧୧୫୭. ନାମ ବଡା ଦର୍ଶନ ଥୋଡା- ନାମବଡ କିନ୍ତୁ କାମକୁ ଅଯୋଗ୍ୟ ।

୨୧୧୫୮. ନାମ ବୁଡେଇବା / ନାମ ଡୁବାଇବା - ନାଁ ପକାଇବା, ନିଜର ବା ବଂଶର ସୁଖ୍ୟାତିରେ କଳଙ୍କ ବୋଳିବା ।

୨୧୧୫୯. ନାମ ମାରିନେବା - ଖ୍ୟାତି ଅର୍ଜନ କାର୍ଯ୍ୟ ନକରି ଲୋକଙ୍କ ଆଖିରେ ଧୂଳି ଦେଇ ସ୍ୱୟଂ ଖ୍ୟାତି ଲାଭ କରିବା ।

୨୧୧୬୦. ନାମ ଲୋପ ହେବା - ମୃତହେବା, ଅପଖ୍ୟାତି ।

୨୧୧୬୧. ନାଇ ଚହଚହ / ନାଇ ଟହଟହ - ନାଇ ଟହଟହ ।

୨୧୧୬୨. ନାଲିଆ ଆଖି ଦେଖାଇବା - କୌଣସି ବ୍ୟକ୍ତି ପ୍ରତି କ୍ରୋଧ ପ୍ରକାଶ କରିବା ।

୨୧୧୬୩. ନାସ୍ତାନାବୁଦ୍ - ବିଧ୍ୱସ୍ତ, ସର୍ବନାଶ, ସମୂଳ ନାଶ ।

୨୧୧୬୪. ନାରାୟଣ ବଳି - ଆତ୍ମଘାତ ଦ୍ୱାରା ମୃତ ବ୍ୟକ୍ତିର ପତିତ ଆତ୍ମାର ପ୍ରାୟଶ୍ଚିତ ପାଇଁ ନାରାୟଣ ଆଦି ପାଞ୍ଚ ଦେବତାଙ୍କ ଉଦ୍ଦେଶ୍ୟରେ ଦିଆଯିବା ବଳି । ହିନ୍ଦୁ ଶାସ୍ତ୍ର ଅନୁସାରେ ଆତ୍ମହତ୍ୟା ଏକ ଗୁରୁତର ପାପ । ଆତ୍ମଘାତୀ ଲୋକର କ୍ରିୟା ସାଧାରଣ କ୍ରିୟା ଭଳି କରାନଯାଇ ମୃତ୍ୟୁର ଏକ ବର୍ଷ ପରେ ନାରାୟଣ ବଳି ଓ ପର୍ଣ୍ଣ-ନର ଦାହ କରାଯାଇ ତତ୍‌ପରେ ଶ୍ରାଦ୍ଧ ଆଦି କରାଯାଏ । ଆତ୍ମଘାତୀ ଲୋକର ଶବଦାହ କରିଥିବା ବ୍ୟକ୍ତିକୁ ମଧ ପ୍ରାୟଶ୍ଚିତ କରିବାକୁ ପଡ଼େ ।

୨୧୧୬୫. ନାହି ଗଡେଇବା - ଗରିବ ବୋଲି ଛଳନା କରିବା ।

୨୧୧୬୬. ନାହି ଶୁଖେଇବା/ ନାହି ଗଡ଼େଇବା - ଛଳନା ପୂର୍ବକ ଅକ୍ଷମତା ପ୍ରକାଶ କରିବା । ଗରିବ ବୋଲି ଛଳନା କରିବା ।

୨୧୧୬୭. ନାହା ବୁଡିବା - ନୌକା ବୁଡିଯିବା, ଆଶା ଭରସା ତୁଟିଯିବା ।

୨୧୧୬୮. ନାହି ଲେଉଟିବା - ଅତିରିକ୍ତ ଭୋଜନ ହେତୁ ପେଟ ଫୁଲିଯିବା । ପେଟ ଫାମିବା ।

୨୧୧୬୯. ନାହିରେ ଓଦାକନା ପକାଇବା - ପେଟରେ ଓ ଦାକନା ପକାଇବା

୨୧୧୭୦. ନାହିରେ ତେଲ ପକାଇ ଶୋଇବା - ନିଶ୍ଚିନ୍ତ ବା ବେଧଡକ ହୋଇ ରହିବା ।

୨୧୧୭୧. ନିଆଁ ଖସି ପଡିବା - ହଠାତ୍ ଭୟଗ୍ରସ୍ତ ହେବା ।

୨୧୧୭୨. ନିଆଁ ଖାଇ ଅଙ୍ଗାର ହଗିବା - ଯେଉଁପରି କାମ କରିବ ସେହିପରି ଫଳ ପାଇବ ।

୨୧୧୭୩. ନିଆଁଧୂଆଁ ଉଠିଯିବା - ସମ୍ପୂର୍ଣଭାବେ ବିନିଷ୍ଟ ହେବା ।

୨୧୧୭୪. ନିଆଁ ନଥାଇ ଧୂଆଁ - କାରଣ ନଥାଇ କାର୍ଯ୍ୟ ଘଟିବା, ଅସମ୍ଭବ କଥା ।

୨୧୧୭୫. ନିଆଁପାଣି ଅଟକ - ଏକ ଘରିକିଆ ହେବା । ସାମାଜିକ ବାଛନ୍ଦ ।

୨୧୧୭୬. ନିଆଁ ବାଣ ହେବା - ଅତ୍ୟନ୍ତ କ୍ରୋଧହେତୁ ଦେହରେ ନିଆଁ ଲାଗିଲା ପରି ଜ୍ଞାନଶୂନ୍ୟ ହେବା ।

୨୧୧୭୭. ନିଆଁମୁଣ୍ଡା - ଜ୍ୱଳନ୍ତ ଅଗ୍ନିଖଣ୍ଡ । (ନିଆଁମୁଣ୍ଡା ଭଳି ଶାଶୁଙ୍କ ଆଖି)

୨୧୧୭୮. ନିଆଁରେ ମୁତିବା - କୌଣସି ଦୋଷ ନ କରି ଅନ୍ୟ ବ୍ୟକ୍ତି ସହିତ ସମାନ ଅଧିକାର ବା ଅନୁଗ୍ରହ ନ ପାଇବା ।

୨୧୧୭୯. ନିଆଁ ଲଗେଇବା - ପୋଡିବା, ଅନ୍ୟ ଘରେ ବିପଦ ଉପୁଜାଇବା ।

୨୧୧୮୦. ନିଆଁ ଲାଗିବା - ଅଗ୍ନିସାତ୍ ହେବା ।

୨୧୧୮୧. ନିଆମତ୍ - ଉତ୍ତମ, ଅମୂଲ୍ୟ ଓ ଅଲଭ୍ୟ ବସ୍ତୁ ।

୨୧୧୮୨. ନିକଉଡିଆ - ମୂଲ୍ୟହୀନ, ନିର୍ଦ୍ଧନ, କପର୍ଦ୍ଦହୀନ ।

୨୧୧୮୩. ନିକ ଚାଉଳ - ସରୁ ସଫା ଚାଉଳ ।

୨୧୧୮୪. ନିକଟା ନିକଟି - ପରସ୍ପର ଲଗାଲଗି । ଆଖପାଖ ।

୨୧୧୮୫. ନିକଟା ମାଧିଆ - ଦାନ୍ତ ନିକୁଟି ପରଠାରେ ପ୍ରାର୍ଥନା କରିବା ବ୍ୟକ୍ତି । (ଗାଳିଦେବା ଅର୍ଥରେ)

୨୧୧୮୬. ନିକାଶ ପ୍ରକାଶ - ଶେଷ ମୀମାଂସା ।

୨୧୧୮୭. ନିଘିନିଘିଆ - ପ୍ରଚଣ୍ଡ ଓ ତୀବ୍ର ଖରା ।

୨୧୧୮୮. ନିଜଯୋତ - ନିଜ ଚାଷ ।

୨୧୧୮୯. ନିଜ ରୂପ ଦେଖାଇବା - ଆପଣାର ପ୍ରକୃତ ଚେହେରା ଦେଖାଇବା, ନିଜର ଆନ୍ତରିକ ମତ ଗୋପନ ନକରି ପ୍ରକାଶ କରିବା । ଅତ୍ୟନ୍ତ ରାଗିଯିବା ।

୨୧୧୯୦. ନିତମ୍ବ ଗୁର୍ବୀ / ନିତମ୍ବିନୀ- ଗୁରୁ ବା ପୃଥୁଳ ନିତମ୍ବ ଯୁକ୍ତା ସ୍ତ୍ରୀ । ପ୍ରଶସ୍ତ ନିତମ୍ବ ଯୁକ୍ତା ସ୍ତ୍ରୀ ।

୨୧୧୯୧. ନିତମ୍ବ ମେଖଳା - କଟିବନ୍ଧ । କଟି ପରିବେଷ୍ଟନୀ ।

୨୧୧୯୨. ନିତମ୍ବ ସନ୍ଧି - ପିଚାର ସନ୍ଧି ଜାଗା । ପୃଷ୍ଠଭାଗର ସନ୍ଧିସ୍ଥଳ ।

୨୧୧୯୩. ନିତି ଦିନ / ନିତି ନିତି - ପ୍ରତିଦିନ, ଦିନକୁ ଦିନ ।

୨୧୧୯୪. ନିଦାବିଷ୍ଣୁ - ଧର୍ମବକ, ବିରାଡି ବୈଷ୍ଣବ, ଅଳସୁଆ ଉଦାସୀନ ବ୍ୟକ୍ତି । (ପ୍ରକୃତରେ ବିଷ୍ଣୁ ନହୋଇ ଆପଣାକୁ ବିଷ୍ଣୁ ଅବତାର ବୋଲି ପରିଚୟ ଦେଉଥିବା ବ୍ୟକ୍ତି ।)

୨୧୧୯୫. ନିଦାଦିହ - ବଳିଷ୍ଠ ଶରୀର ।

୨୧୧୯୬. ନିଦ୍ରାକୂଳ - ନିଦ ଯୋଗୁଁ କାତର ବା ବ୍ୟସ୍ତ ।

୨୧୧୯୭. ନିଧୁବନ - ମୈଥୁନ, ରମଣ, ଉପଭୋଗ ।

୨୧୧୯୮. ନିପଟ ମିଛୁଆ - ସମ୍ପୂର୍ଣ୍ଣ ରୂପେ ମିଥ୍ୟାବାଦୀ । ନିଅଁଘିଂଟା ପ୍ରକୃତିର ଲୋକ ।

୨୧୧୯୯. ନିଭାଳନ - ଦର୍ଶନ, ଅବଲୋକନ ।

୨୧୨୦୦. ନିମକ୍ ଶୁଝିବା - କାର୍ଯ୍ୟରେ ପ୍ରଭୁବତ୍ସଳ ହେବା ।

୨୧୨୦୧. ନିମକ୍ ହଲାଲ / ନିମକ ସଚା - କୃତଜ୍ଞ ବିଶ୍ୱାସୀ ଭୃତ୍ୟ ।

୨୧୨୦୨. ନିମୁଣ୍ଡିଆ - ଅନାଥ, ବନ୍ଧୁହୀନ, ନିରାଶ୍ରୟ ।

୨୧୨୦୩. ନିମକ ହରାମ୍ - କୃତଘ୍ନ ଭୃତ୍ୟ । ପ୍ରଭୁର ଦାନା ଖାଇ କୃତଘ୍ନତା କରେ ।

୨୧୨୦୪. ନୟତ କରିବା - ଧର୍ମ ଅନୁସାରେ କାର୍ଯ୍ୟ କରିବା ।

୨୧୨୦୫. ନିଗଡ଼ା-ନିଗଡ଼ି / ନିଗିଡ଼ା ନିଗିଡ଼ି - ପାତ୍ରରୁ ପାନୀୟ ପଦାର୍ଥ ଜଳାଦି ନିଗିଡ଼ିଯିବା ପରେ ଯାହା ଅବଶିଷ୍ଟ ରହିଯାଏ ।

୨୧୨୦୬. ନିଜ ପଟକୁ ଟାଣିନେବା - ପ୍ରଲୋଭନ ଦ୍ୱାରା ନିଜ ପକ୍ଷଭୁକ୍ତ କରିବା । ନିଜର କରିନେବା ।

୨୧୨୦୭. ନିର୍ନିମେଷ ଲୋଚନ - ଆଖି ପଲକ ନ ପକାଇ ଚାହିଁ ରହିବା ।

୨୧୨୦୮. ନିର୍ବାଣ ମଣ୍ଡପ - କାଶୀସ୍ଥିତ ମୁକ୍ତିମଣ୍ଡପ ନାମକ ତୀର୍ଥ ।

୨୧୨୦୯. ନିମିତା ନିମିତ - ଉତ୍ସବ ଓ ବ୍ରତାଦି ।

୨୧୨୧୦. ନିୟତ ଖରାପ କରିବା - ବଦନିୟତ କାମ କରିବା । ନିଜର ଦୃଢ଼ ସଙ୍କଳ୍ପ ଭଙ୍ଗ କରିବା ।

୨୧୨୧୧. ନିୟତ ପୂରିବା - ମୃତ୍ୟୁ ନିକଟବର୍ତ୍ତୀ ହେବା, ଆୟୁଷ ପୂରିବା ।

୨୧୨୧୨. ନିୟତିକୁ ବଳ କାହାର- ଦୈବ ଉପରେ ମନୁଷ୍ୟର ହାତ ନାହିଁ ।

୨୧୨୧୩. ନିୟମୀ ନାନୀ - ଯେଉଁ ସ୍ତ୍ରୀ ଲୋକ ଅତିରିକ୍ତ ଭାବରେ ଆଚାରନିଷ୍ଠା ପାଳନ କରେ । (ବ୍ୟଙ୍ଗୋକ୍ତି)

୨୧୨୧୪. ନିର୍ଲ୍ଲଜ ପଣିଆ / ନିଲଠା ପଣିଆ - ଲଜ୍ଜାହୀନତା ।

୨୧୨୧୫. ନିଶ ଫୁଲାଇବା - କ୍ରୋଧିତ ହେବା, ଗର୍ବରେ ପାଠି ପଡ଼ିବା ।

୨୧୨୧୬. ନିଶ୍ୱାସ ପଡ଼ିବା - ଅତ୍ୟାଚାରିତ ବ୍ୟକ୍ତି ଦ୍ୱାରା ଅତ୍ୟାଚାରୀ ଅଭିଶପ୍ତ ହେବା । ଅତ୍ୟାଚାରୀ ବ୍ୟକ୍ତି ଉପରେ ଦୁଃଖାର୍ତ୍ତ ବ୍ୟକ୍ତିର ଅସନ୍ତୋଷ ଜନିତ ଅଭିଶାପ ସଫଳ ହେବା ।

୨୧୨୧୭. ନିଶାପ କରିବା - ପଞ୍ଚାୟତରେ କୌଣସି ବିଷୟରେ କରିବା, ଅଦାଲତଙ୍କ ବିନା ଆପୋଷରେ ବିଚାର କରିବା ।

୨୧୨୧୮. ନିସୁନ ରାତି - ନିର୍ଜ୍ଜନ ଅର୍ଦ୍ଧରାତି ।

୨୧୨୧୯. ନିସ୍ତାର ପାଇବା - ଉଦ୍ଧୁରିବା, ଅବ୍ୟାହତି ପାଇବା ।

୨୧୨୨୦. ନିସ୍ତାର ଗତି ପାଇବା - ଗତି ମୁକ୍ତି ପାଇବା ।

୨୧୨୨୧. ନୀତି ବଢ଼ାଇବା - ରାଜାଙ୍କର ବା ଦେବତାଙ୍କର ନିତ୍ୟକର୍ମ ସମାପନ କରିବା ।

୨୧୨୨୨. ନୀଳକନ୍ୟା - ଲକ୍ଷ୍ମୀ । (ବୈଷ୍ଣବ ସାହିତ୍ୟ ମତରେ ନିତ୍ୟରାସ ର କାଳରେ ରାଧାଙ୍କ ଅଙ୍ଗରୁ ଝାଳ ବୋହି କ୍ଷୀର ସମୁଦ୍ରରେ ପଡ଼ିବାରୁ ଯେଉଁ କନ୍ୟା ଜାତ ହେଲା ତାହାଙ୍କ ନାମ ଲକ୍ଷ୍ମୀ ।)

୨୧୨୨୩. ନୁକ୍ସପୁକ୍ସ ହେବା / ନୁକ୍କୁର ପୁକ୍କୁର ହେବା - ଲୁଚାୟିତ ଭାବରେ ବୁଲିବା ।

୨୧୨୨୪. ନୂଆଖାଇ - ନବାନ୍ନ ଉତ୍ସବ, ନୂଆଖିଆ ।

୨୧୨୨୫. ନୂଆ ଡାହାଣୀ - ଅଳ୍ପଦିନ ହେବ ଡାହାଣୀ ହୋଇଥିବା ସ୍ତ୍ରୀ ଲୋକ, ନୂଆ କରି କିଛି କାମ ଆରମ୍ଭ କରିବା ଲୋକ ।

୨୧୨୨୬. ନିର୍ବିକଳ୍ପ ସମାଧି - ଯୋଗସାଧନାର ଅବସ୍ଥା ବିଶେଷ । ଜୀବାତ୍ମା ପରମାତ୍ମାରେ ପୂର୍ଣ୍ଣଭାବରେ ଲୀନ ହେବାର ଅବସ୍ଥା । ସାଧକର ଏହି ଅବସ୍ଥା ଉପସ୍ଥିତ ହେଲେ ସେ ସଚ୍ଚିଦାନନ୍ଦ ବ୍ରହ୍ମର ଅତିରିକ୍ତ ଅନ୍ୟ କୌଣସି ସତ୍ତା ଅନୁଭବ କରେ ନାହିଁ ଓ ନିର୍ବାଣ ଲାଭ କରେ ।

୨୧୨୨୭. ନେଉଳ ଭାଇ - ଯେଉଁ ବ୍ୟକ୍ତି ନିମ୍ନଲିଖିତ କାହାଣୀ କଥିତ ନେଉଳ ପରି ଅପ୍ରତ୍ୟାଶିତ ଭାବରେ ସବୁଠାରେ ଉପସ୍ଥିତ ହେବାର ଦେଖାଯାଏ ।

କାହାଣୀରେ ଅଛି ଯେ ନେଉଳ ଭାଇକୁ ଅନ୍ୟ ସଙ୍ଗୀ ଭାଇମାନେ ଆଦର କରନ୍ତି ନାହିଁ । କିନ୍ତୁ ଆପଦ ପଡ଼ିଲେ ସେମାନେ ନେଉଳ ଭାଇକୁ ଖୋଜନ୍ତି । । ନେଉଳ ଭାଇ ଖୋଜା ପଡ଼ିବା ସ୍ଥାନରେ ହାଜର ହୁଏ ଏବଂ ସେମାନଙ୍କୁ ଆପଦରୁ ରକ୍ଷା କରେ । ସାପକୁ ଏମାନେ ଖଣ୍ଡ ଖଣ୍ଡ କରି ଦାନ୍ତରେ କାଟି ପକାନ୍ତି । ଏହିଗୁଣ ପାଇଁ ଏମାନଙ୍କୁ ଖୋଜାପଡ଼େ ।

୨୧୨୨୮. ନେଉଳ ମୁହାଁ - ଯେଉଁ ବଳଦ ଶଗଡ଼ ବା ହଳରେ ମୁଣ୍ଡ ତଳକୁ ପୋତି ଚାଲେ ।

୨୧୨୨୯. ନେଥେଇଫୁଲୀ - ଅହଂକାରିଣୀ, ଯେଉଁ ସ୍ତ୍ରୀ ନିଜର ବିଭବ ବା ସ୍ନେହ ଭାବ ବାହାରେ ଦେଖାଇ ହୁଏ ।

୨୧୨୩୦. ନେଥେଇ ଫୁଲୀ - ଅହଂକାରିଣୀ, ଯେଉଁ ସ୍ତ୍ରୀ ନିଜର ବିଭବ ବା ସ୍ନେହ ଭାବ ବାହାରେ ଦେଖାଇ ହୁଏ ।

୨୧୨୩୧. ନେଇ ଆଣି ଥୋଇବା - ସାବଧାନତା ସହ କାର୍ଯ୍ୟ କରିବା ।

୨୧୨୩୨. ନେକ୍ ଚଳନୀ - ଉତ୍ତମ ଆଚରଣ, ସଦାଚରଣ ।

୨୧୨୩୩. ନେତ୍ରପିତୁଳା - ନୟନ ପିତୁଳା ।

୨୧୨୩୪. ନେଁ - ନେଙ୍ଗୋରା - ପିଲାଛୁଆ, ଝଂଝଟ, ଜଞ୍ଜାଳ ।

୨୧୨୩୫. ନୀରାଜନ - ବନ୍ଦାପନା, ଆରତୀ ।

୨୧୨୩୬. ନେଫେଡିବା - ଦାନ୍ତ ନିକିଟିବା ।

୨୧୨୩୭. ନେଭେଡା - ଲମ୍ପଟ, କାମୁକ ।

୨୧୨୩୮. ନୋଥରୀ - ବୟସ୍କା କୁମାରୀ, ହଣ୍ଡୋତା ।

୨୧୨୩୯. ନୋଳା ଫାଟିଯିବା - ବେତମାଡ ଦ୍ୱାରା ଦେହରେ ରହିଯାଉଥିବା ଦାଗ ।

୨୧୨୪୦. ନୌକରେନ୍ - ଚାକରାଣୀ ।

୨୧୨୪୧. ନୌକର ଚାକର - ପରିଜନ, ଭୃତ୍ୟାଦି ।

୨୧୨୪୨. ନୌରାଜ - ପାରସିକମାନଙ୍କର ନବବର୍ଷାରମ୍ଭ, ମୁସଲମାନ ମାନଙ୍କର ବର୍ଷର ପ୍ରଥମ ଦିନ ଏବଂ ଉକ୍ତଦିନ କରାଯିବା ଉତ୍ସବ ।

୨୧୨୪୩. ନ୍ୟଗ୍ରୋଧ ପରିମଣ୍ଡଳ- ସୁଉଚ୍ଚ ପରମ ସୁନ୍ଦର ପୁରୁଷ ।



# ନାଁଦିଆ

୨୧୨୪୪. ନଈ ଆରପାଖେ କୁମ୍ଭୀର ଘର
ସକାଳୁ ଉଠିଲେ ଖର ଖର । ... ପହଁରା ବା ଝଡିକା ମୁଠା

୨୧୨୪୫. ନଈ ଆରପାଖେ ବୁଢୀର ଘର
ନିତି କରୁଥାଏ ଖର ଖର । ... ପହଁରା ବା ଝଡିକା ମୁଠା

୨୧୨୪୬. ନଈକି ନଯାଇ ନଈ ପାଣି ଖାଏ,
ପଡି ରହିଥାଏ ଡିପରେ
ନାଙ୍ଗୁଡ ଧଇଲେ କାମୁଡି ଉଠଇ,
ଦୁଇ ଆଖି ତାର ବେକରେ । ... ଶଣ୍ଢୁଆସୀ ବା ଚିମୁଟା

୨୧୨୪୭. ନଈ ଲହଡା, ନଈରେ ଯାଉଛି କାଳିଆ ଘୋଡା,
ପାଣି ଚବ ଚବ ହେଉଛି ।
ଘାଣ୍ଟି ଘାଗୁଡି ବଜାଇ ଦେଇ
ଶ୍ରୀ ପୁରୁଷୋତ୍ତମ ଯାଉଛି । ... ଘଡଘଡି / ବିଜୁଳି

୨୧୨୪୮. ନଈ ସେ ପାରିରେ ଡାକୁଛି ବଣି
କାହା ଘରେ ଅଛି କାକର ପାଣି ? ... ପଇଡ

୨୧୨୪୯. ନଈ ସେ ପାରିରେ ବୁଜିଲି ବାଡ,
କୁମ୍ଭୀର ପଡୁଛି ଧଡ ଧଡ । ... ଭଜା ହେଉଥିବା ଲିଆ

୨୧୨୫୦. ନକଡା ଛକଡା ତିନିବାର କଡା
ଦିଅଣ୍ଡା ଦିକଡା କେତେ ? ... ୧୦ ଗଣ୍ଡା

୨୧୨୫୧. ନକୋଡି ବିଜନା ଛକୋଡି ମାଳ
ଛିଡାଇଲେ ଛିଡେନାହିଁ ମରଦାର ମାଳ । ... ଛାଇ

୨୧୨୫୨. ନ ଖାଇ ମଧୁର । ... ଅମୃତ

୨୧୨୫୩. ନ ଦେଖି ସୁନ୍ଦର । ... କନ୍ଦର୍ପ

୨୧୨୫୪. ନ ଚିପି ଟାଣ । ... ବଜ୍ର

୨୧୨୫୫. ନ ଥାଇ ଜୀବନ କରେ ଗର୍ଜନ
ନ କରି ପାରଇ ଇଚ୍ଛା ଗମନ
ଯୁଦ୍ଧରେ ମାରଇ ଶତ୍ରୁକୁ ହେଲେ
କେହି ଘେନିଗଲେ ତା ସଙ୍ଗେ ଚଳେ । ... ବନ୍ଧୁକ

୨୧୨୫୬. ନ ଦେଖିବା ଲୋକ ଦେଖିଲେ ମଲା,
ଦେଖିବା ଲୋକ ଦୀନମାନରେ ମଲା । ... କଂସ, ଦଶରଥ

୨୧୨୫୭. ନନ୍ଦନବନକୁ ମୁଁ ଯାଇଥିଲି,
ପାରିଜାତ ଫୁଲ ତୋଳି ଆଣିଲି,
ଅତି ଯତ୍ନ କରି ଗୁନ୍ଥିଲି ହାର,
ତାକୁ ନେଇ ଦେବି ଶିବ ମଥାର,
ବରଜ ମୁଖ,
ଆଦ୍ୟ ଅକ୍ଷରକୁ ମନରେ ରଖ । ... ନନ୍ଦନକାନନ

୨୧୨୫୮. ନାଇଁ ଖାଏଲ ମୁଟା ହେସି ଖାଏଲ ଶୁଖି ଯାଏସି । ... ଜୋକ

୨୧୨୫୯. ନାଗର ନୁହେଁ ବାଘର
ଗୋଟିଏ ଫୁଲ ଫୁଟିଅଛି
ମହାପ୍ରଭୁଙ୍କ ଆଗର । ... ସୂର୍ଯ୍ୟ

୨୧୨୬୦. ନାଣ୍ଡୀ ଗାଈ,
ଧରି ପକାଇଲେ ଛେରି ଛେରି ଯାଇ । ... ଚକି ବା ଘୋରଣା

୨୧୨୬୧. ନାମ ନରେନ୍ଦ୍ର,
ପିନ୍ଧନ୍ତି ବଳକ ପାଣି ଭରେନ୍ଦ୍ର,
ବୃକ୍ଷ ଉପରେ ବସା,
ଏ ଭେଦ କହିବାକୁ କାହାର ଭରସା ? ... ପଇତ

୨୧୨୬୨ ନାକ୍ ନାକ୍ ବେଟା, ଗେମ୍‌ଟା ଗେମ୍‌ଟା,
ହୁ ହୁ ବେଟା,ହା ହା ବେଟା । ... ଲଙ୍କା ମରିଚ

୨୧୨୬୩. ନାଲି ଟୁକୁଟୁକୁ ଶୁକଳ ବରନ,
ଦେଖି ଯୁବତୀର ହୋଇଲା ମନ,
ଅଗ ନ ପଶୁଣୁ ମୂଳ ପଶିଲା,
ଦେଖି ଯୁବତୀ ଠୋ ଠୋ ହସିଲା । ... ଚୁଡି

୨୧୨୬୪. ନାଲି ଶଙ୍ଖୋଇ, ସବୁ ଭୋଗେଇ
ଆଗ ଜଣକ ତୋର କି ହୋଇ ?
ପଥ ଦୂର ବେଙ୍କ ଉଣ୍ଣୁର ତାର
ବାପ ମୋର ଭାଇ ଶଳା ଶଶୁର
ତୁମେ ପାଞ୍ଚଜଣ ବିଚାର କର । ... ସ୍ତ୍ରୀ, ପୁରୁଷ

୨୧୨୬୫. ନାହିଁ ଶିର ପାଦ ଆଙ୍ଗୁଠି ତାର,
ହାଡ ମାଂସ ରକ୍ତ ଶୂନ୍ୟ ଶରୀର,
ଗିଳଇ ମଣିଷ କରଇ ବାନ୍ତି,
କହିଦେବ ଇଏ କେମନ୍ତେ ଜାତି ? ... କୁକୁଡା

୨୧୨୬୬. ନିଆଁ ନାହିଁ ଚୂଲି ଜଳୁଛି,
ପାଣି ନାହିଁ ପେଜ ଗଳୁଛି,
ବଟୀ ନାହିଁ ପୂଅ ଖେଳୁଛି । ... ବର୍ଷା, ବିଜୁଳି

୨୧୨୬୭. ନିଆଁ ନାହିଁ ଧୂଆଁ ଅଛି
ବରଷୁ ନାହିଁ ପାଣି ପକାଉଛି । ... କାକର, କୁହୁଡି

୨୧୨୬୮. ନିରବୀଜା ବହୁବୀଜା ରାମ ଅଗରି
ଆଜି ହୋଇଛି ସେଇ ତରକାରୀ । ... ବଟଳ କଦଳୀ ।

୨୧୨୬୯. ନୁହଇଁ ସେ ମାନ୍ୟ ମୁଣ୍ଡରେ ବସେ,
ଷଟ୍‌ପଦ ବହି ନୁହେଁ ଭ୍ରମର,
ନୁହେ ବାଘ ସିଂହ ପିଏ ରକତ,
ପାରଇ ସେ ଡିମ୍ବ ପକ୍ଷୀ ନୁହେ ତ । ... ଉକୁଣି

୨୧୨୭୦. ନୁହଇ ପକ୍ଷୀ ଗଗନେ ବିଚରେ,
ରାଜା ନୁହେଁ ବସେ ଉଚ୍ଚାସନରେ,
ଯୋଦ୍ଧା ନୁହେଁ ଖଡ୍‌ଗ ସଦା ବହଇ,
ଦ୍ୱିଜ ନୁହେଁ ପ୍ରାତେ ଗାୟତ୍ରୀ ଗାଇ,
ନିଶାଚର ନୁହେଁ ଚରେ ନିଶାରେ
ଜନ୍ତୁ ନୁହେଁ ଛୁଆ ପ୍ରସବ କରେ । ... ବାଦୁଡି ।

୨୧୨୭୧. ନୁହେଁ ପକ୍ଷୀ ବୃକ୍ଷେତାର ବାସ,

ତିନି ଆଖି ଅଛି ନୁହଁତି ଭୂତେଶ,
ନୁହେଁ ମେଘମାଳ ଦିଅଇ ଜଳ,
ନୁହେଁ ରାମଚନ୍ଦ୍ର ପିନ୍ଧେ ବକଳ,
ସୁଜ୍ଞଜନମାନେ ସୁବିଚାର କର,
ଶୁଭ କର୍ମେ ସେହୁ ହୁଏ ପ୍ରଚାର । ... ନଡିଆ

୨୧୨୭୨. ନୂଆ ନବତନ ଗୋରୀ
ନୂଆ କରି ଯୋଉ ବଚନ କହିଲା
ଅବନା ଅକ୍ଷର ଚାରି । ... ଦଣ୍ଡବତ

୨୧୨୭୩. ନୂଆ ନାଗର,
ରାଜା ବିଜେ କଲେ ଦୁଇ ପହର,
ନଅରଯାକ ବାଛି,
ମାଆ ମଲାଣି ଛମାସ ହେଲା,
ପୁଅ ଜନମିଛି କାଲି । ... କଦଳୀଗଛ

୨୧୨୭୪. ନେଉଟିଆ ପତର ଦି ଦି ପତର,
ମୁଁ ତ ଯାଉଥିଲି କାଳ ମନ୍ତରି,
ମୋ ମାଆ ଥିଲା ପେଟରେ,
ଆଉ ଯେତେବେଳେ ଠୁକୁରୁ ଠୁକୁରୁ,
ମୋତେ ଧରିଥିଲା ପେଟରେ । ... ସାରୁ

୨୧୨୭୫. ନୋ ଟଣିଯୋଡିକ ସବୁରୁ ବିନ୍ଧାଣି,
ମାଛି ଗଡିକରି ଓଗାଳୁଛି ପାଣି,
ଜନ୍ତୁ ପକାଉଛି ବାଣୁଆ ଗୋଡାଉଛି,
ଛାଲ ଶୁଖୁଛି, ମାଂସ ଶିଝୁଛି ।

୨୧୨୭୬. ନାଲି ବିବି ଜାମା ଦିହେ
କାଟିଲେ ବିବି ଦି'ଖଣ୍ଡ ହୁଏ । ... ମସୂରି ଡାଲି

୨୧୨୭୭. ନାମରେ ଅଛି କାମରେ ନାହିଁ
ଏପରି କି ବସ୍ତୁ ଅଛି ଜଗତେ ଭାଇ । ... ଘୋଡ଼ା ଅଣ୍ଡା

୨୧୨୭୮. ନାମ ଅଛି ଜିନିଷ ନାହିଁ

କେଉଁଠି ମିଳେ କୁହ ଭାଇ । ... ଘୋଡ଼ାର ଡିମ୍ବ

୨୧୨୭୯. ନିଆଁରୁ ଜନ୍ମ ତାହାର, ନିଆଁରେ ବାସ
ଉପୁଜିଲେ ମାଡି ମା'କୁ ଦିଏ ଠକି । ... ଦିଆସିଲି

୨୧୨୮୦. ନାମ ତା' କୁହ ଭାଇ
ଘର କରଣା ଅଛି ତାର ଦୁଆର ବାଟ ନାହିଁ । ... ଅଣ୍ଡା

୨୧୨୮୧. ନାଚି ନାଚି ଯାଇ ପାଣିରେ ପଡ଼େ
ଲେଞ୍ଜ ଦେଇତାକୁ ଟାଣିଆଣେ । ... ମାଛଧରା ଜାଲ

୨୧୨୮୨. ନାରୀ ନୁହଁ ପୁରୁଷ ନୁହେଁ ସବୁ ପ୍ରାଣୀ ଆଶ
ଫୁଲ ନାହିଁ, କଢ଼ି ନାହିଁ ଧରେ ବାରମାସ ।

୨୧୨୮୩. ନାହିଁ ମୋର ଗଛ ହେଲେ ଶାଖା ଅଛି ମୋର
ସବୁ ସମୟ ଅଛି ସାନ ମଥା ଉପର । ... ହରିଣର ଶିଙ୍ଗ

୨୧୨୮୪. ନଈପାରିରେ ଛିଟ୍‌କୀ ଗଛ ଅଲ ଅଲ କରେ
ଗଣିଆ (=ତୁଡ଼ି) ମାଛ ଠୋକର ଦେଲେ ଝର ଝର ପଡ଼େ । .. ମେଘ

୨୧୨୮୫. ନାକ ଅଛି ଛିଙ୍କେ ନାହିଁ ଚୁଟି ଅଛି ବାନ୍ଧେନାହିଁ
ମାରିଲେ କାନ୍ଦେ ନାହିଁ । ... ନଡ଼ିଆ

୨୧୨୮୬. ନୟନେ ନୟନେ ରଖନ୍ତି ପୁରୁଷ ରମଣୀ
ସମସ୍ତଙ୍କ ଶେଷରେ ଅଛନ୍ତି ମୋ ଜନନୀ । ... ଚଷମା

୨୧୨୮୭. ନ ଖାଇଲେ ହୁଣ୍ଡା, ଖାଇଲେ ମଡ଼ା । .. ଜୋକ

୨୧୨୮୮. ନିତି ଆସେ ନିତି ଯାଏ, ଯେମିତି କଳା ସେମିତି ନୀରବ । ... ରାତ୍ରୀ

୨୧୨୮୯. ନଗର ଅଛି ଗୃହ ନାହିଁ,
ରାସ୍ତା ଅଛି ଚାଲେନା କେହି,
ନଦୀ ଅଛି ପାଣି ନାହିଁ,
ପାହାଡ ଅଛି ଚଢେନା କେହି । ... ମାନଚିତ୍ର

୨୧୨୯୦. ନଅଶ ଅଣା, ଶୂନ ନେଇଗଲା ବୁଢା ମାଉସୀ,
ରହିଲା କେତେ, ଗଲା କେତେ କହରେ କଷି ।
... ରହିଲା-୯୮, ଗଲା-୮୮୨

୨୧୨୯୧. ନଖ ଉପରେ ନାକ, କପାଳ ଉପରେ ଆଖି,
ପେଟ ଭିତରେ ବାଳ, କାହାର କୁହ ଦେଖି ?
... ଯଥାକ୍ରମେ:-ଜହ୍ନୀ, ନଡିଆ, ମକା

୨୧୨୯୨. ନାଥେ, ଗାତରୁ ଭାରିଛି ହାତେ,
ତୁମ ପୁଅର ବାଳ ପାଚି ଗଲାଣି, ତୁମର ବୟସ କେତେ । ... ମକା

୨୧୨୯୩. ନାଲି କନା ଖଣ୍ଡ ଶୁଖଇ ନାହିଁ । ... ଜିଭ

୨୧୨୯୪. ନାଲି ଟହ ଟହ, ମୁଣ୍ଡରେ କଳା,
କହିନ ପାରିଲେ, ଏଠାରୁ ପଳା । ... କାଇଁଚ

୨୧୨୯୫. ନୟନ ନାହିଁ ନିରଞ୍ଜନ, ସକଳ କରୁ ଦରଶନ ।
ନାହିଁ ତୋହର ଚକ୍ଷୁ କର୍ଣ୍ଣ, ନାହିଁ ତୋହର ରୂପବର୍ଣ୍ଣ ।
କାଷ୍ଠ ପାଷାଣ ତରୁ ତୃଣେ, ଅଛନ୍ତି ଶରୀର ପ୍ରମାଣେ । ... ଶ୍ରୀ ଜଗନ୍ନାଥ

୨୧୨୯୬. ନଅଶ ନଉ,
ଶୂନ ନେଇଗଲା ତାମରାକାଉ,
ରହିଲା କେତେ, ଗଲା କେତେ ? ... ରହିଲା ୯୯, ଗଲା ୮୯୧

୨୧୨୯୭. ନଈ ଆର ପାଖେ ଡାକଇ ଶୁଆ
କା ଘରେ ଅଛି ନିଦା ଗୁଆ । ... ସାବଳ



# ପୁରୀବୋଲି

୨୧୨୯୮. ନନ୍ଦାବର୍ତ୍ତ - ମନ୍ଦିର ପ୍ରବେଶପଥରେ ଅର୍ଦ୍ଧ ବୃତ୍ତାକାର ପାହାଚ (ସ୍ଥାପତ୍ୟ ସମ୍ବନ୍ଧୀୟ ଶବ୍ଦ ।)

୨୧୨୯୯. ନଳା ହୁରୁଡ଼ା - ନଳା ସଫା କରୁଥିବା ମେହେନ୍ତର ସେବକ ।

୨୧୩୦୦. ନଳି - ଏକ ପିଠା ।

୨୧୩୦୧. ନଳିଭୁଜ - ଶ୍ରୀହସ୍ତର ସ୍ୱର୍ଣ୍ଣ ଆଭୂଷଣ ।

୨୧୩୦୨. ନହବତ୍ - ବାଦ୍ୟବିଶେଷ

୨୧୩୦୩. ନବ ଯୌବନ ବେଶ - ଅଣସର ପରେ ଶ୍ରୀଜଗନ୍ନାଥଙ୍କ ଦାରୁମୂର୍ତ୍ତୀ ନୂତନ ଚିତ୍ରିତ ହେଲା ପରେ ରଥକୁ ଯିବା ପୂର୍ବରୁ ଯେଉଁ ରୂପ ବା ବେଶରେ ସଜ୍ଜିତ ହୁଅନ୍ତି । ନେତ୍ରୋତ୍ସବରେ ହେବା ରୂପ ବା ବେଶ ।

୨୧୩୦୪. ନରେନ୍ଦ୍ର ଶୌଚ - ଚନ୍ଦନ ପୁଷ୍କରିଣୀ । ପ୍ରଥମ ପାଞ୍ଜିକା ଅନୁଯାୟୀ ଗଙ୍ଗବଂଶ କବି ନରସିଂହ ଦେବଓ ଦ୍ୱିତୀୟ ପାଞ୍ଜି ଅନୁଯାୟୀ ବୀର ନରସିଂହ ଦେବଙ୍କ ପାତ୍ର ନଖପୋଡୀ/ ଲଖପୋଷା ନରେନ୍ଦ୍ର ମହାପାତ୍ର ଏହି ପୁଷ୍କରିଣୀ ଖୋଳାଇଥିଲେ । ଶୌଚ ଶବ୍ଦରୁ ଏହି ସ୍ଥାନ ଶୌଚ ପାଇଁ ନିର୍ମିତ ହୋଇଥିଲା ଓ ପରେ ଶ୍ରୀଜଗନ୍ନାଥଙ୍କ ଚନ୍ଦନନୀତି ପାଇଁ ବ୍ୟବହାର ହୋଇଥାଏ ।

୨୧୩୦୫. ନବାଙ୍କ ବେଢ଼ା - ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଯାତ୍ରା ବିଶେଷ । ଧନୁମାସର ଶେଷ ଦିନ ଏହି ଯାତ୍ରା ହୁଏ । ତା'ପର ଦିନଠାରୁ ଏହି ଯାତ୍ରା ହୁଏ । ତା'ପରଦିନ ଠାରୁ ସୂର୍ଯ୍ୟ ଉତ୍ତରାୟଣ ହେଲାରୁ ନୂତନ ବର୍ଷ ଆରମ୍ଭ ହେଲାରୁ ସମ୍ଭବତଃ ଏହା ଯାତ୍ରାର ଏପରି ନାମକରଣ ହୋଇଛି ।

୨୧୩୦୬. ନନ୍ଦିଗ୍ରାମ - ଜଗନ୍ନାଥ ବଲ୍ଲଭ । ରାମାୟଣର ଏହି ଶବ୍ଦଟି ଶ୍ରୀକ୍ଷେତ୍ରରେ ଆରୋପିତ । ବୈଶାଖ କୃଷ୍ଣପକ୍ଷରେ ଯଥାରୀତି ଗ୍ରହ ନକ୍ଷତ୍ର ଯୋଗରେ ରାମଙ୍କ ଅଭିଷେକ ନୀତି ଅନୁଷ୍ଠିତ ହେବା ଦିନ ରାମ, ଲକ୍ଷ୍ମଣ, ସୀତା ଓ ହନୁମନ୍ତ ବିଜେ ପ୍ରତିମା ଦକ୍ଷିଣ ଘରୁ ରତ୍ନ ସିଂହାସନକୁ ବିଜେ କରନ୍ତି । ସେଠାରେ ଆଜ୍ଞାମାଳ ପାଇ ନିଃଶବ୍ଦରେ ବିମାନରେ ଜଗନ୍ନାଥ ବଲ୍ଲଭରେ ବିଜେ ହୁଅନ୍ତି । ଗୌଡ଼ବାଡ଼ ସାହିର ଦୁଇଜଣ ଭରତ ଓ ଶତ୍ରୁଘ୍ନ ହୋଇ ଆସନ୍ତି । ମନ୍ଦିର ଭଣ୍ଡାରରୁ ଘଣ୍ଟ, ଛତା, କାହାଳୀ ସହ ପାଦୁକା ଆସେ । ଅଭିଷେକ, ବେଶ, ଭୋଗ ପ୍ରସାଦ ଲାଗି ବନ୍ଦାପନାଦି ବଢ଼େ ।

୨୧୩୦୭. ନକ୍ଷତ୍ର ବନ୍ଦାପନା - ସ୍ୱନକ୍ଷତ୍ର ଠାକୁରଙ୍କ ବନ୍ଦାପନା ନୀତି । ବଳଭଦ୍ର, ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ସ୍ୱନକ୍ଷତ୍ର ଯଥାକ୍ରମେ ଶ୍ରାବଣ ମାସରେ, ରୋହିଣୀ ବୃଷ ଓ ଜ୍ୟେଷ୍ଠା ବିଚ୍ଛା ।

୨୧୩୦୮. ନଡ଼ପ - ନୀତି, ପର୍ବପର୍ବାଣୀ ନିମନ୍ତେ ପୂର୍ବ ଦିନରୁ ଆୟୋଜିତ କଞ୍ଚା ସଉଦା । (ତେଲଗୁରେ ନଡପ ଅର୍ଥ ଚେଇ ।)

୨୧୩୦୯. ନାଉକେଶ୍ୱର - ପୁରୁଷୋତ୍ତମ କ୍ଷେତ୍ରର ଶିବଲିଙ୍ଗ ବିଶେଷ ।

୨୧୩୧୦. ନାକଚଣା - ଠାକୁରଙ୍କ ଡାହାଣ ନାକପୁଡ଼ା ସ୍ଥାନରେ ଖଞ୍ଜାଯାଉଥିବା ଫୁଲମାଳ ।

୨୧୩୧୧. ନାକଚଣା ଦ୍ୱାର - ଗୁଣ୍ଡିଚା ଘରର ଏକଦ୍ୱାର (ଯେଉଁବାଟ ଦେଇ ଠାକୁରଙ୍କର ବାହୁଡ଼ା ବିଜେ ହୁଏ ।

୨୧୩୧୨. ନାକୁଆସି - ଶ୍ରୀମୁଖରେ ଚିତାଠକୁ ନାସାଗ୍ର ପର୍ଯ୍ୟନ୍ତ ସ୍ଥାନରେ ଲାଗୁଥିବା ଏକ ଅଳଙ୍କାର । (ଦ୍ର. ଅଳଙ୍କାର ସଜ୍ଜା)

୨୧୩୧୩. ନାଗରଚି - ନଗରା ବାଦକ ।

୨୧୩୧୪. ନାଗାର୍ଜୁନ ବେଶ - କାର୍ତ୍ତିକ ମାସ ପଞ୍ଚକ ଛଅଦିନ ପଡୁଥିବା ବର୍ଷ ଅତିରିକ୍ତ ଦିନଟିରେ ହେଉଥିବା ବେଶ । ପୁରୀ ଲୋକନୃତ୍ୟରେ ବାହାରୁଥିବା ନାଗା ଏବଂ ନାଗାର୍ଜୁନ ବେଶ ସମାନ ।

୨୧୩୧୫. ନାଚୁଣି - ମାହାରି ବିଶେଷ ।

୨୧୩୧୬. ନାଟପା ମଣ୍ଡପ - ନାଟମଣ୍ଡପ ।

୨୧୩୧୭. ନାଡ଼ି - ଏକ ପିଠା

୨୧୩୧୮. ନାନମାନ - ଏକ ପିଠା ।

୨୧୩୧୯. ନାରାଚ - ଶର ।

୨୧୩୨୦. ନାଳୁଆ - ଯେଉଁ ପାତ୍ରରୁ ଦିହୁଡ଼ିରେ ତେଲ ଢଳାଯାଏ ।

୨୧୩୨୧. ନାଠି ଭାଙ୍ଗି ଛିଡ଼ା ହେବା - ଅନ୍ୟବ୍ୟକ୍ତିକୁ ଅନୁସରଣ କରି ବହୁକାଳ ଆଣ୍ଠୁ କୁଡା କରି ଛିଡ଼ା ହେବା ।

୨୧୩୨୨. ନିଉଛାଳି - ସାଷ୍ଟାଙ୍ଗ ପ୍ରଣାମ ।

୨୧୩୨୩. ନିତ୍ୟାନି - ଦୁଗ୍ଧକୁ ପୁରୀରେ ଦୁଧ ନକହି 'ନିତ୍ୟାନି' , କ୍ଷୀର, 'ଓଖର' ଆଦି ଶବ୍ଦ ଲୋକେ ବ୍ୟବହାର କରନ୍ତି । ଦୁଧ ଶବ୍ଦ ନାରୀ ସ୍ତନକୁ ବୁଝାଏ ।

୨୧୩୨୪. ନିମେଇ ଖାଲ - ଭୋଗମଣ୍ଡପ ଦ୍ୱାର ବା ଗରୁଡ଼ ଦ୍ୱାରରେ ଶ୍ରୀ ଚୈତନ୍ୟଙ୍କ ଅଙ୍ଗୁଳି ଚାପରେ ହୋଇଥିବା ଖାଲ (ଲୋକବିଶ୍ୱାସ ଭିତ୍ତିକ) ।

୨୧୩୨୫. ନିଯୋଗ - କୌଣସି କାର୍ଯ୍ୟରେ ନିଯୁକ୍ତି । (ଦ୍ର. ଛତିଶା ନିଯୋଗ)

୨୧୩୨୬. ନିର୍ମାଲ୍ୟ - ଶୁଷ୍କ ଅନ୍ନ ମହାପ୍ରସାଦ । ଦେବତା ବିସର୍ଜିତ ସମସ୍ତ ପଦାର୍ଥ ନିର୍ମାଲ୍ୟ । ଶୁଖିଲା ଅଭଡ଼ା ।

୨୧୩୨୭. ନିର୍ମାଲ୍ୟ ଖଳା - ଦକ୍ଷିଣ ପଟ ବାହାର ବେଢ଼ାରେ ନିର୍ମାଲ୍ୟ ପ୍ରସ୍ତୁତ ହେଉଥିବା ବିସ୍ତୃତ ଅଞ୍ଚଳ ।

୨୧୩୨୮. ନିର୍ମାଲ୍ୟ ମଣ୍ଡପ - ମଣ୍ଡପ ବିଶେଷ ।

୨୧୩୨୯. ନିରେଇଁଷ - ନିରାମିଷ ।

୨୧୩୩୦. ନିଶା - ମୁଖ୍ୟମନ୍ଦିର ବା ବିମାନର ତିନିଦିଗକୁ ଲାଗି ତିନୋଟି ଛୋଟ ମନ୍ଦିର । (ଦ୍ର. ସ୍ଥାପତ୍ୟ ସମ୍ବନ୍ଧୀୟ ଶବ୍ଦ)

୨୧୩୩୧. ନିଶାଚଳ - ପୁରୀ ବଡ଼ ଦେଉଳର ପଶ୍ଚିମକୁ ଲାଗିଥିବା ନିଶା ଦେଉଳର ତଳ, ପୁରୀ ବଡ଼ ଦେଉଳର ପଶ୍ଚିମ

ପଟରେ ଥିବା ଗଣେଶ ମୂର୍ତ୍ତିଙ୍କ ସମ୍ମୁଖସ୍ଥ ଖୋଲା ଜାଗା । ଗ୍ରୀଷ୍ମଦିନରେ ଶୀତଳ ପବନ ସେବନ ପାଇଁ ଏଠାରେ ଭିଡ଼ ଜମେ ।

୨୧୩୩୨. ନିଶା ଦେଉଳ - ମୁଖ୍ୟ ମନ୍ଦିର ବା ବିମାନର ତିନି ଦିଗକୁ ଲାଗି ଛୋଟ ମନ୍ଦିର । ଏହା ବଡ଼ ଦେଉଳର ପଶ୍ଚିମକୁ ଅବସ୍ଥିତ ।

୨୧୩୩୩. ନିହାଲି - ଶୀତଦିନେ ଠାକୁରଙ୍କ ଶୟନ ନୀତିରେ ଦିଆଯାଇଥିବା ଏକ ତୁଳାର ଚାଦର ।

୨୧୩୩୪. ନୀଳମାଧବ - ଜଗନ୍ନାଥଙ୍କ ଶବର ପୂଜିତ ଆଦ୍ୟରୂପ ।

୨୧୩୩୫. ନୀଳକନ୍ଦର - ଶ୍ରୀମନ୍ଦିର, ଶ୍ରୀମନ୍ଦିରର ଗର୍ଭଗୃହ ।

୨୧୩୩୬. ନୀଳକନ୍ଦର ବିହାରୀ - ପୁରୀର ଶ୍ରୀଜଗନ୍ନାଥ ।

୨୧୩୩୭. ନୀଳଗିର - ପୁରାଣ ପ୍ରସିଦ୍ଧ ନୀଳାଚଳ, ପୁରୀ ।

୨୧୩୩୮. ନୀଳଚକ୍ର - ଶ୍ରୀମନ୍ଦିର ଚୂଡ଼ାରେ ସ୍ଥାପିତ ଧାତବ ଚକ୍ର ।

୨୧୩୩୯. ନୀଳସୁନ୍ଦର ପର୍ବତ - ନୀଳାଚଳ ।

୨୧୩୪୦. ନୀଳାଚଳ - ପୁରୀ ଶ୍ରୀକ୍ଷେତ୍ର, ପୁରୀ ଶ୍ରୀଜଗନ୍ନାଥ ଯେଉଁ ପର୍ବତରେ ଅବସ୍ଥିତ । (ନୀଳାଚଳ ପୁରୀରେ, ଉତ୍ତର ନୀଳାଚଳ ଆସାମର କାମାଖ୍ୟା ପାହାଡ଼, ଦକ୍ଷିଣ ନୀଳାଚଳ, ଦାକ୍ଷିଣାତ୍ୟର ପୂର୍ବଘାଟ ନୀଳଗିରି ପର୍ବତ । ପୂର୍ବଘାଟ ପାହାଡ଼ର ଉତ୍ତରସୀମା ପୁରୀ ଜିଲ୍ଲାକୁ ଲାଗିଥିବାରୁ ପୁରୀର ନାମ ନୀଳାଚଳ ହୋଇଛି ।)

୨୧୩୪୧. ନୀଳାଚଳ ଅଭଡା - ରଥଯାତ୍ରାର ପରିସମାପ୍ତି ପରେ ଶ୍ରୀମନ୍ଦିରରେ ଠାକୁରଙ୍କ ପ୍ରଥମ ଅନ୍ନଭୋଗ ।

୨୧୩୪୨. ନୀଳାଚଳ ନାଥ - ଶ୍ରୀଜଗନ୍ନାଥ ।

୨୧୩୪୩. ନୀଳାଚଳ ଚନ୍ଦ୍ର - ପୁରୀରେ ବିରାଜିତ ଶ୍ରୀ ଜଗନ୍ନାଥ ମହାପ୍ରଭୁ ।

୨୧୩୪୪. ନୀଳାଚଳ ବିହାରୀ - ଶ୍ରୀ ଜଗନ୍ନାଥ ମହାପ୍ରଭୁ ।

୨୧୩୪୫. ନୀଳାଦ୍ରି - ନୀଳାଚଳ ।

୨୧୩୪୬. ନୀଳାଦ୍ରି ବିହାରୀ - ଶ୍ରୀ ଜଗନ୍ନାଥ ମହାପ୍ରଭୁ ।

୨୧୩୪୭. ନୀଳାଦ୍ରି ନାଥ - ନୀଳାଚଳ ନାଥ ଶ୍ରୀ ଜଗନ୍ନାଥ ।

୨୧୩୪୮. ନୀଳାଦ୍ରି ବିଜେ - ରଥ ଶେଷରେ ଠାକୁରଙ୍କ ଘର ବାହୁଡ଼ା । ପ୍ରାୟତଃ ଆଷାଢ଼ ଶୁକ୍ଳ ତ୍ରୟୋଦଶୀ ସନ୍ଧ୍ୟାରେ ଏହି ବିଜେ ହୋଇଥାଏ ।

୨୧୩୪୯. ନୀଳାଦ୍ରି ମହୋଦୟ - ବୈଶାଖ ଶୁକ୍ଳ ଅଷ୍ଟମୀ ଦିନ ଶ୍ରୀମନ୍ଦିରରେ ଅନୁଷ୍ଠିତ ବିଶେଷ ନୀତି ।

୨୧୩୫୦. ନୁଣ୍ଡାଳିଆ - ଲୁଣିଆ ଲିଆ ।

୨୧୩୫୧. ନୂଆ ପୁଅ - ଶିଶୁକୃଷ୍ଣ । ଶ୍ରୀକୃଷ୍ଣ ଜନ୍ମ ନୀତିରେ କୃଷ୍ଣଜନ୍ମ, ନାହିକଟାପରେ ମଦନ ମୋହନ ଓ ରାମକୃଷ୍ଣଙ୍କୁ(ନୂଆପୁଅଙ୍କୁ) ଜଗମୋହନରେ ଏକ ଦୋଳିରେ ଝୁଲାଯାଏ ।

୨୧୩୫୨. ନୂଆ କଳେବର - ପ୍ରତି ୧୨ ବର୍ଷରେ ଥରେ ଦୋ ଆଷାଢ ପଡିଲେ ଶ୍ରୀଜଗନ୍ନାଥଙ୍କର କାଷ୍ଠ ପ୍ରତିମାର ଘଟ ପରିବର୍ତ୍ତନ ଉତ୍ସବ, ନବ କଳେବର ।

୨୧୩୫୩. ନେଫେଡା ତରକାରି - ଏକ ପ୍ରକାର ବ୍ୟଞ୍ଜନ ।

୨୧୩୫୪. ନେତଫୁଟା - କାହାକିଆ ପାଉଥିବା ବସ୍ତ୍ର ।

୨୧୩୫୫. ନେତ୍ରପୁଲି - ଏକ ପିଠା ।

୨୧୩୫୬. ନେତ୍ରୋତ୍ସବ - ଆଷାଢ଼ ଅମାବାସ୍ୟା ଦିନ ଠାକୁରଙ୍କର ନେତ୍ରାଙ୍କନ ବିଧି । କନ୍ୟାମାନଙ୍କ ଏକ ଉତ୍ସବ ବିଶେଷ । ପୁରୀ ଜଗନ୍ନାଥ ମହାପ୍ରଭୁଙ୍କର ପଣ୍ଡା ସେବକଙ୍କ କନ୍ୟାମାନେ ଏ ଉତ୍ସବ ପାଳନ୍ତି । ଆଶ୍ୱିନ ଶୁକ୍ଳ ଚତୁର୍ଥୀ ଠାରୁ ସପ୍ତମୀ ପର୍ଯ୍ୟନ୍ତ ଚାରିଦିନ ଅବିବାହିତା କନ୍ୟାମାନେ ବେଶଭୂଷା ହୋଇ ମାର୍କଣ୍ଡେଶ୍ୱରଙ୍କୁ ଦର୍ଶନ କରନ୍ତି ।



# ଅଚ୍ୟୁତାନନ୍ଦ ଦାସଙ୍କ ମାଳିକା ବଚନ

୨୧୩୫୭. ନିର୍ଦ୍ଧନ ଯେଉଁ ପ୍ରାଣୀଏ ହୋଇବେ,
ତାକୁ କେହି ନମାନିବେ ।
ସତ୍ୟ କହୁଥିଲେ ମିଥ୍ୟା ତା ବଚନ,
ଏହି ବିଚାର କରିବେ ।

୨୧୩୫୮. ନିର୍ମଳ ସାତ୍ତ୍ୱିକ କେହି ନ ରହିବେ,
ହୋଇବେ ବଡ ଦାରୁଣ ।
ଧର୍ମ କଥାରେ ସେ ବିଘ୍ନ କରୁଥିବେ,
ନଥିବ ଡର ତାଙ୍କର ।

୨୧୩୫୯. ନାରୀମାନେ ଏହି ଭଜନ ପଢିବେ,
ଶୁଣିବେଟି ବୃଦ୍ଧ ଜନ ।
ଅଜ୍ଞାନୀ ଜନକୁ କେବେ ନ କହିବ,
କହିଲେ ଅପ୍ରାଧ ପୁଣ ।

୨୧୩୬୦. ନିର୍ଦ୍ଦୋଷ ଦୋଷ କ୍ଷମା କଲେ
ଧର୍ମେ ବଡଇ କର୍ମ ।
ପୟରେ ଶିର ପାତିଥିଲେ
ଭକ୍ତିର ବଡ ମର୍ମ ।

୨୧୩୬୧. ନଥିବ କାର ଜାତି କୁଳ ।
ଭୁଞ୍ଜିବେ ଗୋଟିଏ ପତର ।

୨୧୩୬୨. ନିର୍ଲୋଭ ନିସ୍ପୃହା ସର୍ବଦା ଉଦାସୀନ ଯେ ନର ।
ତାହାରେ କରୁଣା କରନ୍ତି ପ୍ରଭୁ ରଙ୍ଗ ଅଧର ।

୨୧୩୬୩. ନାଗାନ୍ତ ଯୋଗାନ୍ତ ବେଦାନ୍ତ ସିଦ୍ଧାନ୍ତ
ବେଦ ନିର୍ବେଦ ବିଚାର ।
ନ୍ୟାୟ ତର୍କ ଶାସ୍ତ୍ର ସର୍ବ ମୁଁ ଲେଖିଛି
ଅନାଦି ଦୟାରୁ ସାର ।

୨୧୩୬୪. ନାନା ଅବତାର ଶ୍ରୀହରି ହୁଅନ୍ତି
ସନ୍ଥଜନ ପାଳିବାକୁ ।

ନାଭି କମଳରୁ ଉଦୟ ହୁଅନ୍ତି
ଭକ୍ତ ଆଜ୍ଞା ପାଳିବାକୁ ।

୨୧୩୬୫. ନାନା ଦେବଙ୍କର ମେଳା ଉପୁଜିବ
କାମନାରେ ମନ ମର ।
ନାମବ୍ରହ୍ମ ଯଜ୍ଞ ସମ୍ପନ୍ନ କରିବେ
ଦମ୍ଭ ଭରି କରି ଚିର ।
ଦାମ୍ଭିକ ଖଚୁଆ ଅନେକ ହୋଇବେ
ଭେଙ୍ଗଟା ହୋଇବେ ସାଧୁ ।
ବଡଲୋକ ନିନ୍ଦା ସରବେ କରିବେ
ଦିନ ଯିବ କାନ୍ଦୁ କାନ୍ଦୁ ।

୨୧୩୬୬. ନିଷ୍କାମ କର୍ମରେ ବଡିମା ନଥାଏ
କହିଥିଲ ପୂର୍ବେ ମୋତେ ।
ଶ୍ରୀଗୁରୁ କରୁଣା ଦିନକୁ ହେଲେ ବି
ଭେଟ ନାହିଁ ଲେଖା ଯନ୍ତେ ।

୨୧୩୬୭. ନବ ଦଶ ବର୍ଷେ ନାରୀ ହେବେ ଋତୁମତୀ ।
ଏକାଦଶ ବରଷରେ ହେବେ ପୁତ୍ରବତୀ ।

୨୧୩୬୮. ନେଚଙ୍କ(ନୀଚ) ରମଣ ଗୋବଧ
ଭିଆଣ ଅଭକ୍ଷ ଭକ୍ଷଣ ମାନ,
କଳିଯୁଗେ ଯେହୁ ବହୁତ ପ୍ରବଳ
ହୋଇବ ଦେଶେ ଦେଶେଣ ।

୨୧୩୬୯. ନେଚ(ନୀଚ) ଲୋକମାନେ ବଡ ଯେ ହୋଇବେ
ବଡ ନେଚକୁ ଯେ ଯିବେ,
ବଡ ଲୋକମାନେ ନିର୍ଧନ ହୋଇଣ
ଥାନ ଛାଡି ପଳାଇବେ ।

୨୧୩୭୦. ନବ ଦିନ ଯାତ୍ରା ଗୁଣ୍ଡିଚା ଭିଆଣ
ପ୍ରତାପ ନବମୀ ଯାଏ,
ନବ ଦିନ ଯେହୁ ଦର୍ଶନ କରନ୍ତି
ତାକୁ ନାହିଁ ଯମ ଭୟେ ।

୨୧୩୭୧. ନ ପାଇବେ ଭକ୍ତେ ଖୋଜି ଭ୍ରମି ନାନା ଦେଶ
ନିଶ୍ଚେ ଖ୍ୟାତ କରିବୁ ଯେ ତୁହି ରାମ ଦାସ
ଲୀଳା କରୁଥିବି ମୁହିଁ ଗୁପତ ଭାବରେ
ନିଷ୍ଠା କରି କହିଲେ ଯେ ଅଚ୍ୟୁତ ଗୀତରେ ।

୨୧୩୭୨. ନିଜନ ବଙ୍କି ଲୁଚିବ ନେମାଳ ଗ୍ରାମରେ ।
ଲୀଳା ଯେ ପ୍ରକାଶ ହେବ ଅଦ୍ୟ ସେହିଠାରେ ।
ନାଶ ଯିବେ ଦୁଷ୍ଟଲୋକ ହେବେ ହାଣଗୋଳ ।
ଲୀଳା ଦେଖୁଥିବେ ବସି ଅଚ୍ୟୁତ ପାମର ।

୨୧୩୭୩. ନ ରହିବେ ଯବନ କେ ପଳାଇବେ ଛାଡ଼ି
ନିସିତ ହୋଇଣ ଯିବେ ନିଜ ପଥ ମାଡ଼ି,
ନୃପତିମାନେ ଯେ ମର୍ତ୍ତ୍ୟେ ନ ରହିବେ କେହି
ନୟନେ ଦେଖିବ ଦିନ ଅଚ୍ୟୁତ କହଇ ।

## ନିଗମ ଗୀତା

୨୧୩୭୪. ନଜାଣେ ଯାଗ ଜପତପ । ପଢ଼ିଣ ନାହିଁ ବେଦକଳ୍ପ ॥
ତୋ ନାମ ପ୍ରବନ୍ଧ ପ୍ରକାଶ । କରି ଛଡ଼ାଇବି କଳ୍ମଷ ॥
ନ ଜାଣେ ଭକ୍ତି ମୁକ୍ତି ପଥ । ନ ଜାଣେ ଅଷ୍ଟାଦଶ ଗ୍ରନ୍ଥ ॥
କରିଣ ନାହିଁ ସାଧୁ ସଙ୍ଗ । ନ ଜାଣେ ମୁଁ ଭକତ ଭାବ ॥
ସନ୍ଥଙ୍କ ସଙ୍ଗେ ବସି ନାହିଁ । ମହାନ ସେବା କରେ କାହିଁ ॥

୨୧୩୭୫. ନିଗମ ପଥରେ ଗମନ । ଅଲେଖା କରିବି ଲେଖନ ॥
ଗୁରୁ ସମର୍ଥ ନ ହୋଇଲେ । ଭୃତ୍ୟ ଭାସିବ ଭବଜଳେ ॥
ମୁଁ ଭାସିଗଲେ ଅବା ତହିଁ । ତହିଁକି ମୋ ଶୋଚନା ନାହିଁ ॥
ଗୁରୁ ମହାମହିମା ମେରୁ । ଦ୍ରବ କରି ପାରନ୍ତି ଦାରୁ ॥

୨୧୩୭୬. ନାଚି ନଚାଉ ଭାବବଳେ । ନୟନେ ଠାରୁ ଅବହେଳେ ॥
ଜୀବର ସଙ୍ଗେ ସଙ୍ଗ ହୋଇ । ଜୀବ ନା ଚିହ୍ନି ନ ପାରଇ ॥

୨୧୩୭୭. ନାନାଦି ଶାହାସ୍ତ୍ର ପୁରାଣ । ସତତଭୂତେ ନାରାୟଣ ॥
ଘଟଘଟରେ ପୂର୍ଣ୍ଣ ବ୍ରହ୍ମ । କେବେହେଁ ନକଲି ଦର୍ଶନ ॥

ନଯାଇ କରିଣ ଦର୍ଶନ । ମନ ହୋଇଲା ଛନଛନ ॥
ଚେତା ଚୈତନ୍ୟ ଉଡ଼ିଗଲା । ଜୀବ ମୋ ଅସ୍ଥିର ହୋଇଲା ॥
୨୧୩୭୮. ନିର୍ମଳ ବୋଲାଇଛି ସେହି । ମଳ ତା'ଠାରେ ଲାଗି ନାହିଁ ॥
ସଂସାରେ ଯେତେ ପାପପୁଣ୍ୟ । ତା'ଠାରୁ ହୁଅଇ ଉତ୍ପନ୍ନ ॥
୨୧୩୭୯. ନିରତେ ଭକ୍ତକୁ ଆବୋରି । କରେଣ ଶଙ୍ଖ ଚକ୍ରଧାରୀ ॥
ଭକ୍ତକୁ ବିପତ୍ତି ହୋଇଲେ । କେବେ ନ ସହେ ପ୍ରଭୁ ଭଲେ ॥
ସେ ଭକତର ଅପମାନ । କେବେ ନ ସହେ ଭଗବାନ ॥
ପତିତ ପାବନର ବାନା । ଭବ ଭୟକୁ ବଜ୍ର ସେହ୍ନା ॥
ଭକତ ବନ୍ଧୁ ନାମ ତାର । ଭକତ ପାଦ ହୃଦେ ହାର ॥
୨୧୩୮୦. ନ ଜାଣିଲେ ଯେ ଗୁରୁଜ୍ଞାନ । ସେହିଟି ହୋଇଲେ ଅଜ୍ଞାନ ॥
ଗୁରୁଟି ଅଟଇ ଯେ ଜ୍ଞାନ । ଗୁରୁ ଅଟଇ ସିନା ଧ୍ୟାନ ॥
ଗୁରୁଟି କାରଣର ତତ୍ତ୍ୱ । ଗୁରୁଟି ଅଟେ ଜ୍ଞାନଦୀପ ॥
ଗୁରୁରୂପଟି ଗୁରୁ ତପ । ଯନ୍ତ୍ର ମନ୍ତ୍ର ନାମ ସ୍ୱରୂପ ॥
୨୧୩୮୧. ନ ପଶୁ କହୁଅଛି ମୁହିଁ । ତୋ ସଙ୍ଗେ ନ ଯିବେଟି କେହି ॥
ସର୍ବେ ବୋଲିବେ ମଲା ମଲା । କାହିଁ ତୁ ଛାଡ଼ିଗଲୁ ବଳା ॥
ମାତା ପିତା ତୋ କାନ୍ଦୁଥିବେ । ଅର୍ଜିଲା ଖାଉନ୍ଦ ବୋଲିବେ ॥
ଘରର ଘରଣୀ ଯେ ତହିଁ । ଆନପତି ଲୋଡ଼ିବ ଯାଇଁ ॥
ପୁଅ ବୋଲିବ ସାହୁ ହେଲି । ଘରର ଆର୍ଦୋଳି ବୁଝିଲି ॥
ମଡ଼ା ବୋଲିଣ ତୋତେ କେହି । ନ ଛୁଇଁବେ କହିଲି ମୁହିଁ ॥
ଶ୍ମଶାନେ ପକାଇଣ ଦେବେ । ଶ୍ୱାନ ଶୃଗାଳ ଯେ ଭକ୍ଷିବେ ॥
ହାଡ଼ ମାଁଂସକୁ ଚୋବାଇ । ଦ୍ୱିଦିନେ ଲେଶ ଥିବନାହିଁ ॥
ନବଦିନ କ୍ରିୟା କରିବେ । ଦଶଦିନେ ତୁଠ ସାରିବେ ॥
ଏଗାର ଦିନରେ ଆମିଷ । ଭୁଞ୍ଜିଣ ଛାଡ଼ିବେ ତୋଆଶ ॥
ବାର ଦିନରେ କ୍ରିୟା କର୍ମ । ବନ୍ଧୁବାନ୍ଧବ ତେରଦିନ ॥
ଯେଝା ଘରକୁ ଚଳିଯିବେ । କାଳେ ସେ ଅନ୍ତର ହୋଇବେ ॥
୨୧୩୮୨. ନାମକୁ ଦେଖି ଭ୍ରମ ଯିବ । ଏ ଯମଦଣ୍ଡ ଯେ ନୋହିବ ॥
ନାମର ବ୍ରହ୍ମରୂପ ଦେଖ । ଘୋଟିଛି ସଂସାର ତ୍ରୈଲୋକ୍ୟ ॥
ନାମ ପ୍ରଣବର ଆକାର । ନାମଟି ଭେଦ ଯେ ଓଁକାର ॥

ସେହି ଓଁ କାର ଏକାକ୍ଷର । ବ୍ୟାପିଛି ଏ ସଚରାଚର ॥
୨୧୩୮୩. ନାଭିଚକ୍ର ତଥି ଉପରେ । ସ୍ୱର୍ଗ ଲୋକଛନ୍ତି ତହିଁରେ ॥
ସେହି ଅନ୍ତରୀକ୍ଷ ଭୁବନ । ତହିଁ ଦେବଲୋକଙ୍କ ସ୍ଥାନ ॥
୨୧୩୮୪. ନଉକା ମଙ୍ଗେ ବିଜେ କରି । ହସ୍ତରେ କେଲୁଆର ଧରି ॥
ଭାବ ବୁଝିପାରି କରଇ । ତେଣୁ ନାମଟି ଭାବଗ୍ରାହୀ ॥
ଭାବ କରିବା ପାଇଁ ସେହି । ଭବରେ ଜନମ ହୁଅଇ ॥
ଯେ ମତେ ଯେ ଭାବ ଲଗାଇ। ସେ ତେଡେମତେ ଧରି ଥାଇ ॥
ଭାବକୁ ନିକଟରେ ଥାଇ । ଅଭାବେ ଖୋଜିଲେ ନ ପାଇ ॥
୨୧୩୮୫. ନାମ ଚିହ୍ନ ପରମ ଧାମ । ନିଶ୍ଚୟ କରିବୁ ବିଶ୍ରାମ ॥
ଆଦ୍ୟେ ଅଟଇ ରାଧାରାମ । ପଛେ ଅଟଇ କୃଷ୍ଣ ନାମ ॥
ହେ ମନ ମୋର ବୋଲକର । ହେତୁ ତୋହର ହୃଦେ ଧର ॥
ହେ ରାଧା କୃଷ୍ଣ ଭବବାଧା । ଦୂର ହୋଇବ ତୃଷା କ୍ଷୁଧା ॥
୨୧୩୮୬. ନାମ ରଟିଲେ ଯମବାସ । ନ ଲାଗିବ ଯେ କାଳପାରି ॥
ଦୁର୍ଲ୍ଲଭ ମନୁଷ୍ୟ ଜନମ । ପାଇ କି ପାଇଁ ହେଉ ଭ୍ରମ ॥
୨୧୩୮୭. ନାମ ବ୍ରହ୍ମରୂପେ ବିଦିତ । ନିଷ୍କାମ ତୁମ୍ଭ ଧର୍ମ ମତ ॥

## ସପ୍ତାଙ୍ଗ ଯୋଗସାର ଟୀକା

୨୧୩୮୮. ନମସ୍ତେ ଗୁରୁଦେବ ହେ ଯୋଗାଧିପୁରୁଷ ।
ଅନ୍ତର୍ଯ୍ୟାମି ନାଥ ତବ ମହିମା ଅଶେଷ । ୧।
ନମସ୍ତେ ଗୁରୁଦେବ ପରମଯୋଗେଶ୍ୱର ।
ସଚରାଚରାଦି ସ୍ୱାମୀ ସକଳ ଗୋଚର । ୨।
ନମସ୍ତେ ଗୁରୁଦେବ ହେ ସର୍ବଶକ୍ତି ବେତ୍ତା ।
ନମସ୍ତେ ଗୁରୁଦେବ ହେ ସର୍ବସୁଖଦାତା । ୩ ।
ନମସ୍ତେ ଗୁରୁଦେବ ହେ ସର୍ବଧର୍ମସାର ।
ନମସ୍ତେ ଗୁରୁଦେବ ହେ ବ୍ରହ୍ମ ବିଷ୍ଣୁ ହର । ୪ ।
ନମସ୍ତେ ଗୁରୁଦେବ ହେ ଜ୍ଞାନକଳ୍ପତରୁ ।
ସର୍ବଧର୍ମଧାରଣା ଅଟଳ ମହାମେରୁ । ୫ ।

ନମସ୍ତେ ଗୁରୁଦେବ କରୁଣାମୟ ସିନ୍ଧୁ ।
ଅଘତିମିର ନାଶକ ତୁମ୍ଭେ ଜ୍ଞାନଇନ୍ଦୁ । ୬ ।
ନମସ୍ତେ ଗୁରୁଦେବ ପରମ ବ୍ରହ୍ମରାଶି ।
ଗଳାରୁ ଉତାର ମୋର କାଳଦଣ୍ଡପାଶି । ୭ ।

୨୧୩୮୯. ନନ୍ଦନନ୍ଦନ କାଳିଆରେ
ତୋର ନିଷ୍ଠୁର ଏଡ଼ିକି ଭାବ
ଧିକ ମୋର ଜନ୍ମ ଧିକ ଏ ଜୀବନ
କାହିଁକି ଦେଲା ଦଇବ । ୦ ।
ସଦା ତୁମ୍ଭ ଭାବ ଭାବି ନିରତେ
ଥରେ ନ ଦେଖିଲି ଏ ପାପ ନେତ୍ରେ
କି ଅପରାଧ ମୁଁ କେବେ କରିଥିଲି
ଏବେ ହେଲା ପରାଭବ । ୧ ।
ଏଡ଼ିକି ନିଷ୍ଠୁର ତୋର ହୃଦୟ
ପଥର ହେଲେ ହୁଅନ୍ତାଣି ନୀର
ଅଜଣା କି ଅଛୁ ଜାଣି ନପାରୁଛୁ
କାହାଲାଗି ଅନୁଭବ । ୨ ।
ଯେତେ ଯେତେ ଦଣ୍ଡ ଦେଲୁଣି ମୋତେ
ଏ ଜନମେ ଯଦି ଭେଟନ୍ତି ତୋତେ
ପ୍ରେମେ ତୋରେ ବାନ୍ଧି ତୋ ଚରଣ ଛନ୍ଦି
ହୃଦ ପଦ୍ମେ ଦେବି ଠାବ । ୩ ।
ଏହି ସୁଦୟ ବାରେ ମାତ୍ର ଥାଉ
ରାଗମାର୍ଗ ଭଜି ଏ ଦିନ ଯାଉ ।
ଭାବବିନୋଦିଆ କହେ ପ୍ରାଣବନ୍ଧୁ
ମତେ କି ଭେଟ ପାଇବୁ । ୪ ।

୨୧୩୯୦. ନନ୍ଦନନ୍ଦନ ହେ ସୁଦୟା କର ।
ଜନ୍ମେ ଜନ୍ମେ ମୁହିଁ ତୁମ୍ଭ କିଙ୍କର ।
ଦୃଷ୍ଟିର ଅଗ୍ରତେ ଖେଳୁଛି ନିରତେ
ତେଣିଁ ପଡ଼ି ହରି କୋଳ ମୋର । (ପଦ)

କିଅଛୁତ ଦୋଷକୁ ଏଡ଼େ ନିଷ୍ଠୁର ।
ହେଉଅଛ ଆହେ ରଙ୍ଗା ଅଧର ।
ଭୃତ୍ୟ ସଦା ଅପରାଧ ହେବା ଯୋଗୁଁ
ତେଣୁ ତୁମ୍ଭ ନାମ କୃପାସାଗର । ୧ ।
ବାରଚିବା ରୂପେ କର ବିହାର
ଦୁଇ ରତି ବିନେ ବିରସ ମୋର ।
ବଣିକ ହୋଇଣ ସୁନା ନ ଚିହ୍ନିଲି
କିଏ ନେଲା ମୋର କସଟି ପଥର । ୨ ।
ଦେଖାଅ ଚତୁର୍ଦ୍ଧା ମୂରତି ତୋର
ଦ୍ୱିଭୁଜେ ବିଶ୍ୱାସ ନାହିଁ ମୋହର ।
ଇଚ୍ଛା ପୂର୍ଣ୍ଣକର । ଇଚ୍ଛାପୁର ଠାର ।
ବାଞ୍ଛା ନିଧି ପରା ନାମ ତୁମ୍ଭର । ୩ ।
ଭାବେ ଅଭିରାମ ଲକ୍ଷ୍ମୀକୁମର ।
ଭାସୁଅଛି କେବଳ ଭବଜଳ ।
ଲକ୍ଷ୍ମୀ ନାରାୟଣ ମାତା ପିତା ଯାର ।
ତେବେ ସଂସାରେ ମୋ କାହାକୁ ଡର । ୪ ।



## ଅମୃତ ବଚନ

୨୧୩୯୧. ନିଜ ଅନ୍ତରର ଧ୍ୱନି ଅନୁସରଣ କରି ଚାଲିବା ଛଡା ତ ମଣିଷର ସଂପୂର୍ଣ୍ଣ ଶାନ୍ତିର ଅନ୍ୟ କୌଣସି ପନ୍ଥା ନାହିଁ ।

୨୧୩୯୨. ନିଜର ସ୍ୱାଧୀନତା ବୁଦ୍ଧ, ଈଶା, ମହମ୍ମଦ ବା କୃଷ୍ଣଙ୍କ ପାଖରେ ବିକି ଦିଅ ନାହିଁ ।

୨୧୩୯୩. ନାରୀର ଅକୃତ୍ରିମ ଅଳଙ୍କାର ନୀରବତା ।

୨୧୩୯୪. ନିଜ ଇଚ୍ଛାରେ ନୁହେଁ, ଈଶ୍ୱରଙ୍କ ବାସନାରେ ଖୁସିହୁଅ । ଅର୍ଜି ତୁମର, ମର୍ଜି ତାର ।

୨୧୩୯୫. ନିର୍ଜ୍ଜନତା ମୂର୍ଖ ପକ୍ଷରେ ବନ୍ଦୀଶାଳା, ଜ୍ଞାନୀ ପାଇଁ ସ୍ୱର୍ଗ ।

୨୧୩୯୬. ନିଜର ହୃଦୟର ବିକାର ନ ଘୁଞ୍ଚେଇ ପରର ଭଲ କରିବାକୁ ଇଚ୍ଛା କରିବା ଯାହା, ଧୂଳି ହାତରେ ଅନ୍ୟର ମୁହଁ ପୋଛିଦେବା ସେୟା ।

୨୧୩୯୭. ନଦୀର ଜୁଆର, ବୃକ୍ଷର କୁସୁମ, ଆଉ ଚନ୍ଦ୍ରକଳା ବିଲୀନ ହୋଇବି ପୁଣି ଫେରି ଆସେ; ଫେରେନି କେବଳ ଦେହଧାରୀର ଯୌବନ ।

୨୧୩୯୮. ନାରୀ ସଂସାରରେ ସାର ।

୨୧୩୯୯. ନିୟମ ନିଷ୍ଠାରେ ସଦା ତତ୍ପର ରହିବା ଉଚିତ ।

୨୧୪୦୦. ନିର୍ଦ୍ଧନତାରେ ନୁହେଁ, ଭିକ୍ଷାରେ ଦୀନତା ପ୍ରକଟ ହୁଏ । ମହାଦେବ କୌପୀନଧାରୀ, ପରମ ନିର୍ଦ୍ଧନ-ତଥାପି ସେ ପରମେଶ୍ୱର ରୂପରେ ପୂଜିତ ।

୨୧୪୦୧. ନିଜକୁ ଯଦି ନିର୍ବୋଧ ବୋଲି ଦର୍ଶାଅ ସମସ୍ତେ ତୁମ ଉପରେ ବୋଝ ଚାପିବେ ।

୨୧୪୦୨. ନିଜ ପାଇଁ ବ୍ୟୟ କରିବା ମାନେ ଗଙ୍ଗାର ପଥର ହୋଇପାରେ; ପର ହିତରେ ପରୀର ଡେଣା ମଧ୍ୟ ବ୍ୟୟ ହୋଇପାରେ ।

୨୧୪୦୩. ନମ୍ର ପାଖରେ ନତ ହେବା ଧର୍ମ, ଉଦ୍ଧତ ପାଖରେ ଆତ୍ମ ସମର୍ପଣ ଅଧର୍ମ ।

୨୧୪୦୪. ନୀତି ନିପୁଣ ମନୁଷ୍ୟ ନିନ୍ଦା କରୁ ବା ସ୍ତୁତି କରୁ, ଲକ୍ଷ୍ମୀ ଆସୁ ବା ଯାଉ, ମୃତ୍ୟୁ ଆଜି ଅଥବା ଯୁଗେ ବ୍ୟବଧାନରେ ଆସୁ - ଯିଏ ଧୀର, ସେ ନ୍ୟାୟ ମାର୍ଗରୁ ବିଚ୍ୟୁତ ହୁଅନ୍ତି ନାହିଁ ।

୨୧୪୦୫. ନିର୍ଣ୍ଣୟ କରି ପାରିଲେ ହିଁ ସବୁ ଝଞ୍ଜଟ ଶେଷ ।

୨୧୪୦୬. ନାମରେ କ'ଣ ଯାଏ ଆସେ ! ଯାହାକୁ ଗୋଲାପ ବୋଲି ଜାଣୁ ତାକୁ ଅନ୍ୟ ନାମରେ ଜାଣିଲେ ବି ସେ ସେହିପରି ସୁଗନ୍ଧ ଦେଉଥିବ ।

୨୧୪୦୭. ନୀତିଶାସ୍ତ୍ରର ସାର କଥା - କାହାକୁ ବିଶ୍ୱାସ ନ କରିବା ।

୨୧୪୦୮. ନାସ୍ତିକତା ହେଉଛି ଆଶାର ମୃତ୍ୟୁ ଓ ଆତ୍ମାର ଆତ୍ମହତ୍ୟା ।

୨୧୪୦୯. ନିଷ୍କର୍ମା କିଏ ? - ପେଟୁ ।

୨୧୪୧୦. ନିନ୍ଦୁକ ଓ ବିଷାକ୍ତ ସାପର ଦୁଇଟି ଜିହ୍ୱା ।

୨୧୪୧୧. ନିରର୍ଥକ ଜୀବନ, ଅନାହୂତ ମୃତ୍ୟୁର ସମାନ ।

୨୧୪୧୨. ନିରାଶା ନର୍କର ପଙ୍କ, ଆନନ୍ଦ ସ୍ୱର୍ଗର ଶାନ୍ତି ।

୨୧୪୧୩. ନିର୍ମଳ ହୃଦୟ ମଣିଷକୁ ସହଜରେ ଭୟଭୀତ କରାଯାଇ ପାରେ ନାହିଁ ।

୨୧୪୧୪. ନିଷିଦ୍ଧ ବସ୍ତୁ ଗ୍ରହଣ କରନାହିଁ । କାରଣ ତାର ସ୍ୱାଦ କ୍ରମଶଃ ଲୋପ ପାଏ ଆଉ ତିକ୍ତ ଅଂଶ ରହିଯାଏ ।

୨୧୪୧୫. ନୀତି ହିଁ ରାଜା, ନୀତି ହିଁ ହେଉଛି, ଆଇନ କାନୁନ ।

୨୧୪୧୬. ନିଜ କର୍ମ କର, ମନ ଦେଇ କର - ମନର ଆକାଶ ପରିଷ୍କାର ହୋଇଯିବ ।

୨୧୪୧୭. ନିଜକୁ ଚିହ୍ନିବାକୁ ହେଲେ ନିଜେ ବାହାରେ ବୁଲି ଆସି ତଟସ୍ଥ ହୋଇ ନିଜକୁ ଦେଖିବାକୁ ହେବ ।

୨୧୪୧୮. ନମ୍ରତା ଭଳି ଭଲ ନୀତି ନାହିଁ ।

୨୧୪୧୯. ନଦୀ-ତୀର ନଦୀକୁ କହେ - ତୁମର ଢେଉକୁ ମୁଁ ଧରି ରଖି ପାରୁନି, ତୁମର ପଦଚିହ୍ନକୁ ହୃଦୟରେ ଧରି ରଖିବାକୁ ଦିଅ ।

୨୧୪୨୦. ନୀତିହୀନ ରାଜା, ଧର୍ମହୀନ ଧନ, ହରି - ସମର୍ପଣ ବିନା ସତ୍‌କର୍ମ ଏବଂ ବିବେକହୀନ ବିଦ୍ୟା ବ୍ୟର୍ଥ ହୁଏ ।

୨୧୪୨୧. ନିଜ ବେଳକୁ ଯାହା ତୁମର ଅପସନ୍ଦ, ଅନ୍ୟ ପାଇଁ ତାହା ପସନ୍ଦ କରି ଦେଖ ।

୨୧୪୨୨. ନିଜର ଭଲ ସମସ୍ତେ ଚାହାନ୍ତି, କିଛି ମଣିଷ ଆପଣାଜନମାନଙ୍କର ଭଲ ଚାହାନ୍ତି କିନ୍ତୁ ସମସ୍ତଙ୍କର ଭଲ ଯିଏ ଚାହେଁ, ସେ ତ ଈଶ୍ୱରଙ୍କ ଦାସ ।

୨୧୪୨୩. ନକଲ କରି ଆଜି ପର୍ଯ୍ୟନ୍ତ କେହି ମହାନ୍ ହୋଇନାହିଁ ।

୨୧୪୨୪. ନିଜେ ସର୍ବତ୍ର ବିରାଜ କରି ହୁଏନାହିଁ ଜାଣି ଈଶ୍ୱର ମାତା ସୃଷ୍ଟି କରିଛନ୍ତି ।

୨୧୪୨୫. ନାମ ଆଉ ମର୍ଯ୍ୟାଦା ପଛରେ ପୃଥିବୀ ସର୍ବସ୍ୱାନ୍ତ ।

୨୧୪୨୬. ନିଜର ପେଟକୁ ପଶୁର ଗୋରସ୍ଥାନ (=କବରଖାନା) କରନାହିଁ ।

୨୧୪୨୭. ନୌକା ଜଳରେ ଥାଏ କିନ୍ତୁ ନୌକାରେ ଜଳ ଥାଏନି; ମୁମୁକ୍ଷୁ (=ସଂସାର ତ୍ୟାଗୀ ସନ୍ୟାସୀ) ସଂସାରରେ ରୁହନ୍ତି, ସଂସାର ଯେପରି ସେଥିରେ ନ ରୁହେ ।

୨୧୪୨୮. ନୀରବତା ସ୍ତ୍ରୀ ଲୋକର ଲାବଣ୍ୟ ଆଣେ ।

୨୧୪୨୯. ନିଜର ବିଚାର ବିବେଚନା ସମ୍ପର୍କରେ ଖୁବ୍ ସାବଧାନ, ସ୍ୱର୍ଗର କର୍ତ୍ତା ଆମ୍ଭମାନଙ୍କର ବିଚାର ଜାଣି ପାରନ୍ତି ।

୨୧୪୩୦. ନ ବୁଝି କଥା କହିବା ଠିକ୍ ନୁହେଁ, ଅହଙ୍କାରରେ ଗଟଗଟ (=ପକା ରାସ୍ତାର ଦ୍ରୁତଗମନ ବେଳେ ଜୋତା ଘୋଷଡାର ଶବ୍ଦ) ଚାଲିବା ନିର୍ବୋଧତା । ଗର୍ବ ଭଲ ନୁହେଁ, ସହଜ ସରଳ ଜୀବନଯାପନ ଶ୍ରେୟ ।

୨୧୪୩୧. 'ନିରାଶା' ଯେ କ'ଣ - 'ବିଶ୍ୱାସ' ତାହା ଜାଣେ ନାହିଁ ।

୨୧୪୩୨. ନିଜ ଉପରେ ଅସୀମ ବିଶ୍ୱାସ ରଖିବା ଏବଂ ଏକାକୀ ନିର୍ଜନରେ ବସି ଅନ୍ତରାତ୍ମାର ଧ୍ୱନି ଶୁଣିବା ବୀର-ପୁରୁଷର ହିଁ କାର୍ଯ୍ୟ ।

୨୧୪୩୩. ନବୀନମାନଙ୍କର ଶିକ୍ଷାବ୍ୟର୍ଥ, ଯଦି ସେମାନେ ସଦ୍‌ବ୍ୟବହାର ନ ଶିଖନ୍ତି ।

୨୧୪୩୪. ନିଜ ପ୍ରତି ସତ୍ ରହିଲେ, ପୃଥିବୀରେ ଆଉ କିଛି ଦରକାର ପଡିବାର ଆବଶ୍ୟକତା ନାହିଁ ।

୨୧୪୩୫. ନିଜ ପାଖରେ ଯାହା ସମ୍ଭବ ତାହା ହିଁ କହିବା ଏବଂ ସେଇ ପ୍ରକାର କାର୍ଯ୍ୟ କରିବା - ତାକୁ ହିଁ କହନ୍ତି ସତ୍ୟ ।

୨୧୪୩୬. ନୀତି ମାନି ଚଳିବା, ସ୍ୱୀୟ ଇନ୍ଦ୍ରିୟ ଓ ମନକୁ ଆୟତ୍ତ ରଖିବା ଏବଂ ନିଜକୁ ଚିହ୍ନିବା - ଏହା ହେଉଛି ସଭ୍ୟତା, ଏହା ବିରୁଦ୍ଧରେ ବା ବିପରୀତରେ ଯାହା କିଛି ତାହା ଅସଭ୍ୟତା ।

୨୧୪୩୭. ନେତା ଦେଖନ୍ତି - 'ସେ ଆମ କାର୍ଯ୍ୟରେ ଲାଗିବ କି ନାହିଁ' । ସାଧୁ ଦେଖନ୍ତି,- 'ସେ ଦୁଃଖୀ କି ନୁହେଁ' ।

୨୧୪୩୮. ନେତାର ଏକ ପାର୍ଟି ଥାଏ, ସାଧୁ ଥାଏ ଏକା; ନେତାର ବଳ ତାର ଦଳ; ସାଧୁର ବଳ ତାର ନିର୍ମଳ ହୃଦୟ ।

୨୧୪୩୯. ନେତା ଦେଖନ୍ତି - ତାଙ୍କର ଆଜ୍ଞା ପାଳିତ ହେଲା କି ନାହିଁ; ସାଧୁ ଦେଖନ୍ତି - ତାଙ୍କ କଥା ଲୋକେ ଗ୍ରହଣ କଲେ କି ନାହିଁ ।

୨୧୪୪୦. ନିଜ ଠାରୁ ଯେଉଁ ମଣିଷ ବଳବାନ ତାର ଅପରାଧ ସମସ୍ତେ ବିବଶ ହୋଇ ସହ୍ୟ କରନ୍ତି । ପ୍ରକୃତ ସହନଶୀଳତା ହେଲା - ନିଜଠାରୁ ଦୁର୍ବଳ ମଣିଷର ଅପରାଧ ସହ୍ୟ କରିବା ।

୨୧୪୪୧. ନିଜର ମାନବତା ଦୃଢ-ପ୍ରତିଷ୍ଠିତ ରଖିବା ପାଇଁ ସର୍ବଦା ସାବଧାନ ଓ ସୁଦକ୍ଷ ରହିବା ପ୍ରୟୋଜନ ।

୨୧୪୪୨. ନକ୍ଷତ୍ର ଆକାଶର କବିତା, ଆଉ ନାରୀ ପୃଥିବୀର ।

୨୧୪୪୩. ନଅଟି ଆକାଶରୁ ଆଠଟି ସ୍ୱର୍ଗରେ, ନବମଟି ଥାଏ ମଣିଷର ହୃଦୟରେ ।

୨୧୪୪୪. ନର୍କରେ ଖୁସିର ପର୍ଦ୍ଦା, ସ୍ୱର୍ଗରେ ଥାଏ ଦୁଃଖ ଆଉ କଠିଣତାର ପର୍ଦ୍ଦା ।

୨୧୪୪୫. ନିଜର ଲାଭପାଇଁ ଯେ ଅନ୍ୟର କ୍ଷତି କରେ ସେ ହେଉଛି ରାକ୍ଷସ ବିଶେଷ ।

୨୧୪୪୬. ନୀତି, ଭବିଷ୍ୟତ, ବେଦ, ଶାସ୍ତ୍ର ଓ ବ୍ରହ୍ମଜ୍ଞାନୀ-ମଣିଷ ଜଗତରେ ମିଳନ୍ତି, କିନ୍ତୁ ନିଜର ଅଜ୍ଞାନତା ଜାଣିଥିବା ମଣିଷ ବିରଳ ।

୨୧୪୪୭. ନିଜ ସନ୍ତାନକୁ ଯିଏ ଚିହ୍ନନ୍ତି ସେ ହିଁ ବୁଦ୍ଧିମାନ ।

୨୧୪୪୮. ନାସ୍ତି ବିଦ୍ୟାସମମ୍ ଚକ୍ଷୁଃ । (=ବିଦ୍ୟା ତୁଲ୍ୟ ଚକ୍ଷୁ ନାହିଁ)

୨୧୪୪୯. ନିଃସ୍ୱାର୍ଥ ପ୍ରିୟ ମିତ୍ର, ଗୁଣବାନ ଭୃତ୍ୟ, ଅନୁରକ୍ତ ପତ୍ନୀ ଓ ସହୃଦୟ ସ୍ୱାମୀଙ୍କ ପାଖରେ ଦୁଃଖର କଥା କହି ଶାନ୍ତି ମିଳିଥାଏ ।

୨୧୪୫୦. ନାରୀକୁ ଅନାଡି ଭାବିବା ଠିକ୍ ନୁହେଁ । ନାରୀ ମଧ୍ୟ ମା'ଅଟେ । ବୈଦ୍ୟବୁଦ୍ଧି ଧନନ୍ତରୀ ଭଳି ବୈଦ୍ୟରାଜଙ୍କର ନାଡି ଚିପି ଶରୀରର ଖବର ନାରୀ ଜାଣିପାରେ । ମଣିଷର ଶ୍ୱାସରୁ ବି ତାର ମନରଭାବ ଆୟର କରି ପକାଏ । ମଣିଷ କ'ଣ ଚାହେଁ ପ୍ରେମ ନା ଅଭିନୟ, ଠକିବାକୁ ନା ଠକେଇବାକୁ ।

୨୧୪୫୧. ନିଜର ଆତ୍ମା ଓ ସତ୍ୟତାର ରକ୍ଷା ନିଜେ ହିଁ କରିବା ଉଚିତ; ପାଦ୍ରୀ ବା ପୁରୋହିତଙ୍କ ଜିମାରେ ଏକାର୍ଯ୍ୟ ଛାଡିଦେବା ଠିକ୍ ନୁହେଁ ।

୨୧୪୫୨. ନାରୀର ଉଚିତ୍ ନୁହେଁ ପୁରୁଷକୁ ତାର ଅନୁପସ୍ଥିତିରେ ଅଭ୍ୟସ୍ତ ହେବାକୁ ଦେବା ।

୨୧୪୫୩. ନିଜର ଭାଗ୍ୟ ସମ୍ପର୍କରେ କେହିବି ସନ୍ତୁଷ୍ଟ ନୁହେଁ; ପୁଣି ନିଜର ବୁଦ୍ଧି ଓ ମେଧା ସମ୍ପର୍କରେ ମଧ୍ୟ ଅସନ୍ତୁଷ୍ଟ ନୁହେଁ ।

୨୧୪୫୪. ନାରୀର ମନକୁ ଅନୁମାନ କରି ମାପିବାକୁ ଗଲେ ପୁରୁଷ ଭୁଲ କରିଥାଏ ।

୨୧୪୫୫. ନିଜର ପୁନରାବୃତ୍ତି କରେ ଇତିହାସ; ଐତିହାସିକ ମାନେ କରନ୍ତି ପରସ୍ପରର ।

୨୧୪୫୬. ନିର୍ଭୀକତାର ଶ୍ରେୟାଂଶ ହେଉଛି ସ୍ୱେଚ୍ଛାରେ କାର୍ଯ୍ୟ କରିବାର ସ୍ୱାଧୀନତା ।

୨୧୪୫୭. ନିଜକୁ ହିଁ ସିଧା ହୋଇ ଠିଆ ହେବାକୁ ହେବ, ଅପରର ସାହାଯ୍ୟରେ ନୁହେଁ ।

୨୧୪୫୮. ନାରୀ ଓ ସଙ୍ଗୀତ ବ୍ୟାପାରରେ କେତେବେଳେ ବି ଦିନ, କ୍ଷଣ ସ୍ଥିର କରିବ ନାହିଁ ।

୨୧୪୫୯. ନିର୍ବୋଧର ହୃଦୟରେ କ୍ରୋଧର ବସା ।

୨୧୪୬୦. ନୀରବତାର ପ୍ରୟାସ ହିଁ ଶ୍ରେଷ୍ଠ ଉତ୍ତର ।

୨୧୪୬୧. ନଗରପାଳ ନିଜେ ଯେଉଁଠି ଚିକିତ୍ସକ; ସେହି ନଗରରେ ବାସ କର ନାହିଁ ।

୨୧୪୬୨. ନିଜ ହାତରେ ସବୁ କର ।

୨୧୪୬୩. ନିଷିଦ୍ଧ ଫଳ ହିଁ ସବୁଠାରୁ ମିଠା ।

୨୧୪୬୪. ନିର୍ବୋଧର ହୃଦୟର ଅବସ୍ଥାନ ମୁହଁରେ, ଜ୍ଞାନୀର ମୁହଁର ଅବସ୍ଥାନ ହୃଦୟରେ ।

୨୧୪୬୫. ନାହିଁ ଯେଉଁଠି ପତ୍ନୀର କଟୁଭାଷ, ଏଭଳି ସ୍ୱାମୀର ଘର ହିଁ ସ୍ୱର୍ଗବାସ ।

୨୧୪୬୬. ନିଜର ପ୍ରେୟସୀ କ'ଣ ନିଜ ପାଇଁ କୁତ୍ସିତ ହୁଏ ?

୨୧୪୬୭. ନିଷ୍ଫଳ କର୍ମକୁ ଜୟ କରିବାର ଏକମାତ୍ର ଉପାୟ ହେଉଛି ଈଶ୍ୱରଙ୍କୁ ପବିତ୍ର ଓ ବାସନା ମୁକ୍ତ ହୃଦୟରେ ସ୍ମରଣ କରିବା ।

୨୧୪୬୮. ନାଚି ନ ଜାଣିଲେ ବାଜଣାର ଦୋଷ, ଏକଥା କହେ 'ବେତାଳିଆ' ।

୨୧୪୬୯. ନିଜର କରଣୀୟ କାର୍ଯ୍ୟ ଯେଉଁମାନେ ଅନ୍ୟହାତରେ ଛାଡି ଦିଅନ୍ତି ସେମାନେ ଶୀଘ୍ର ଦେଖନ୍ତି, ସେମାନଙ୍କର ସମସ୍ତ କାମ ହାତ ଛଡା ହୋଇ ଯାଇଛି ।

୨୧୪୭୦. 'କର' ଏକଥା କହିବ ନାହିଁ; କୁହ 'ଆସି ହାତ ଲଗାଅ' ।

୨୧୪୭୧. ନିଜକୁ କ୍ଷମା କରିବା ଅର୍ଥ, ନିଜକୁ ଦୋଷୀ ସାବ୍ୟସ୍ତ କରିବା ।

୨୧୪୭୨. ନରମ ଭଦ୍ର କଥାରେ ହାଡ ଭାଙ୍ଗେ ନାହିଁ, କିନ୍ତୁ କଠିଣ ହୃଦୟ ତରଳିଯାଏ ।

୨୧୪୭୩. ନିଜର କାର୍ଯ୍ୟ କରିବା ପାଇଁ ପାରଗ ନୁହେଁ, ସେଇ କାର୍ଯ୍ୟ ପାଇଁ ଯୋଗ୍ୟ ଲୋକକୁ ଚିହ୍ନଟ କରି ପାରିବା ହେଉଛି ସାଫଲ୍ୟତାର ଚାବିକାଠି ।

୨୧୪୭୪. ନିଜର କର୍ତ୍ତବ୍ୟ ଯିଏ ବୁଝନ୍ତି ସେ ଜ୍ଞାନୀ; ସେଇ କର୍ତ୍ତବ୍ୟ ନିଖୁଣ ଭାବରେ ଯିଏ ପାଳନ କରେ ସେ ଆହୁରି ଜ୍ଞାନୀ ।

୨୧୪୭୫. ନିଃସ୍ୱାର୍ଥ ଭାବରେ ଆମ୍ଭେମାନେ ଯଦି ଭଲ ପାଇ ନ ପାରୁ, ବୁଝିବାକୁ ହେବ ଭଲପାଇବା ଗତି ମଧ୍ୟରେ ଏକ ସଙ୍କଟର ସମ୍ମୁଖୀନ ହୋଇଛି ।

୨୧୪୭୬. ନିଜେ ନିଜକୁ ଯେପରି ବିଜ୍ଞତାର ଉପଦେଶ ଦେଇ, ଅନ୍ୟ କେହି ପାରନ୍ତି ନାହିଁ ।

୨୧୪୭୭. ନଜର ରଖ ନିଜ କାର୍ଯ୍ୟରେ ।

୨୧୪୭୮. ନଜର ରଖ ନିଜ କଥାରେ ।

୨୧୪୭୯. ନଜର ରଖ ନିଜ ଚିନ୍ତାରେ ।

୨୧୪୮୦. ନଜର ରଖ ନିଜ ଚରିତ୍ରରେ ।

୨୧୪୮୧. ନଜର ରଖ ନିଜ ହୃଦୟରେ ।

୨୧୪୮୨. ନିଜେ ଝରଣାକୁ ବିଷାକ୍ତ କରି, ପିତାମାତା ଭାବନ୍ତି ଜଳ ବିସ୍ୱାଦ କାହିଁକି ?

୨୧୪୮୩. ନେଇ ଯାଇ ପାରେ ସମ୍ପଦ
ଆଉ ପୂରୁଛନ୍ତି ଯାହାକିଛି ଧନ ସମାଧି ଅବଧି-
ତାଠଉଁ ବେଶୀ ଆଉ ନୁହେଁ।
ସମାଧି ସେପାରେ ପହଞ୍ଚି ପାରେ ମାତ୍ର ସେଇ ସମ୍ପଦ-
ସତ୍ୟ, ବିନୟ, ଆଉ ଆମ ଆଚରଣ ।

୨୧୪୮୪. ନିଜକୁ ଜାଣ; ତାହେଲେ ହିଁ ବିଶ୍ୱକୁ ଓ ଈଶ୍ୱରଙ୍କୁ ଜଣାଯିବ ।

୨୧୪୮୫. ନ୍ୟାୟ ବ୍ୟବହାର ପାଇଲେ ଶିଶୁର ନ୍ୟାୟବୋଧ ଜାଗ୍ରତ ହୁଏ, ସତ୍ୟତାର ମଧ୍ୟରେ ମଣିଷ ହେଲେ ସତ୍ୟ ସମ୍ପର୍କରେ ତାର ସମ୍ୟକ ଜ୍ଞାନ ଜନ୍ମେ,

ଆଉ ସେ ଯଦି ବନ୍ଧୁ ସୁଲଭ ଆଚରଣ ପାଏ, ତାହେଲେ ତାର ଗୋଟାଏ ସୁନ୍ଦର ଧାରଣା ଜନ୍ମେ ଯେ, ଏଇ ପୃଥିବୀ ସୁନ୍ଦର ମନୋହର ବାସଯୋଗ୍ୟ ସ୍ଥାନ ।

୨୧୪୮୬. ନିଜର କଥା ଗୁଡିକ ବିନୟ, କୋମଳ ଅନୁଭୂତି ଆଉ କୃତଜ୍ଞତାର ମାପକାଠିରେ ମାପ ।

୨୧୪୮୭. ନଗଣ୍ୟ ମନୁଷ୍ୟ ପ୍ରତି ଆଚରଣରେ ହିଁ ମହାନ ବ୍ୟକ୍ତିର ମହତ୍ୱ ପ୍ରକାଶ ପାଏ ।

୨୧୪୮୮. ନେତା ହେବା ବଡ କଠିଣ; ଜନଗଣଙ୍କର ପ୍ରୟୋଜନ ପାଦ ତଳେ ନିଜର ଯାହା କିଛି ସ୍ୱାର୍ଥ ତାହା ଚୂର୍ଣ୍ଣକରି ଦେବାକୁ ହୁଏ ।

୨୧୪୮୯. ନ୍ୟାୟ ନିଷ୍ଠ ହେବା ପୂର୍ବରୁ ଉଦାରଚେତା ହୁଅ ।

୨୧୪୯୦. ନିର୍ବୋଧର ସଙ୍ଗ ପରିହାର କର । ମିଥ୍ୟାବାଦୀର ବନ୍ଧୁତ୍ୱ ସମ୍ପର୍କରେ ସାବଧାନ ହୁଅ । ମଦ୍ୟପର ସଙ୍ଗ ବର୍ଜନ କର । କୃପଣ ସାଙ୍ଗରେ ମିତ୍ରତା ନ କର ।

୨୧୪୯୧. ନରମ କଥା ଓ ଯୁକ୍ତି ପ୍ରୟୋଗ କରିବ ।

୨୧୪୯୨. ନୁଣ (=ଲୁଣ) ବା ଉପଦେଶ, କୌଣସିଟି ନ ଚାହିଁଲେ ଦିଆଯାଏ ନାହିଁ ।

୨୧୪୯୩. ନୈପୁଣ୍ୟ ସହଜ ନୁହେଁ । ଯାହା ସହଜରେ ହୁଏ ସେଥିରେ ନୈପୁଣ୍ୟ ଥାଏନାହିଁ ।

୨୧୪୯୪. ନିର୍ବୋଧ ସହିତ ତାର ଅର୍ଥ ଛଡାଛଡି ଖୁବ୍ ତାଡାତାଡି (=ଶୀଘ୍ର) ।

୨୧୪୯୫. ନିନ୍ଦୁକକୁ ଭର୍ତ୍ସନା କର ନା; କଲେ ତୁମେ ହିଁ ଘୃଣିତ ହେବାର ଆଶଙ୍କା ଥାଏ ।

୨୧୪୯୬. ନଦୀର ଗଭୀର ଅତଳରେ କଳଧ୍ୱନି କମ ।

୨୧୪୯୭. ନୀରବତା କମ ଆଘାତ ଦିଏ ।

୨୧୪୯୮. ନୀରବ ରହିବା ପରି ବୁଦ୍ଧିଦୀପ୍ତ କାର୍ଯ୍ୟ ଆଉ ନାହିଁ ।

୨୧୪୯୯. ନୟନର ମହାନ ଭାଷା ଅଶ୍ରୁ ।

୨୧୫୦୦. ନାରୀର ଅସ୍ତ୍ର ଚକ୍ଷୁର ଜଳ ।

୨୧୫୦୧. ନିଜର ମୂଢତା ବୁଝି ପାରିବା ହେଉଛି ମଣିଷର ପ୍ରକୃତ ଜ୍ଞାନ ।

୨୧୫୦୨. ନାରୀ, ବାୟୁ ଓ ଭାଗ୍ୟ – ଚିର ପରିବର୍ତ୍ତନଶୀଳ ।

୨୧୫୦୩. ନାରୀ ଆଉ ହାତୀ, ଜାଣେ ନା ବିସ୍ମୃତି ।

୨୧୫୦୪. ନାରୀର 'ହଁ' ଓ 'ନା' – ଏହା ମଝିରେ ଛୁଞ୍ଚିବି ଗଳିବ ନାହିଁ ।

୨୧୫୦୫. ନରର ସୃଷ୍ଟି ଶିର, ନାରୀ ନରର ଶିରୋଭୂଷଣ ।

୨୧୫୦୬. ନୟନଯୁଗଳକୁ ଆତ୍ମାର ବାତାୟନ ବୋଲାଯାଏ ।

୨୧୫୦୭. ନିଜ ସହିତ ସଂଗ୍ରାମ କର । ବହିଃଶତ୍ରୁ ସହିତ ସଂଗ୍ରାମରେ କ'ଣ ବା ଲାଭ ? ଯିଏ ଆତ୍ମଜୟ କରନ୍ତି ସେ ହୁଅନ୍ତି ଆନନ୍ଦର ଅଧିକାରୀ ।

୨୧୫୦୮. ନବବର୍ଷର ଦୁଆରେ
ଚାହିଁ ଯେ ଠିଆରେ ଠିଆରେ କହିଥିଲି ତାକୁ;
ଦୀପଟିଏ ତୁମେ ଦିଅ ହେ ଆମକୁ !
ସାମ୍ନାରେ ଅଚିହ୍ନା ପଥ ଚାଲିଯିବି ନଥିବ ବିପଦ ।
କହିଲା ସେ- ହେଉନା ତାହା ମସିଲିପ୍ତ-ରାତି
ଯାଅ ଚାଲି, ଈଶ୍ୱରଙ୍କ ହାତେ ହାତ ରଖି
ଆଲୁଅ ଠୁଁ ଦେବ ତାହା ଅଧିକ ରୋଷଣି
ପୁଣି ଚିହ୍ନା ପଥଠାରୁ ଅଧିକ ନିରାପଦ, ହେଜ ଏହା ଜାଣି ।

୨୧୫୦୯. ନିରପେକ୍ଷତା ଧୀର ଅଟେ । ଧୈର୍ଯ୍ୟ ତାର ଚରଣ ଛୁଏଁ । ଯିଏ ଅଧିର ତା ପାଖରେ ନିରପେକ୍ଷତା ନଥାଏ ।

୨୧୫୧୦. ନିଜ ଅନ୍ତରର ଖରାପ ଭାବ, ଅହଂକାର, ଭୟ ଏବଂ ଅଜ୍ଞାନକୁ ପ୍ରଥମେ ଦୂର କରିବା ଉଚିତ । ତାହାହେଲେ ଜୀବନ ବିଭୂମୟ ହୋଇପାରେ ।

୨୧୫୧୧. ନମ୍ରତାର କବଚ ପିନ୍ଧିଲେ କେହି କିଛି ଅନିଷ୍ଟ କରିପାରିବ ନାହିଁ । କପାଟୁଲୀ ଚରୁଆଇରେ ମଧ୍ୟ କଟେନାହିଁ ।

୨୧୫୧୨. ନର୍କର ବୀଜ ବପନ କରି ସ୍ୱର୍ଗଫଳ ପାଇବାର ଆଶା ରଖିବା ଠାରୁ ଅଧିକ ମୂର୍ଖତା ଆଉ କ'ଣ ହୋଇପାରେ ।

୨୧୫୧୩. ନିରାଶ୍ରୟ ଓ ନୀଚରୁ ନୀଚ ମଣିଷର ସେବା କରିବା ହେଉଛି ଈଶ୍ୱର ସେବା ।

୨୧୫୧୪. ନିନ୍ଦା ଓ ପ୍ରତିଦ୍ୱନ୍ଦିତା ସର୍ବଦା ତ୍ୟାଗ କର ।

୨୧୫୧୫. ନାଚ ମାରିବା ଗାଈ ଯେପରି ନିଜ ଦୁଧ ଲୁଚାଏ, ବେଶ୍ୟା ଯେପରି ନିଜ ବୟସ ଲୁଚାଏ, କୁଳବଧୂ ଯେପରି ନିଜର ଅଙ୍ଗ ଛପାଏ, ସେହିପରି ଆପଣାର ସତ୍‌କର୍ମକୁ ଛପେଇ ରଖ ।

୨୧୫୧୬. ନୂଆ ବର୍ଷ ସତେ ଯେମିତି ଏକ ଅଲିଖିତ ପୁସ୍ତକ, ଯାହାର ପୃଷ୍ଠାସବୁ ସାଦା । ଆସନ୍ତୁ, ସେଥିରେ ଥିବା ପ୍ରତିଦିନର ପୃଷ୍ଠାରେ ଏମିତି କଥା ଲେଖିଯିବ ଯାହାକୁ ବର୍ଷଶେଷରେ ପଢ଼ିବାବେଳେ ପଶ୍ଚାତାପ ବଦଳରେ ଆମେ ଦେଖିପାରିବା ଖୁସିର ଝଲକ ।

୨୧୫୧୭. ନିଜକୁ ଅନ୍ୟଲୋକର ସ୍ଥାନରେ ପରଖିଥିବା ଲୋକ ହିଁ ବାସ୍ତବରେ ଜଣେ ଆଦର୍ଶ ଶ୍ରୋତା ।

୨୧୫୧୮. ନିଜର ମୌଳିକତା ରକ୍ଷା କର । ତୁମର ପ୍ରକୃତ ସ୍ୱରୂପକୁ ଜାଣିବା ପରେ ଆଉ କେହି ଦ୍ୱନ୍ଦରେ ପଡିବେ ନାହିଁ, ଯଦି ସେମାନଙ୍କୁ ଚିହ୍ନିବା ଓ ସେପରି ମଣିଷଟିକୁ ଭଲପାଇବା ଯଥାର୍ଥ ହୋଇଥାଏ ।

୨୧୫୧୯. ନିଜକୁ ଯଦି ସବୁମତେ ଏକୁଟିଆ ବୋଲି ମନେ କରୁଥାଅ, କେହି କିଛି ଲକ୍ଷ୍ୟ କରୁନାହାନ୍ତି ବା ଖାତିର କରୁ ନାହାନ୍ତି ବୋଲି ଭାବୁଥାଅ, ତେବେ ମନେରଖ, ଭଗବାନ ତୁମକୁ ଦେଖୁଛନ୍ତି, ବୁଝୁଛନ୍ତି ଏବଂ ସେ ହିଁ ପରିସ୍ଥିତିକୁ ଉନ୍ନତ କରିପାରିବେ ।

୨୧୫୨୦. ନିଜଛଡା ଅନ୍ୟ କାହା ଉପରେ ବିଶ୍ୱାସ କରିବା ପାଇଁ ଲୋଡା କିଛିଟା ସାହସ । ତେବେ ଭଗବାନଙ୍କ ଉପରେ ଭରସା ରଖିବାପାଇଁ ଆବଶ୍ୟକ ଅଧିକ ସାହସ, ଯାହା ମାନସିକ ଶାନ୍ତି ଦେଇଥାଏ ।

୨୧୫୨୧. ନିଜକୁ ନେଇ ବେଳେବେଳେ ହସିବା ଦ୍ୱାରା ଅନେକଟା ଉପକାର ମିଳିଥାଏ ।

୨୧୫୨୨. ନିରନ୍ତର ଆଶାବାଦୀ ହୁଅ, ଲକ୍ଷ୍ୟ କରିବ ଯେ ଏ ସୃଷ୍ଟି ସମ୍ଭାବନାରେ ପରିପୂର୍ଣ୍ଣ ।

୨୧୫୨୩. ନମ୍ରତା ପାଇଁ କିଛି ମୂଲ୍ୟ ଦେବାକୁ ପଡେନାହିଁ, ମାତ୍ର ଏହା ଅମୂଲ୍ୟ ।

୨୧୫୨୪. ନାସ୍ତିବାଚକ ଚିନ୍ତାଧାରା କର୍କଟରୋଗ ପରି ତୁମକୁ ଗ୍ରାସ କରିପାରେ । ସେସବୁକୁ ସଂପୂର୍ଣ୍ଣ ରୂପେ ନିର୍ମୂଳ କର ।

୨୧୫୨୫. ନ ପହଞ୍ଚିବା ଅପେକ୍ଷା ଯାତ୍ରା ସମୟରେ ଗତିକୁ କିଛିଟା ମନ୍ଥର କର ଲକ୍ଷ୍ୟସ୍ଥଳରେ ପହଞ୍ଚିବା ଶ୍ରେୟସ୍କର ।

୨୧୫୨୬. ନିସ୍ୱାର୍ଥପର ଲୋକମାନଙ୍କର ଜୀବନ ହିଁ ସବୁଠାରୁ ମୂଲ୍ୟବାନ ।

୨୧୫୨୭. ନିଜ ହୃଦୟ ଓ ଜୀବନର ଝରକାଗୁଡିକ ଅନ୍ୟମାନଙ୍କ ପାଇଁ ଉନ୍ମୁକ୍ତ ରଖ । ଆଜି ନିସ୍ୱାର୍ଥପର କାମଟେ କରିବା ପାଇଁ ଲକ୍ଷ୍ୟ ସ୍ଥିର କର ଏବଂ ପ୍ରତିବଦଳରେ ଭଗବାନ ତୁମକୁ ପୁରସ୍କୃତ କରିବେ, ଏଇ ବିଶ୍ୱାସ ରଖ ।

୨୧୫୨୮. ନିଜେ ଯେଉଁଭଳି ଆଶା କର, ସେହିପରି ଅନ୍ୟମାନଙ୍କ ପ୍ରତି ବ୍ୟବହାର ପ୍ରଦର୍ଶନ କର । ନିଜର ଆଶାର ଅନୁରୂପ ସମ୍ମାନ ଅନ୍ୟମାନଙ୍କୁ ବି ପ୍ରଦାନ କର ।

୨୧୫୨୯. ନିଜକୁ ଭୁଲିଯାଉଥିବା ଲୋକମାନଙ୍କୁ ଅନ୍ୟମାନେ ମନେରଖନ୍ତି ।

୨୧୫୩୦. ନିତିଦିନିଆ ଜୀବନର ଅନେକଗୁଡ଼ିଏ କାମ ଭିତରେ ଯଥାର୍ଥ ନିଷ୍ପତ୍ତି ନେବାର ଅଭ୍ୟାସ କର । ସେ ଗୁଡ଼ିକରେ ସାଧୁତା ଓ ଶ୍ରଦ୍ଧାର ସ୍ପର୍ଶ ରହୁ; ତା'ଫଳରେ କୌଣସି ପ୍ରକୃତ ଜଟିଳ ପରିସ୍ଥିତିରେ ତୁମେ ଠିକଣା ନିଷ୍ପତ୍ତି ନେଇପାରିବ ।

୨୧୫୩୧. ନିଜର ଆବଶ୍ୟକତା ଓ କାମନାକୁ ପଛକୁ ରଖି ସେସବୁକୁ ଅନ୍ୟ ପାଇଁ କାମନା କରିବାରେ ହିଁ ଶୁଦ୍ଧ ଭଲପାଇବାର ଶ୍ରଦ୍ଧା ନିହିତ ।

୨୧୫୩୨. ନିଜକୁ ନ୍ୟୂନ ଓ ଅପଦାର୍ଥ ମନେ କରୁଥିଲେ, କିଛି ମହାନ କାର୍ଯ୍ୟ କର-କାହାରି ଦରକାର ବେଳେ ତାକୁ ସାହାଯ୍ୟ କର ।

୨୧୫୩୩. ନୂଆବର୍ଷର ଦ୍ୱାରଦେଶରେ ମୁଁ ଏବେ ଠିଆହୋଇଛି । ମୋ'ର ସକଳ ଆଚରଣରେ ଦୟାଶୀ, ବିଜ୍ଞ ଓ ବିଚାରବନ୍ତ ହେବାପାଇଁ ଭଗବାନ ମତେ ସହାୟ ହୁଅନ୍ତୁ ।

୨୧୫୩୪. ନିସ୍ୱାର୍ଥପର ଲୋକମାନଙ୍କର ଜୀବନ ହିଁ ସବୁଠାରୁ ମୂଲ୍ୟବାନ ।

୨୧୫୩୫. ନିଜ ହୃଦୟ ଓ ଜୀବନର ଝରକାଗୁଡ଼ିକ ଅନ୍ୟମାନଙ୍କ ପାଇଁ ଉନ୍ମୁକ୍ତ ରଖ । ଆଜି ନିସ୍ୱାର୍ଥପର କାମଟେ କରିବା ପାଇଁ ଲକ୍ଷ୍ୟ ସ୍ଥିର କର ଏବଂ ପ୍ରତିବଦଳରେ ଭଗବାନ ତୁମକୁ ପୁରସ୍କୃତ କରିବେ, ଏଇ ବିଶ୍ୱାସ ରଖ ।

୨୧୫୩୬. ନିର୍ଭର କରୁଥିବା କେହି ଜଣେ ତୁମକୁ ଠକିଦେଲା ବୋଲି ହତାଶ ଓ ମ୍ରିୟମାଣ ହେଉଛ କି ? ଲୋକମାନେ ବିଫଳ ହୋଇପାରନ୍ତି; ଏପରିକି ତୁମର ଅନ୍ତରଙ୍ଗ ବନ୍ଧୁମାନେ ବା ତୁମକୁ ଭଲପାଉଥିବା ପ୍ରିୟଜନମାନେ ବେଳେବେଳେ କଥା ରଖି ପାରନ୍ତି ନାହିଁ । କିନ୍ତୁ ଭଗବାନଙ୍କର ଉପରେ ଭରସା ରଖିଲେ, ସେ କେବେହେଲେ ତୁମକୁ ନିରାଶ କରିବେ ନାହିଁ ।

୨୧୫୩୭. ନିଜକୁ, ନିଜର ସମୟ, ଅର୍ଥ, ପ୍ରୋତ୍ସାହନ ଅଥବା ଅନ୍ୟର କଥା ଶୁଣିବା ଲାଗି ଆଗ୍ରହ, ଏମିତି ଅନେକ କିଛି ଅର୍ପଣ କରିଦେବାର ଅଭ୍ୟାସ ଜାରିରଖ । ଏହା ହିଁ ତୁମକୁ ଅଶେଷ ଶାନ୍ତି ଓ ସୁଖ ଦେବ ।

୨୧୫୩୮. ନିଜକୁ ଭୁଲିଯାଉଥିବା ଲୋକମାନଙ୍କୁ ଅନ୍ୟମାନେ ମନେରଖନ୍ତି ।

୨୧୫୩୯. ନିରାଶାବାଦୀ ହେବା, ସଂଦେହ କରିବା, ପାରିପାର୍ଶ୍ୱ ପ୍ରତି ଦୋଷଯୁକ୍ତ ଆଭିମୁଖ୍ୟ ପୋଷଣ କରିବା ଏବଂ ଦୋଷଦର୍ଶୀ ହେବା । ଏଗୁଡ଼ିକ ଖରାପ ଅଭ୍ୟାସ । ଭଲ ଅଭ୍ୟାସଗୁଡ଼ିକ ମଧ୍ୟରେ ଆସ୍ତିବାଚକ ଚିନ୍ତା କରିବା, ପ୍ରତିଟି ପରିସ୍ଥିତିର ଭଲ ଦିଗଟି ଦେଖିବା, ଆଶାବାଦୀ ହେବା ଓ ମଧୁରବଚନ କହିବା ଅନ୍ତର୍ଭୁକ୍ତ ।

୨୧୫୪୦. ନିଜ ପାଇଁ ସୁଖ ଆଶା କଲେ ନାଶବାନ୍ ସୁଖ ମିଳେ ଏବଂ ଅନ୍ୟମାନଙ୍କୁ ସୁଖ ଦେଲେ ଅବିନାଶୀ ସୁଖ ମିଳେ ।

୨୧୫୪୧. ନାଶବାନ୍‌ରୁ ସୁଖ ଗ୍ରହଣ କରୁଥିବା ପର୍ଯ୍ୟନ୍ତ ଅବିନାଶୀ ସୁଖ ମିଳିବ ନାହିଁ ।

୨୧୫୪୨. ନିଜ ବୁଦ୍ଧିମତ୍ତାର ଅଭିମାନ ହିଁ ଶାସ୍ତ୍ର ଓ ସନ୍ଥଜନଙ୍କ ବଚନକୁ ଅନ୍ତଃକରଣରେ ଧାରଣ କରାଇ ଦିଏ ନାହିଁ ।

୨୧୫୪୩. ନିଜଠାରେ ବିଶେଷତ୍ୱ ଦେଖିବା ଅହଂଭାବ, ସଂକୀର୍ଣ୍ଣତା ଓ ଦେହାଭିମାନକୁ ପୁଷ୍ଟ କରିଥାଏ ।

୨୧୫୪୪. ନିର୍ଜନ ସ୍ଥାନକୁ ଚାଲିଯିବା ଅଥବା ଏକାନ୍ତରେ ଶୋଇ ରହିବାକୁ ଏକାନ୍ତ ଭାବିବା ମସ୍ତବଡ଼ ଭୁଲ, କାରଣ ଏ କ୍ଷେତ୍ରରେ ସମଗ୍ର ସଂସାରର ଜୀବରୂପକ ଏ ଶରୀର ସାଥିରେ ରହିଥାଏ । ଶରୀର ସହିତ ସମ୍ବନ୍ଧ ଥିବା ପର୍ଯ୍ୟନ୍ତ ସମଗ୍ର ସଂସାର ସହିତ ସମ୍ବନ୍ଧ ରହିଛି ।

୨୧୫୪୫. ନିଜର କର୍ତ୍ତବ୍ୟ ପାଳନ କରୁଥିବା ମନୁଷ୍ୟର ଚିତ୍ତ ସ୍ୱାଭାବିକଭାବେ ପ୍ରସନ୍ନ ରହେ । ଅନ୍ୟପକ୍ଷରେ ନିଜର କର୍ତ୍ତବ୍ୟ ପାଳନ ନ କରୁଥିବା ମନୁଷ୍ୟର ଚିତ୍ତ ସ୍ୱାଭାବିକଭାବେ ବିଷର୍ଣ୍ଣତାରେ ଆଚ୍ଛାଦିତ ରହିଥାଏ ।

୨୧୫୪୬. ନିଜ ସୁଖ ଉଦ୍ଦେଶ୍ୟରେ କରାଯାଉଥିବା କର୍ମ 'ଅସତ୍' ଏବଂ ଅନ୍ୟମାନଙ୍କ ହିତ ଉଦ୍ଦେଶ୍ୟରେ କରାଯାଉଥିବା କର୍ମ 'ସତ୍' ଅଟେ । ଅସତ୍-କର୍ମର ପରିଣାମ ଜନ୍ମମରଣ ପ୍ରାପ୍ତି ଏବଂ ସତ୍-କର୍ମର ପରିଣାମ ପରମାତ୍ମପ୍ରାପ୍ତି ।

୨୧୫୪୭. ନିଷ୍କାମ ବ୍ୟକ୍ତି ହିଁ ତତ୍ପରତାର ସହିତ ସ୍ୱକର୍ତ୍ତବ୍ୟ ପାଳନ କରିପାରେ ।

୨୧୫୪୮. ନିଜ ପାଇଁ କର୍ମ କଲେ ଅକର୍ତ୍ତବ୍ୟର ଉତ୍ପତ୍ତି ହୁଏ ।

୨୧୫୪୯. ନାଶବାନ୍‌କୁ ପାଇବାର ଇଚ୍ଛା ଛାଡ଼ିଦେଲେ ଅବିନାଶୀ ତତ୍ତ୍ୱ ମିଳିଯାଏ ।

୨୧୫୫୦. ନାଶବାନ୍‌କୁ ପାଇବାର ଇଚ୍ଛା ହିଁ ଅନ୍ତଃକରଣର ଅଶୁଦ୍ଧି ।

୨୧୫୫୧. ନିଜ ପାଇଁ ସୁଖ ଚାହିଁବା ଆସୁରୀ ଓ ରାକ୍ଷସୀ ବୃତ୍ତି ଅଟେ ।

୨୧୫୫୨. ନିଜ ପାଇଁ ଭୋଗ ଓ ସଂଗ୍ରହ ଇଚ୍ଛା କରିବା ଦ୍ୱାରା ମନୁଷ୍ୟ ପଶୁଙ୍କଠାରୁ ମଧ୍ୟ ନୀଚ ହୋଇଯାଏ; ଏବଂ ଏହି ଇଚ୍ଛାଗୁଡ଼ିକ ତ୍ୟାଗ କରିଦେଲେ ସେ ଦେବତାମାନଙ୍କଠାରୁ ମଧ୍ୟ ଉଚ୍ଚ ହୋଇଯାଏ ।

୨୧୫୫୩. ନାଶବାନ୍ ବସ୍ତୁ ସତ୍ୟ ପ୍ରତୀତ ହେଉଥିବା ପର୍ଯ୍ୟନ୍ତ ବୋଧପ୍ରାପ୍ତି ହୋଇ ପାରିବ ନାହିଁ ।

୨୧୫୫୪. ନିଜଠାରେ ରାଗ-ଦ୍ୱେଷ ଥିବା ପର୍ଯ୍ୟନ୍ତ ବୋଧପ୍ରାପ୍ତି ହୋଇ ନଥାଏ, କେବଳ ସେ ବିଷୟରେ ଶିଖାଣିଆ ଜ୍ଞାନ ହୋଇଯାଇଥାଏ ।

୨୧୫୫୫. ନିଜଠାରେ ଓ ଅନ୍ୟମାନଙ୍କଠାରେ ନିର୍ଦ୍ଦୋଷତା ଅନୁଭବ ହେବା ହିଁ ତତ୍ତ୍ୱଜ୍ଞାନ ବା ଜୀବନ୍ମୁକ୍ତି ।

୨୧୫୫୬. ନେବାର ଇଚ୍ଛା ମନୁଷ୍ୟକୁ ଦାସ କରିଦିଏ ଏବଂ ଦେବାର ଇଚ୍ଛା ରହିଲେ ମନୁଷ୍ୟ ପ୍ରଭୁ ହୋଇଯାଏ ।

୨୧୫୫୭. 'ନେବା' ଭାବନାରୁ ଭୋଗ ହୋଇଥାଏ ଏବଂ 'ଦେବା' ଭାବନାରୁ ଯୋଗ ହୋଇଥାଏ ।

୨୧୫୫୮. ନିଜଠାରେ ଗୁଣ ପାଇଁ ଅଭିମାନ ରହିବାରୁ ଅନ୍ୟମାନଙ୍କଠାରେ ଦୋଷ ଦେଖାଯାଉଛି ଏବଂ ଅନ୍ୟମାନଙ୍କଠାରେ ଦୋଷ ଦେଖାଯିବାରୁ ନିଜର ଅଭିମାନ ପୁଷ୍ଟ ହେଉଛି ।

୨୧୫୫୯. ନିଜର ଦୁଃଖ ଦୂର କରିବା ପାଇଁ ଆମେ ଯେପରି ଟଙ୍କା ଖର୍ଚ୍ଚ କରୁ, ଅନ୍ୟର ଦୁଃଖ ଦୂର କରିବା ପାଇଁ ମଧ୍ୟ ସେହିପରି ଟଙ୍କା ଖର୍ଚ୍ଚ କରିବାକୁ ହେବ । ତେବେ ଯାଇ ଆମେ ଟଙ୍କା ରଖିବାର ଅଧିକାରୀ ହୋଇ ପାରିବା ।

୨୧୫୬୦. ନାମଜପ କଦାପି ବନ୍ଦ ନ ହେବା ହିଁ ନାମଜପରେ ପ୍ରଗତି ହେବାର ପରିଚୟ ।

୨୧୫୬୧. ନାମଜପ ଅଭ୍ୟାସ ନୁହେଁ, ବରଂ ଏକପ୍ରକାର ଡାକ ବା ପ୍ରାର୍ଥନା । ଅଭ୍ୟାସରେ ଶରୀର, ଇନ୍ଦ୍ରିୟ ଓ ମନର ପ୍ରାଧାନ୍ୟ ଥିବାସ୍ଥଳେ ପ୍ରାର୍ଥନାରେ ସ୍ୱୟଂର ପ୍ରାଧାନ୍ୟ ଥାଏ ।

୨୧୫୬୨. ନାମଜପ ସକଳ ସାଧନାର ପୋଷକ ।

୨୧୫୬୩. ନାଶବାନ୍‌କୁ ମହତ୍ତ୍ୱ ଦେବା ହିଁ ବନ୍ଧନ । ଏଇଥିରୁ ସବୁ ପାପ ଜନ୍ମ ନେଇଥାଏ ।

୨୧୫୬୪. ନାଶବାନ୍ ପ୍ରତି ଆକର୍ଷଣ ଥିବା ପର୍ଯ୍ୟନ୍ତ ସାଧନା କରି ମଧ୍ୟ ଅବିନାଶୀ ପ୍ରତି ଆକର୍ଷଣ (ପ୍ରେମ) ହେବ ନାହିଁ କି ତାହାର ଅନୁଭୂତି ହେବ ନାହିଁ ।

୨୧୫୬୫. ନିଜ ମତରେ ଆଗ୍ରହ ନ ରଖିଲେ ଏବଂ ଅନ୍ୟର ମତକୁ ଉପେକ୍ଷା, ଖଣ୍ଡନ ଓ ଅନାଦର ନ କଲେ ମୁକ୍ତି ପରେ ଭକ୍ତି (ପ୍ରେମ) ଆପେଆପେ ପାଉଥାଏ ।

୨୧୫୬୬. ନିଜକୁ ଛୋଟ ଓ ଅନ୍ୟକୁ ବଡ଼ ଭାବିବା ହିଁ ପ୍ରକୃତ ବଡ଼ପଣିଆ । ନିଜକୁ ବଡ଼ ଓ ଅନ୍ୟକୁ ଛୋଟ ମାନିବା ଅତ୍ୟନ୍ତ ନୀଚତା ଅଟେ ।

୨୧୫୬୭. ନାଶବାନ୍‌କୁ ମହତ୍ତ୍ୱ ଦେବା ହିଁ ବନ୍ଧନ ।

୨୧୫୬୮. ନିଷ୍କାମଭାବରେ (ଅନ୍ୟମାନଙ୍କ ପାଇଁ) କର୍ମ କଲେ ମୁକ୍ତି ମିଳେ ଏବଂ

ସକାମଭାବରେ (ନିଜ ପାଇଁ) କର୍ମ କଲେ ବନ୍ଧନ ହୁଏ । ତେଣୁ ମନୁଷ୍ୟ ନିଷ୍କାମଭାବରେ ସ୍ୱକର୍ତ୍ତବ୍ୟ ପାଳନ କରିବା ଆବଶ୍ୟକ ।

୨୧୫୬୯. ନିଷ୍କପଟ ହୃଦୟରେ ଭଗବାନଙ୍କୁ ପାଇବା ପାଇଁ ଇଚ୍ଛା କରୁଥିବା ବ୍ୟକ୍ତି ଯେକୌଣସି ବର୍ଣ୍ଣ, ଆଶ୍ରମ, ସମ୍ପ୍ରଦାୟ, ପରିସ୍ଥିତି ଇତ୍ୟାଦିରେ ଥାଉ ନା କାହିଁକି, ଏବଂ ଯେତେ ବି ଦୁରାଚାରୀ ହୋଇଥାଉ ନା କାହିଁକି, ସେ ଭଗବାନଙ୍କୁ ପାଇବାର ପୂର୍ଣ୍ଣ ଅଧିକାରୀ ।

୨୧୫୭୦. ନିଜର ତୀବ୍ର ଉତ୍କଣ୍ଠା ନ ଥିବା ଯୋଗୁଁ ଭଗବତ୍‌ପ୍ରାପ୍ତିରେ ବିଳମ୍ବ ହେଉଛି ।

୨୧୫୭୧. ନିଜ ପାଇଁ କର୍ମ କଲେ ଏବଂ ଜଡ଼ତା (ଶରୀରାଦି) ସହିତ ନିଜର ସମ୍ବନ୍ଧ ରହିଛି ବୋଲି ମାନିନେଲେ ସର୍ବବ୍ୟାପୀ ପରମାତ୍ମାଙ୍କୁ ପାଇବାରେ ବିଘ୍ନ ସୃଷ୍ଟି ହୁଏ ।

୨୧୫୭୨. ନିଷ୍କାମଭାବ ଦ୍ୱାରା ବୁଦ୍ଧି ସ୍ଥିର ହୁଏ ଏବଂ ଅଭ୍ୟାସ ଦ୍ୱାରା ମନ ସ୍ଥିର ହୁଏ । ଆତ୍ମକଲ୍ୟାଣ ହୁଏ ବୁଦ୍ଧିର ସ୍ଥିରତାରୁ, ମନର ସ୍ଥିରତାରୁ ନୁହେଁ । ମନର ସ୍ଥିରତାରୁ କେବଳ ନାନାବିଧ ସିଦ୍ଧି ପ୍ରକଟିତ ହୁଏ ।

୨୧୫୭୩. ନିଜପାଇଁ କର୍ମ କଲେ ପ୍ରଥମେ କର୍ମ ସହିତ ଏ ପରେ ଫଳ ସହିତ ସମ୍ବନ୍ଧ ସ୍ଥାପିତ ହୋଇଥାଏ । ଉଭୟ କର୍ମ ଓ ଫଳ ଉତ୍ପନ୍ନ ହୋଇ ନଷ୍ଟ ହୋଇଯାଆନ୍ତି, କିନ୍ତୁ ସେଥିପ୍ରତି ଅନ୍ତଃକରଣରେ ରହିଯାଉଥିବା ଆସକ୍ତି ବାରମ୍ବାର ଜନ୍ମମରଣରେ ପକାଏ ।

୨୧୫୭୪. ନିଜର ସୁଖ-ସୁବିଧା ଦେଖୁଥିବା ବ୍ୟକ୍ତି ଭୋଗୀ ଅଟେ, ଯୋଗୀ ନୁହେଁ ।

୨୧୫୭୫. ନିରନ୍ତର ପରିବର୍ତ୍ତନଶୀଳ ସଂସାରକୁ ସ୍ଥିର ଭାବିବା ଯୋଗୁଁ ହିଁ ରାଗ ଦ୍ୱେଷାଦି ଦ୍ୱନ୍ଦ୍ୱ ସୃଷ୍ଟି ହୁଏ ।

୨୧୫୭୬. ନିଜଠାରେ କୌଣସି ପ୍ରକାର ବିଶେଷତ୍ୱ ଦେଖାଯିବା ହିଁ ଶରଣାଗତିରେ ବାଧକ ।

୨୧୫୭୭. ନିଜ ବଳର ଅଭିମାନ ଥିବାପର୍ଯ୍ୟନ୍ତ ପ୍ରକୃତ ଶରଣାଗତି ହୋଇପାରେ ନାହିଁ ।

୨୧୫୭୮. ନାଶବାନ୍ ଭୌତିକ ପଦାର୍ଥର ସଂଯୋଗରୁ କାହାରି ଦୁଃଖ ଦୂର ହେବା ଆଦୌ ସମ୍ଭବ ନୁହେଁ ।

୨୧୫୭୯. ନାଶବାନ୍‌ର ଦାୟିତ୍ୱ ହିଁ ବ୍ୟକ୍ତିତ୍ୱ ଅବିନାଶୀର ସମ୍ମୁଖ କରାଇ ଦିଏ ନାହିଁ ।

୨୧୫୮୦. ନାଶବାନ୍ ସହ ଆତ୍ମୀୟତା କଲେ ଅଶାନ୍ତି ଓ ବନ୍ଧନ ସାର ହୁଏ ।

୨୧୫୮୧. ନିଦ୍ରାବସ୍ଥାରେ ଶରୀର ଓ ସଂସାରକୁ ଭୁଲିଯାଉଥିବାରୁ ବିଶ୍ରାମ ମିଳେ, ଏମାନଙ୍କଠାରୁ ସର୍ବଥା ସମ୍ବନ୍ଧ ତୁଟିଗଲେ ପରମ ବିଶ୍ରାମ ମିଳିଯିବ ।

୨୧୫୮୨. ନିରନ୍ତର ପରିବର୍ତ୍ତନ ହେଉଥିବା ଶରୀର ଓ ସଂସାର ସତେ ଯେପରି ଆମକୁ ଏହି କ୍ରିୟାତ୍ମକ ଉପଦେଶ ଦେଉଛନ୍ତି ଯେ, 'ହେ ମନୁଷ୍ୟ! ତୁମର ଅପରିବର୍ତ୍ତନଶୀଳ ତତ୍ତ୍ୱ (ପରମାତ୍ମାଙ୍କ) ସହିତ ସମ୍ବନ୍ଧ ରହିଛି, ଆମ ସହିତ ତୁମର ସମ୍ବନ୍ଧ ନାହିଁ। ଆମେ ତୁମ ସଙ୍ଗରେ ରହି ପାରିବୁ ନାହିଁ କି ତୁମେ ଆମ ସଙ୍ଗରେ ରହି ପାରିବ ନାହିଁ।'

୨୧୫୮୩. ନିଜର ଅସାମର୍ଥ୍ୟ ପାଇଁ ଦୁଃଖ ହେଲେ ଓ ଭଗବାନଙ୍କ କୃପା ଉପରେ ବିଶ୍ୱାସ ରହିଲେ ଯେଉଁ ଦୁର୍ଗୁଣକୁ ଆମେ ଦୂରେଇବାକୁ ଚାହୁଁଛୁ, ତାହା ଦୂର ହୋଇଯିବ ଏବଂ ଯେଉଁ ସଦ୍‌ଗୁଣ ଆଣିବାକୁ ଚାହୁଁଛୁ, ତାହା ଆପେ ଆପେ ଆସିଯିବ।

୨୧୫୮୪. ନିଜଠାରେ ସଦ୍‌ଗୁଣ-ସଦାଚାର ରହିଛି ବୋଲି ଭାବିଲେ ଅଭିମାନ ଆସିଯାଏ ଏବଂ ଦୁର୍ଗୁଣ-ଦୁରାଚାର ରହିଛି ବୋଲି ଭାବିଲେ ସେଗୁଡ଼ିକ ନିଜ ଭିତରେ ସ୍ଥାୟୀ ହୋଇଯାଏ।

୨୧୫୮୫. ନିଜ ଅନ୍ତରରେ ଦୋଷ ଥିବାରୁ ହିଁ ବାହ୍ୟ କୁସଙ୍ଗରେ ପ୍ରଭାବ ପଡ଼େ। କାରଣ ଆକର୍ଷଣ ବିଜାତୀୟତା ପ୍ରତି ନ ହୋଇ ସର୍ବଦା ସଜାତୀୟତା ପ୍ରତି ହୋଇଥାଏ।

୨୧୫୮୬. ନିଷିଦ୍ଧ କର୍ମରେ ପ୍ରବୃତ୍ତ ରହି କୌଣସି ବ୍ୟକ୍ତି ସାଧକ ହୋଇ ନ ପାରେ।

୨୧୫୮୭. ନିଜକୁ କଦାପି ସିଦ୍ଧ ନ ଭାବି ସବୁବେଳେ ସାଧକ ଭାବିବା ଉଚିତ। ସିଦ୍ଧ ଭାବିବା ନିଜେ ନିଜ ସହ ପ୍ରତାରଣା କରିବା ସଙ୍ଗେ ସମାନ।

୨୧୫୮୮. ନିଜପାଇଁ ଜପ, ତପ, ଧ୍ୟାନ ଇତ୍ୟାଦି କରିବା ଆସୁରିକତା ଏବଂ ଅନ୍ୟର ମଙ୍ଗଳ ପାଇଁ ଜପ, ତପ, ଧ୍ୟାନ ଇତ୍ୟାଦି କରିବା ମାନବିକତା।

୨୧୫୮୯. ନିଷ୍ଠାଥିଲେ ସାଧନା ଆପେଆପେ ହୁଏ, ନିଷ୍ଠା ନ ଥିଲେ କରିବାକୁ ପଡ଼େ।

୨୧୫୯୦. ଆପେଆପେ ହେଉଥିବା ସାଧନା ଅସଲି ଏବଂ କରିବାକୁ ପଡୁଥିବା ସାଧନା ନକଲି।

୨୧୫୯୧. ନିଜ ଇଚ୍ଛା ମୁତାବକ ସୁଖ ଭୋଗୁଥିବା ବ୍ୟକ୍ତିକୁ ନିଜ ଇଚ୍ଛା ବିରୁଦ୍ଧରେ ଦୁଃଖ ଅବଶ୍ୟ ଭୋଗିବାକୁ ପଡ଼ିବ।

୨୧୫୯୨. ନିଜର ସୁଖପାଇଁ ଉଦ୍ୟମ କରିବା ଅର୍ଥ ଦୁଃଖକୁ ନିମନ୍ତ୍ରଣ ଦେବା ଏବଂ ଅନ୍ୟମାନଙ୍କର ସୁଖ ପାଇଁ ଉଦ୍ୟମ କରିବା ଅର୍ଥ ଆନନ୍ଦକୁ ନିମନ୍ତ୍ରଣ ଦେବା।

୨୧୫୯୩. ନିଜ ସୁଖରେ ସୁଖୀ ହେଉଥିବା ବ୍ୟକ୍ତିକୁ ନିଶ୍ଚୟ ଦୁଃଖ ଭୋଗିବାକୁ ପଡ଼ିବ ଏବଂ ଅନ୍ୟର ସୁଖରେ ସୁଖୀ ହେଉଥିବା ବ୍ୟକ୍ତିର ଦୁଃଖ ସବୁଦିନ ପାଇଁ ସମୂଳେ ନଷ୍ଟ ହୋଇଯିବ।

୨୧୫୯୪. ନିଷ୍କପଟ ହୃଦୟରେ ଭଗବାନଙ୍କ ସେବାରେ ନିଯୁକ୍ତ ସାଧକ ଦ୍ୱାରା ପ୍ରତ୍ୟେକ ପ୍ରାଣୀର ସେବା ହୋଇଥାଏ; କାରଣ ଭଗବାନ ହିଁ ସମସ୍ତଙ୍କର ମୂଳ ।

୨୧୫୯୫. ନିଜ ଜୀବନ ନିଜ ପାଇଁ ଉପଯୋଗୀ ନୁହେଁ, ତାହା ଅନ୍ୟମାନଙ୍କ ହିତ ପାଇଁ ଉପଯୋଗୀ ।

୨୧୫୯୬. ନିଷ୍କାମଭାବରେ ଅନ୍ୟମାନଙ୍କର ସେବା କଲେ ବ୍ୟବହାରିକ କାର୍ଯ୍ୟ ସୁନ୍ଦର ହେବା ସଙ୍ଗେ ସଙ୍ଗେ ମମତା ମଧ ନଷ୍ଟ ହୋଇଯାଏ ।

୨୧୫୯୭. ନିଜର ସ୍ୱଭାବକୁ ମନୁଷ୍ୟ ନିଜେ ହିଁ ମାର୍ଜିତ କରିପାରେ । ଅନ୍ୟମାନେ କେବଳ ତାକୁ ଉପାୟ ବାତଇଦେଲେ ପାରିବେ ଏବଂ ସାହାଯ୍ୟ କରି ପାରିବେ ।

୨୧୫୯୮. ନିଜ ଉପାର୍ଜନରେ ଯେପରି ଅନ୍ୟ କାହାର ଲେଶମାତ୍ର ସ୍ୱତ୍ୱ ଆସି ନ ଯାଏ, ସେଥିପ୍ରତି ବିଶେଷ ସାବଧାନ ରହିବା ଉଚିତ ।

୨୧୫୯୯. ନେତ୍ରଠାରୁ ମନ ଅଧିକ ମନେରଖିଥାଏ, ମନଠାରୁ ବୁଦ୍ଧି ଅଧିକ ମନେ ରଖିଥାଏ ଏବଂ ବୁଦ୍ଧିଠାରୁ ସ୍ୱୟଂ ଅଧିକ ମନେରଖିଥାଏ । ସ୍ୱୟଂ ଯେଉଁ ବିଷୟକୁ ଥରେ ଧାରଣ କରିନିଏ, ତାହା ସବୁଦିନ ପାଇଁ ମନେରହିଥାଏ ।

୨୧୬୦୦. ନାଶବାନ ପଦାର୍ଥ ପ୍ରତି ଥିବା ମହତ୍ତ୍ୱଭାବ ମନୁଷ୍ୟକୁ ପଦଦଳିତ କରିଥାଏ । ଏବଂ ପରମାତ୍ମାଙ୍କ ପ୍ରତି ଥିବା ମହତ୍ତ୍ୱଭାବ ତାକୁ ଉନ୍ନତି ପଥରେ ଆଗେଇନିଏ ।

୨୧୬୦୧. ନ୍ୟାୟସଙ୍ଗତ କାମ କରୁଥିବା ବ୍ୟକ୍ତିର ଚିତ୍ତରେ ଶାନ୍ତି ରହିଥାଏ ଏବଂ ଅନ୍ୟାୟପୂର୍ବକ କାମ କରୁଥିବା ବ୍ୟକ୍ତିର ଚିତ୍ତ ଅଶାନ୍ତ ରହିଥାଏ ।

୨୧୬୦୨. ନିର୍ଦ୍ଧାରିତ ସମୟରେ ଆସୁଥିବା ଗାଡ଼ିରେ ଚଢ଼ିବା ପାଇଁ ଯଦି ତୁମେ ପୂର୍ବରୁ ଏତେ ସାବଧାନ ହୋଇଯାଉଛ, ତେବେ ଯେଉଁ ମୃତ୍ୟୁରୂପୀ ଗାଡ଼ିର ସମୟ ଅନିଶ୍ଚିତ, ତା' ପାଇଁ ତ ଅଧିକ ସାବଧାନ ରହିବା ଦରକାର ।



# ଭେଣ୍ଡାର କାଥା (ରୂଢ଼ିପ୍ରତ୍ୟୟ)

୨୧୬୦୩. ନଥା ତେଲାଂ ହାନା ତେଲାଂ (ଉତୁ ଫକାନ୍)
ଓଡ଼ିଆ - ଛୁଙ୍କ (ତରକାରୀ ଛୁଙ୍କ ଅର୍ଥରେ)
ବ୍ୟବହାର - ଏ ଗୋ ବାହୁ ତେହେଞ ଦଃ ପେଲାକହେଞ୍ ଆକାଓ୍ବାଦ୍ ବନା । ଉତୁଦଃ ବେସ୍‌ଠିକ୍ ହାନାତେଲାଂ ନଥାତେଲାଂ ବିନ୍ ।
ଓଡ଼ିଆ - ଆଲୋ ବୋହୂ, ଆଜି କୁଣିଆମାନେ ଆସିଛନ୍ତି । ଭଲ ଛୁଙ୍କ ଦେଇ ତରକାରୀ ରାନ୍ଧ ।

୨୧୬୦୪. ନାଓ୍ବା ହାଟାଃ ସେ ମାରେହାଟାଃ (ନାଓ୍ବା ସେ ମାରେ ନାୟକେ)
ଓଡ଼ିଆ - ନୂଆ ଦେହୁରୀ ନା ପୁରୁଣା ଦେହୁରୀ ।
ବ୍ୟବହାର - ତେହେଞ୍ ମାର୍‌ସିମ୍ ରେଗେ ନାଓ୍ବା ହାଟାଗାବନ୍ ସେ ମାରେ ହାଟାଃରେ ତାହେନ୍‌ଆଃ ଲାୟତାବନ୍‌ପେ ।
ଓଡ଼ିଆ - ଆଜି ମାଘ ପୂଜା । ନୂଆ ଦେହୁରୀ ବାଛିବା ନା ପୁରୁଣା ଦେହୁରୀ ରହିବ କୁହ ।

୨୧୬୦୫. ନାହେଲ ଗାଡ଼ା ଦାଃ (ହାଣ୍ଡି)
ଓଡ଼ିଆ - ହାଣ୍ଡିଆ
ବ୍ୟବହାର - ଦମେ ସାରାଦିନ୍ ଦାଃଗେ ଦେତାଙ୍ଗ୍ କାନା । ନାହେଲ୍ ଗାଡ଼ା ଦାଃ ବାଂଖାନ୍ ଦାଃ ତେତାଙ୍ଗ୍ ଦଃ ବାଂ ମାରତକ୍‌ଆଃ ।
ଓଡ଼ିଆ - ସବୁବେଳେ ବଡ଼ ଶୋଷ ଲାଗୁଛି । ହାଣ୍ଡିଆ ନହେଲେ ଶୋଷ ମରିବ ନାହିଁ ।

୨୧୬୦୬. ନାଇ ପାରମ୍ ଗାଡ଼ା ପାରମ୍ (ଆଦ୍ ସାଙ୍ଗିଞ୍, ହିଡ଼ିଞ୍ ଆକାନ୍ କଃ)
ଓଡ଼ିଆ - ହଜିଯାଇଥିବା, ଭୁଲିଯାଇଥିବା ।
ବ୍ୟବହାର - ନାଇ ପାରମ୍ ଗାଡ଼ା ପାରମ୍ ଅକୟକଃ ବାଞ୍ ଚୁମ୍ ତିୟୁଃ ଚୁଚୁମ୍ ତିୟୁଃ ଦାଲେୟାପେକାନ୍ ଉନ୍‌କୁ ଯତମ୍ ଗେ ଦେନ୍ ଦାଃ ଏମାଞ୍ ପେ ।
ଓଡ଼ିଆ - ଭୁଲିଯାଇଛି ବୋଲି ନା ଧରି ହେଉଛି ନା ନାଁ କହି ହେଉଛି । ତେଣୁ ସମସ୍ତଙ୍କୁ ମୁଁ କହୁଛି ମୋତେ ପାଣି ଦିଅ ।

୨୧୬୦୭. ନାନା ତାବ୍‌ନା (ସେରେଞ୍)
ଓଡ଼ିଆ - ଗୀତ
ବ୍ୟବହାର - କାଟିକ୍ ଏ ଝୁରାଉଞ୍ ଏନ୍-ଖାବ୍‌ଦଃ ହାନିତେଲେମେ ନାନା ତାବ୍‌ନାୟ ଏହବ କେଦ୍-ଆୟ୍ ।

ଓଡ଼ିଆ - ଟିକିଏ ପିଇବାରୁ ଦେଖ ସେ କିପରି ଗୀତ ଗାଇବା ଆରମ୍ଭ କରିଦେଲା ।

୨୧୬୦୮. ନାନ୍‌ହାଃ ଲାଜ୍ ଦୁହାଉଁ (ଦାଲ୍, ଶାସନ୍)

ଓଡ଼ିଆ - ମାଡ଼, ଶାସନ ।

ବ୍ୟବହାର - ଆଡ଼ି କୁବ୍ ଏ ଚୁଡୁରବୁଡୁରଃ କାନ ଦଃ, ନାନହାଃ ଲାଜ ଦୁହାଉଁ ତାୟ ପେସେଦ୍ ।

ଓଡ଼ିଆ - ଏତେ ବଦମାସୀ କରୁଛି ଯେ ତାକୁ ମାଡ଼ ଦରକାର ।

୨୧୬୦୯. ନାଓ୍ୱା ନାଗ୍‌ଲେ ମାରେ ନାଗ୍‌ଲେ (ନାଓ୍ୱା ସେ ମାରେ ମାଝୀ)

ଓଡ଼ିଆ - ନୂଆ ମୁଖିଆ ନା ପୁରୁଣା ମୁଖିଆ ।

ବ୍ୟବହାର - ମାଗସିମ୍ ବଙ୍ଗାଃ ରେଗେ ଆତୁ ମଣ୍ଡେହ୍ନ୍-କଃ ନାଓ୍ୱା ନାଗ୍‌ଲେ ମାରେ ନାଗ୍‌ଲେ ରେନାଃ କଃ ଗାଲ୍‌ମାରାଓ୍ୱ ଗଟାୟା ।

ଓଡ଼ିଆ - ମାଘ ପୂଜା ବେଳେ ଗ୍ରାମବାସୀମାନେ ନୂଆ ମୁଖିଆ ବା ପୁରୁଣା ମୁଖିଆ ବିଷୟରେ ଆଲୋଚନା କରନ୍ତି ।

୨୧୬୧୦. ନାଓ୍ୱା ଟରଡାଙ୍ଗସେ ମାରେ ଟରଡାଙ୍ଗ (ଗଢ଼େଦ୍ ବାଛନ୍)

ଓଡ଼ିଆ - ଡଗର (ଡାକୁଆ)

ବ୍ୟବହାର - ଚେଲେ ହୋ ! ଗଢ଼େଦ୍ ବାବା ମାରେ ଟରଡାଙ୍ଗ ଗେସେ ନାଓ୍ୱା ଟରଡାଙ୍ଗ ।

ଓଡ଼ିଆ - କିହୋ ଡଗର ବାବା! ତୁମେ ପୁରୁଣା ନା ନୂଆ?

୨୧୬୧୧. ନିସୁକ୍ ଝିନ୍ଦା (ଘୋର ଜାପିଦ୍)

ଓଡ଼ିଆ - ଗାଢ଼ ନିଦ୍ରା / ନିଘୋଡ଼ ନିଦ ।

ବ୍ୟବହାର - ରେପ ହାଜାମ୍ ଦଃ ଲଇଃ ଧୁରୁପ୍‌ରେ ହିଁ ନିସୁକ୍‌ଗେ ଝିନ୍ଦାୟଂ କାନା ।

ଓଡ଼ିଆ - ରେପ ବୁଢ଼ା ଝାଙ୍କିଖରାରେ ମଧ ଗାଢ଼ ନିଦ୍ରା/ ନିଘୋଡ଼ ନିଦରେ ଶୋଇଛି ।

୨୧୬୧୨. ନି ଛୁଦ୍ ନିଛୁଦ୍ (ଅଜରା ବିଟ୍‌କାଲ୍ କାମିଇଜ୍)

ଓଡ଼ିଆ - ଅପରିଷ୍କାର

ବ୍ୟବହାର - ନିଛୁଦ୍ ନିଛୁଦ୍ ଥାକାନ୍‌ତେୟ ଭିତାର ବାହାରରେ ଡୁଂଜା ଡୁଂଡ଼ି ବାଜାଏଡା ।

ଓଡ଼ିଆ - ଅପରିଷ୍କାର ଲୋକଟି ଘର ଭିତରେ ଓ ବାହାରେ ଚାରିଆଡ଼େ ପଶିଯାଉଛି ।

୨୧୬୧୩. ହେ୍କ ଲେକା ଚକାଃ (ବାଳାବାନ୍ତି ଦମେ ଲାଇ)

ଓଡ଼ିଆ - ମିଛ/ ଢାମ

ବ୍ୟବହାର - ରେପ ମା ହେ୍କ ଲେକାୟ ଚକାଃ ହଟ ଆଦିଙ୍ଗ୍ ଯେ ନେସଦଃ ଦମେ ତେରେଲ୍ ତାରବ୍ ଯଃ ଆକାନା ।

ଓଡ଼ିଆ - ରେପ ଏମିତି ଢାମ ମାରିଲା ଯେ, ଏବର୍ଷ ବହୁତ କେନ୍ଦୁ, ଚାରକୁଳି ଫଳିଛି ।

# ଭେନ୍ତାର ଓ ମେନ୍‌କଥା (ପ୍ରବାଦ)

୨୧୬୧୪. ନାୟ ଏମ୍ ପାରମ୍ ଲେରେ, କେଉଁଟା ରାଜ୍ ।
ଓଡ଼ିଆ - ନଦୀ ପାରେଇଲେ କେଉଟ ରାଜା ।

୨୧୬୧୫. ନେକ୍ଲୁଃ ସେଙ୍ଗେଲ୍ ଦଃ
ଜରିଆ - ଆଃ କାତେ ରେହଁ
ଲଗିଜ୍ ହୁୟୁଃ ଆ ।
ଓଡ଼ିଆ - ଜଳି ଉଠୁଥିବା ନିଆଁକୁ ପରିସ୍ରା କରି ମଧ ଲିଭାଇ ଦେଇ ହେବ ।

୨୧୬୧୬. ନେୟାଃ ଦଃ ଆଇମ୍, ବାଂ-ଆ
ହାପେୟା ଦଃ ତିସ୍ ରେଚଃ ହେଁ ଚଃ ।
ଓଡ଼ିଆ - ଦେଉଥିଲେ ମନା କରିବ ନାହିଁ
ଚୁପ୍ କହିଲେ, କେତେବେଳେ କେଜାଣି ।
(ଯଚା ମାଲ୍ ଛାଡ଼ିବ ନାହିଁ ଅର୍ଥରେ ପ୍ରଯୁକ୍ତ ।)

୨୧୬୧୭. ନାହାଁ ଗୁଡିକଲା ତିରେ ଟାଇମ୍ ଘୁଲି ଜାଙ୍ଗାରେ ଜୁତା ।
ଓଡ଼ିଆ - ବର୍ତ୍ତମାନ ବାରମାସିଆ ଟୋକାର ହାତରେ ଘଣ୍ଟା ଗୋଡ଼ରେ ଜୋତା ।

୨୧୬୧୮. ନାଇ ଦାଃ ଦ ଜିଆଲା ମାନୱା ଜୀୟନ ଦଃ ବେରଥା ଗେୟା ।
ଓଡ଼ିଆ - ନଦୀ ପାଣି ନିର୍ମଳ । ମଣିଷ ଜୀବନ ଅସାର ।

୨୧୬୧୯. ନାଲ୍‌ହା କୁଲାୟ ତେସେ ତିସ୍ ଏମ୍ ପଟମ୍ ବାନ୍ଧିଆ ।
ଓଡ଼ିଆ - ଦୈନିକ ମୂଲ ଲାଗି ପାଇବା ଧାନରେ କ'ଣ ଓଳିଆ ବନ୍ଧା ହୋଇପାରିବ?

୨୧୬୨୦. ନାଇ ପାରମ୍ ନାୟହାର୍, ପାଇରାଃ ବାମ୍ ବାଡ଼ାୟା ।
ଓଡ଼ିଆ - ନଈ ସେପାରିରେ ଶ୍ୱଶୁର ଘର, ଅଥଚ ପହଁରା ଜାଣେ ନାହିଁ ।

୨୧୬୨୧. ନାଇ କାଚାରେ ଅଡାଃ କାଚେ ବଚର ଆମ୍ ଚିକାଃ
ଓଡ଼ିଆ -ନଈ କତାରେ ଘର କରି ଡରୁଛ କାହିଁକି?



# ପରିଶିଷ୍ଟ

୨୧୬୨୨. ନଈ ଭିତରେ ଯାଉଥିଲି ମୁହିଁ,
ମାଡିଲି ମୁଣ୍ଡା ଗାଗର,
ବୋଉକୁ କହିବ କାନ୍ଦିବେ ନାହିଁ ।
କୋଉଁ ଟ ଗୁଣ ଗୁଣ ସାଗର ।

୨୧୬୨୩. ନୁହେଁ ଚନ୍ଦ୍ରକର କରେ ଆହ୍ଲାଦ,
ଅମୃତ ନୁହେଁ ସେ ତହୁ ସୁଆଦ,
ଚିନ୍ତା ନୁହେ ହାତ କରେ ବିଷାଦ,
ବଳାଏ ଗରବ ନୁହେ ସମ୍ପଦ ।

୨୧୬୨୪. ନାନା ବାୟା ହୋ ! ମୋ ବୋଲ ଶୁଣ,
ବିଲମାଛ ଖାଇଗଲେ, ଧଉଳି ଖଣ୍ଡିଏ ବୁଣ୍ ।

୨୧୬୨୫. ନିଜ ଗାରିଜା ପାଟବଂଶୀ,
ଜାନୁରେ ଥାଡି କୋଳେ ବସି ।

୨୧୬୨୬. ନଜାଣି ଗୋଦରୀ କରିଛି ଓଷା,
ଘରେ ଖାଉଥାଏ ଟାଙ୍ଗିଆ ପଶା ।

୨୧୬୨୭. ନ ଜାଣି ଚଷିଲି ପଧାନ ହେତା,
ଭାଉ ଯାକ ନେଇଗଲେ ଭୋକତା ।

୨୧୬୨୮. ନିଷ୍କାମ ନିକ୍ରୋଧ ନିର୍ଲୋଭ,
ତୁମ୍ଭର ଦର୍ଶନ ଦୁର୍ଲଭ ।

୨୧୬୨୯. ନିଗମ ଦେଖିଣ ତହିଁ ମଦନ ଲୁଚେ ।

୨୧୬୩୦. ନୃସିଂହ ମାଧବ ମୁରାରି,
ନଖରେ ହିରଣ୍ୟ ବିଦାରି ।

୨୧୬୩୧. ନଖ ବାଳ ଛାଡି ଭାଲୁଏ କେତେ ଯୋଗୀ ହେଲେଣି ।

୨୧୬୩୨. ନନ୍ଦ ନନ୍ଦନ ଗୋପିନାଥ,
ନିସ୍ତରି ଯିବା ନରେ ଚିନ୍ତ ।

୨୧୬୩୩. ନାନାବନେ ରତିର ସେ ରସିଲେ,
କାମକଳା କୁଶଳ ଦରଶିଲେ ।

୨୧୬୩୪. ନାରୀ ଭକ୍ତ ହରେ ଯେ ଘୃଣ୍ୟ
ଧ୍ୱଂସ ତାହାର ପରମ ପୁଣ୍ୟ ।

୨୧୬୩୫. ନଈ ପାର ହେଲେ ନଙ୍ଗବ ପିଠି,
ସର୍ପ ବିବରରେ ତୁଳସୀ କଣ୍ଠି ।

୨୧୬୩୬. ନାକକଟାର ମା ବୁଢି,
ବୁଲେ ଘୁରି ଘୁରି,

ହାତରେ ତା'ର ଲୁଣ ଭାଣ୍ଡ,
ଆଉ ହାତରେ ଛୁରା ।
ଯେଉଁ ପିଲାଟି କାନ୍ଦିବ,
ତାର ନାକଟି କାଟି, କାନଟି କାଟି,
ଲୁଣିରେ ଗଡେଇ ଦବ ।

୨୧୬୩୭. ନରମ ବିଜିର ଖଡମ ପାଦ,
ଚାଲିଲେ ବିଜିର ନ ହଲେ ପାଦ ।

୨୧୬୩୮. ନୋବା (= ଖାଦ୍ୟ ଲୋଭ) ହୁଏ ହକ୍ ହକ୍,
ତୁ ନୋବାକୁ ସମ୍ଭାଳ ।

୨୧୬୩୯. ନୂଆ ନୂଆ ତେନ୍ତୁଳି ମଞ୍ଜି,
ପୁରୁଣା ହେଲେ ଦିଅ ଗୁଞ୍ଜି ।

୨୧୬୪୦. ନୂଆ ବୋହୂ ନୋଥରା, ଶାହାଡାଗଛର ପେଡିନୀ ।

୨୧୬୪୧. ନିଜର ନାକ କାଟି ପରର ଯାତ୍ରା ଭଙ୍ଗ ।

୨୧୬୪୨. ନାଁ ଧନ୍ୱନ୍ତରି, କାମରେ ଜମ ।

୨୧୬୪୩. ନିଷର୍ମା କାର୍ଣ ନାୟାର ଧୁମାଲି ସାର ।

୨୧୬୪୪. ନାଆଁଟି ମୋର ଯମୁନାଦାସୀ,
ପରର ଖାଇ ଖୁସି ମିଜାସି ।

୨୧୬୪୫. ନିଜ (ଆପଣାର) କଥା ପାଞ୍ଚ କାହାଣ ।

୨୧୬୪୬. ନିଜର ନାକ କାଟି ପରର ଯାତ୍ରା ଭଙ୍ଗ ।

୨୧୬୪୭. ନିଜକୁ ଆଗେ ସମ୍ଭାଳ,
ପରେ ଯାଇ ପରକୁ ଧର ।

୨୧୬୪୮. ନିଜର ଅଛିତ ଖାଅ,
ନ ହେଲେ କଲବଲ କରି ଚାହିଁ ।

୨୧୬୪୯. ନାହିଁ ଘରେ ହାଉଁ ।

୨୧୬୫୦. ନାରାୟଣଂ ନମସ୍କୃତ୍ୟଂ ନରଂଚୈବ ନରୋତ୍ତମଂ ।
ଦେବୀ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦିରୟେତ୍ ॥
ମୁକଂ କରୋତି ବାଚାଳଂ ପଙ୍ଗୁ ଲଘଂୟତେ ଗିରିଂ ।
ଯତ୍କୃପା ତମହଂ ପରମାନନ୍ଦ ॥

୨୧୬୫୧. ନାରୀର କର୍ତ୍ତବ୍ୟ ବସୁମତୀ ପାଏ,
ସମସ୍ତ କଷଣ ସହି,
ପୁରୁଷ ମଙ୍ଗଳ କାର୍ଯ୍ୟେ ହେବ ବ୍ରତୀ,
ଛାୟାପରି ପାଶେ ରହି ।

୨୧୬୫୨. ନ୍ୟାୟମାତ୍ମା ବଳହୀନେନ ଲଭ୍ୟଃ ।
(ବଳହୀନ ଲୋକର କେବେହେଲେ ଆତ୍ମଲାଭ ହୁଏ ନାହିଁ । ଆତ୍ମଶକ୍ତି ଦୃଢ଼ କରି ନ

ପାରିଲେ ମକାହାରିଠାରୁ ପ୍ରକୃତ ଆତ୍ମା ଆଦର ନ୍ୟାୟ ଓ ହକ୍ ମିଳିବ ନାହିଁ ।)

୨୧୬୫୩. ନାହିଁ ଜାତି ଭେଦ, ନାହିଁ ଧର୍ମଭେଦ,
ସାମ୍ୟ ମୈତ୍ରୀ ମନ୍ତ୍ର ଗାଏ ଯାର ବେଦ,
କେ କରିବ ଭବେ ଦେବତା ମାନବେ,
ନୀଳାଚଳେ ତାର ପ୍ରବେଶ ନିଷେଧ ।

୨୧୬୫୪. ନୁହେଁ ବୃଦ୍ଧ ସେହିଜନ ଶୁକ୍ଳକେଶ ଅଟେ ଯା'ର ଶିର,
ଯୌବନେ ଯେ ଜ୍ଞାନେ ରତ ଦେବ ତାଙ୍କୁ ବୋଲାନ୍ତି ସ୍ଥବିର ।

୨୧୬୫୫. ଚୁଆ ତାଟିଆରେ ମୁଗୁନି ଜାଇ - ହେ ମୋର ଭାଇନା,
ଯଦି ହୋଇଥିବୁ ପିଠିର ଭାଇ - ହେ ମୋର ଭାଇନା,
ଅଠର ଓଳିକି ଆଣିବୁ ଯାଇ - ହେ ମୋର ଭାଇନା ।

୨୧୬୫୬. ନ ବିଶ୍ୱସେଦ ବିଶ୍ୱସ୍ତଂ ମିତ୍ରଞ୍ଚାପି ନ ବିଶ୍ୱସେ ।
କଦାଚିତ୍ କୁପିତଂ ମିତ୍ରଂ ସର୍ବଦୋଷଂ ପ୍ରକାଶୟେତ୍ ॥
(ଅବିଶ୍ୱାସୀକି ବିଶ୍ୱାସ କେଭେ ନ କରିବ ।
ମିତ୍ର ଆଗେ କେବେଁ ଗୁପ୍ତକଥା ନ କହିବ ।
ଦୈବବଳେ ଯଦି କେବେ ବିବାଦ ହୁଅଇ ।
ବିଶ୍ୱାସ କଥାକୁ କହି ପ୍ରମାଦ ଘଟାଇ ।)

୨୧୬୫୭. ନ କଶ୍ଚିତ୍ କସ୍ୟା ଚିନ୍ମିତ୍ରଂ ନ କଶ୍ଚିତ୍ କସ୍ୟାଚିଦ୍ରିପୁଃ ।
କରଣେନ୍ ହି ଜାନାତି ମିତ୍ରାଣି ରିପୁ ବସ୍ତଥା ।
(ସଂସାରରେ ଶତ୍ରୁ ବୋଲି କେହି ନୁହନ୍ତି କାହାର ।
କେ କାହାର ମିତ୍ର ନୁହେଁ ଜାଣ ସୁଜ୍ଞନର ।
କାର୍ଯ୍ୟକାଳେ ଶତ୍ରୁ ମିତ୍ର ପଡିଯାଏ ଜଣା ।
ସୁଜ୍ଞାନିଏ ବୁଝନ୍ତି ତା କରି ବିବେଚନା ॥)

୨୧୬୫୮. ନଦୀକୂଳେ ଚ ଯା ଗୃହଂ ପରହସ୍ତଗତଂ ଧନଂ ।
କାର୍ଯ୍ୟା ସ୍ତ୍ରୀ ଗୋଚରଂ ଯସ୍ୟ ତସର୍ବଂ ବିଫଳଂ ଭବେତ୍ ॥
(ନଈକୂଳେ ଘରଥିଲେ ପରତେ ନ ଥାଏ ।
ପରହାତ ଧନ କେବେ କାର୍ଯ୍ୟେ ନ ଯୋଗାଏ ।
ଆଗତ କାର୍ଯ୍ୟକୁ ଯେବେ ସ୍ତିରୀଏ ଜାଣନ୍ତି ।
ପ୍ରକାଶ କରିଣ ତାହା ବିଫଳ କରନ୍ତି ।)

୨୧୬୫୯. ନାରୀକେଳ ସମାକାରା ଦୃଶ୍ୟନ୍ତେପି ଚ ସଜ୍ଜନାଃ ।
ଅନ୍ୟେ ବଦରିକାକାରା ବହିରେବ ମନୋହରାଃ ॥
(ନଡିଆ ପରାୟେ ସାଧୁ ବାହାରେ କଠିନ ।
ଭିତରେ ଥାଏ ତାଙ୍କର ଦୟା ମାୟା କ୍ଷମା ଗୁଣ ।
ଖଳ ଲୋକ ଅଟେ ବରକୋଳିର ସମାନ ।
ଉପରେ କୋମଳ, ହୃଦ ଅତ୍ୟନ୍ତ ପାଷାଣ ॥)

୨୧୬୬୦. ନଦୀନାଞ୍ଚ, ନଖିନାଞ୍ଚ, ଶୃଙ୍ଗିଣା ଶସ୍ତ୍ରପାଣିନାଂ ।
ବିଶ୍ବସୋ ନୈବ କର୍ତ୍ତବ୍ୟ ସ୍ତ୍ରୀଷୁ ରାଜକୁଳେଷୁ ଚ ।
(ନଦୀକୁ ବିଶ୍ବାନ କେବେ ନ କରିବ ନରେ ।
ନଖ ଶିଙ୍ଗ ଥିବା ପ୍ରାଣୀ ନ ଯାଅ ପାଶରେ ।
ଆବର ଶସ୍ତ୍ରଧାରୀଙ୍କୁ ବିଶ୍ବାସ ନ ଯିବ ।
ନାରୀ ପୁଣି ରାଜାଙ୍କୁ ବିଶ୍ବାସ ନ କରିବ ।।

୨୧୬୬୧. ନଥିଲା ଦିନକୁ ନାତୁଣୀ ଢୋଉଁ ।

୨୧୬୬୨. ନାଥ ଦିଶୁଛି ନା ଗାତ ଦିଶୁଛି ।

୨୧୬୬୩. ନାହିଁକୁ ଉପାୟ ନାହିଁ,
ମଲାକୁ ଔଷଧ ନାହିଁ ।

୨୧୬୬୪. ନଅଙ୍କ, ଛତରଖିଆ ।

୨୧୬୬୫. ନଣକି ମାଠିଆ ଗଡୁ,
କାନ ଫିରାଫିରା ପିତଳ ଖଡୁ,
ତୋଠେଇଁ ଚଡକ ପଡୁ ।

୨୧୬୬୬. ନଈ ତୁଙ୍ଗୁଡିଆ ଦଳ,
ଖାଇଲେ ଖାଇବେ କୁଆ ଶାଗୁଣା
ହେଲେ ହେବି କିଆ ତଳ ।

୨୧୬୬୭. ନଈ ପାଣି ଝର ଝର
କାଖେ ବାଉଁସିଆ ସାଙ୍ଗେ ଦିଅର
ଯାଉଥେଲି ବୋପାଘର ।

୨୧୬୬୮. ନଉଁ ନଉଁ କରି ଚାଲଉ ବୁଡୀ
ହାତକେ ପାଚିଆ ହାତକେ ବାଡି ।

୨୧୬୬୯. ନଈ ତଳେ ତଳେ କାଉଁରିଆ,
ଯାଉଛି ପଛକେ ଏ ଘରୁ ମୁହିଁ,
ଆଉ ନ କର କଡିଆ ।

୨୧୬୭୦. ନଈ ପାଣି ଗଲା ଧାରେ,
କଜଳ ଲାଗିତ ମଉଳିଗଲା,
ମୁହଁ ମାଡି ଶୋଇବାରେ ।

୨୧୬୭୧. ନଈରେ ଫାଳିଆ ବତା;
ଝିଅଙ୍କ ଗୋଡରେ ସରୁ ଅଳତା,
ଢୋଉଁ ଯାଉ କଲିକତା ।

୨୧୬୭୨. ନଈକୁଆଣୀ କଦଳୀଫେଣା,
ମୋର ନଣନ୍ଦ ଓଷା
ଟାକୁଆ ଗାଲକୁ ବନ ହଳଦୀ,

ଖୋସି ଦେଇ ଥାଇ ଖୋଷା ।

୨୧୬୭୩. ନକଠକ ବାହାପିଆ,
ନିରି ମାଇଲରେ ପବନପିଆ ।

୨୧୬୭୪. ନ କହି ନ କହି ବଡ କଥାଏ କହିଲ ।

୨୧୬୭୫. ନଖ ମାଜିବି, ବେଣୀ ସାଜିବି
ଦିଅର ସାଙ୍ଗରେ, କଟକ ଯିବି ।

୨୧୬୭୬. ନଖାଇ ନପିଇ କଇଥା ଚୋର ।

୨୧୬୭୭. ନ ଖାଏ ଲୋ ବାଇଗଣ,
ପୁଣି ତ ସେହି ତୁଉଣ, ଭୁଷିବାର କେଉଁ ଗୁଣ ।

୨୧୬୭୮. ନ ଦେବ ଧନ, କହିଣ ତୋଷିବ ଦିବ୍ୟ ବଚନ ।

୨୧୬୭୯. ନ ଦେବା, ନାହିଁ ନ କରିବା,
ଦେବା ଦେବା କହୁଥିବା
ଯାବତ୍ ଚନ୍ଦ୍ର ଦିବାକର ।

୨୧୬୮୦. ନ ପଚି ପଣ୍ଡିତ ମହାମେରୁ,
ବାବୁରା ବଦନ ରାଏ ଗୁରୁ ।

୨୧୬୮୧. ନବାରେ !
ଫୁଲ ଖୋସିଛି ଗଭାରେ ।

୨୧୬୮୨. ନ ଯିବ କୋଟରା,
ନ ଖାଇବ ଓଟରା ।

୨୧୬୮୩. ନବା ଲୋ
କେତେ ଦେଖଉଛି ଛବି ଲୋ ।

୨୧୬୮୪. ନାଆଁ ଭାରିମଲ,
ପିଠିରେ ଗଣ୍ଡିରା ।

୨୧୬୮୫. ନଭରି, ଦୁହା ନକର ମୋତେ,
ନିରାଶ କରି ନ ଯିବି ତତେ ।

୨୧୬୮୬. ନାକ ନଥିଲେ ମାଇପେ ବିଷ୍ଠା ଖାଆନ୍ତେ ।

୨୧୬୮୭. ନାକ ଟାଙ୍ଗି ଯାଉଁ କରୁଛି,
ପରର ନିରିଖି ମରୁଛି ।

୨୧୬୮୮. ନାଥିଲା
ଅଟୁ ତୁ ବିଶାଳ ପାତିଆ,
କଦଳୀ ବୋଲଇ କାଠିଆ,
ଗଡି ଗଡିଗଲା ମାଠିଆ ।

୨୧୬୮୯. ନାରୀକି ଅପମାନ କେ ଦେଲା ମୋର
ଜାଣିଲେ ନାକ କାଟିବି ତାର ।

୨୧୬୯୦. ନାମ ମଉଧୁରୀ, କାଞ୍ଜି ଭୋଜନ ।
୨୧୬୯୧. ନାଆଁ ଗହମ,
ବାଛି ବାଛି କରି ଗଢ଼ିଛି ଯମ ।
୨୧୬୯୨. ନାରେଣିଆ ବାହା ହେଉଛି
ମୋ ମନ ଯାହା ହେଉଛି ।
୨୧୬୯୩. ଦାରଙ୍ଗ ପାଟଣା,ବିଚିତ୍ର ଘଟଣା, ମରଦ ଯାକ ବନ୍ଧ
ବୁଢ଼ାଯାକ ହେଲେ ନାହୁଲୀ ଖେଏଁଇ, ଭୁଆସୁଣୀ ହେଲେ ମରଦ ।
୨୧୬୯୪. ନାହିଆ ମାଉଲା ମାଛ,
ନାହିଁ କରୁ କରୁ ପଣି ଯାଉଛି
ଖାଇବ ତିନୁଳିଛାଟ ।
୨୧୬୯୫. ନାହିଁ ନାହିଁ କରୁଥିବ,
ରନ୍ଧିଆ ତିଅଣ ପୋଟିଆ ଭାତ
ହାଉଁ ହାଉଁ ମାରୁଥେବି ।
୨୧୬୯୬. ନିଆଁରେ ପଶ
ଚୁଲୀରେ ପଶ
ଗାତରେ ପଶ ।
୨୧୬୯୭. ନିକିମା ଦାରୀ କି କରେ ବସି ?
ମୁହଁ ଦେଖୁଥାଏ ମୁକୁର ଘଷି ।
୨୧୬୯୮. ନିତ୍ୟ ରାହାସ ଲାଗିଛି ।
୨୧୬୯୯. ନିମୁଣ୍ଡିଲୋ,
ତୋର କେହି ନାହିଁ
ମୋର କେହି ନାହିଁ
ମୋଡି ମାଡି ହୋଇ ଶୋ ।
୨୧୭୦୦. ନିର୍ବାଣୀ ଆଖଡାରେ ଅଧିକାରୀ ମାଲିକ ।
୨୧୭୦୧. ନିର୍ଲ୍ଲଜ ମୁହଁରେ ବାଜ,
ତହିଁ ବରଡା ଲୁଣ୍ଡାଏ ଟାଜ ।
୨୧୭୦୨. ନିର୍ଲ୍ଲଜ ଘରେ ଥୋବରା କୁଣିଆ ।
୨୧୭୦୩. ନିର୍ଲ୍ଲଜ ପଟୁ, ପିତା ତିଅଣକୁ କୋଟିଲା ଚଟୁ ।
୨୧୭୦୪. ନିଃଶଙ୍କ ପଲ୍ଲୀ, ଗୋବିନା ଉପରେ ସିନ୍ଦୁର କଲି ।
୨୧୭୦୫. ନୂଆ ତେଲ ଘଡି କାଣ୍ଡି,
ତୁମେ ଚାଲୁଥିବ କଲିକତା ବାଟ,
ମୋ ମନ ହେଉଛି ଘାଣ୍ଡି ।
୨୧୭୦୬. ନୂଆ ଖଡଖଡି ଛୁଆ ଗଉଡକୁ ମୋ ନୂଆବୋହୂ ।
୨୧୭୦୭. ନୂଆ ଗଡ ତାଉଳ ଆସିଛି ଯେତେ

ଜଣକୁ ଛାଡ଼ି କରି ଖାଅ ସମସ୍ତେ ।

୨୧୭୦୮. ଦୁଆନ ବତନ ଗୋରୀ,
ଦୁଆ କରି ଯୋଉ ବଚନ କହିଲା,
ଅବନା ଅକ୍ଷରଚାରୀ ।

୨୧୭୦୯. ନେଲା କେ ତା ହରି କିରେ
ଯାଏ କିଛି ସରି କିରେ । (କବିସୂର୍ଯ୍ୟ)

୨୧୭୧୦. ନପୁଂସକ, ବାମନ, କୁବୁଜ, ବଧିର
ଅନ୍ଧ, ଛୋଟା, ସଙ୍ଗରୁ ଛାଡ଼ିବ ବିଚାର ।

୨୧୭୧୧. ନଇ ତଳେ ଗଲା ଓଧ,
ଗୋରୀ ଶୋଇଥିଲା ଗହମ ନିଦ,
ଚୋର କାଟି ନେଲା ବିଦ ।

୨୧୭୧୨. ନାଗର ପୋ ଡେଣ୍ଡୁ । (ସମ୍ବଲପୁରୀ)

୨୧୭୧୩. ନର ଶରୀର ଜରା ବ୍ୟାଧିର ଘର,
ଯାହା ଜାଳାରେ ସଦା ଜଳେ ଅନ୍ତର ।

୨୧୭୧୪. ନିର୍ଲୋଭୀ ଯେ ପରମହଂସ
ତାହାଙ୍କୁ ନ କରି ଜିଘାସ (ଜଗନ୍ନାଥ ଭାଗବତ) ।

୨୧୭୧୫. ନ ପାରିବା ଶତ୍ରୁକୁ କାନ୍ଧେ ବୋହିଥିବ
ବେଳ କାଳ ଜାଣିଣ ଛେଚି ପକାଇବ ।

୨୧୭୧୬. ନିର୍ବଳିଆ (=ନିସତ)କୁ ଖଣ୍ଡିଆ ଘଇଚା
ପେଲା ପେଲିକରି ଦିନ ନଉଥା ।

୨୧୭୧୭. ନୁହା ନହୁଣିଆ ମାଟି;
ବରଷାରେ ଯାଏ ଦଲଦଲେଇ ଲୋ,
ଖରା କଲେ ଯାଏ ଫାଟି । (ଘୁମୁରା ଗୀତ)

୨୧୭୧୮. ଦୁଆନବତନ ଗୋରୀ
ନୂଆ କରି ଯେଉଁ ବଚନ କହିଲା
ଅବନା ଅକ୍ଷର ଚାରି ।

୨୧୭୧୯. ନାମ ବହିଛି ତ୍ରିପାଠୀ,
ସଭାରେ ନ ଫୁଟେ ପାଟି ।

୨୧୭୨୦. ନଜାଣି ସାପଗାତରେ ହାତ ପୁରେଇବା ।

୨୧୭୨୧. ନାମ ରଖେ ଇଟା
ନାମ ରଖେ ବେଟା
ନାମ ରଖେ ତୋଟା ।

୨୧୭୨୨. ନଦେଖି କେତେ କଥା କୁହନ୍ତି ।
ଛଇକି ଢଗ ବୋଲନ୍ତି ।

୨୧୬୨୩. ନାମ ଧର ନାମ କର ସାର,
ଅନନ୍ତ କୃଷ୍ଣର ନାମ ମହିମା ଅପାର ।
ଯିଏ ନାମ, ସେହି କୃଷ୍ଣ ଭକ୍ତନିଷ୍ଠା କରି,
ନାମର ସହିତ ଥାଆନ୍ତି ନିଜେହିଁ ଶ୍ରୀହରି ।

୨୧୬୨୪. ନିଦ୍ରିତ, ନିରସ୍ତ୍ର ଶରଣ ଆଗତ,
ଅବଳା, ଦୂତ, ବାଳକ,
ଏମାନଙ୍କୁ ବଳେ ନାଶ କଲେ ଲାଗେ,
ବୀର ଯଶରେ କଳଙ୍କ ।

୨୧୬୨୫. ନୀଳାଚଳେ ରହିବି ମୁଁ ଦାରୁରୂପେ ଧରି,
ବାଇଶି ପାବଚ୍ଛ ତଳେ ଆସନ ତୁମରି ।

୨୧୬୨୬. ନାସ୍ତ୍ୟ ପ୍ରଯ୍ନ ସତ୍ୟବତାମ । (ସତ୍ୟ ନିଷ୍ଠ ବ୍ୟକ୍ତି ପକ୍ଷରେ କୌଣସି କଥା ଦୁର୍ଲଭ ହୁଏ ନାହିଁ ।)

୨୧୬୨୭. ନାହିଁ ସେ ଧୂପ ଧୂଆଁର ଗନ୍ଧେ
ନାହିଁ ସେ ବେଦ କୋରାନ ଛନ୍ଦେ ।
ସେ ଯେ ହୃଦୟର ଦେବତା ।

୨୧୬୨୮. ନଥର ପରୀକ୍ଷିତ ହୀରାକଣି ।
ପଥରୁ ଭଣା ହେବ ଯେବେ ପାଣି ।
କର ହାତରେ ଥିବ ପଦ୍ମନିଧି ।
ଭପୁଯିବ ଯେବେ ଯାତଣା ବୁଦ୍ଧି ।
କାହାକୁ କହିବା
କପାଳରେ ସିନା କର ତାଡ଼ିବା । ୫ ।

୨୧୬୨୯. ନିଧୁବନ ଅଲୋକିନୀ ।
ରତିକଉଶଳା ମନମୋହିନୀ ।

୨୧୬୩୦. ନିବାବନ୍ଧକୁ ସଜାଡ଼ି ।
କେତେ ଯତନରେ ଥାଉ ନିବାଡ଼ି ।

୨୧୬୩୧. ନଣନ୍ଦ, ଭାଉଜ, ଦିଅର କଳି
ଘର ସଂସାରକୁ ଦିଅଇ ଜାଳି ।

୨୧୬୩୨. ନିଅଣ୍ଟିଆ ଦିନେନା ଦିନେ ଅଣ୍ଟି ପୋଡ଼େ । (ନ୍ୟାୟ)

୨୧୬୩୩. ନିଜ ବୁଦ୍ଧିରେ ଠାକୁର
ପର ବୁଦ୍ଧିରେ କୁକୁର ।

୨୧୬୩୪. ନଡ଼ିଆ ମୂଳେ ଲବଣ ମାଟି
ଶୀଘ୍ର ଶୀଘ୍ର ଧରେ ଗୋଟା ।

୨୧୬୩୫. ନଡ଼ିଆ ମୂଳରେ ଚିଟା
ଗଛ ହେବି ବହୁତ ମୋଟା
ଶୀଘ୍ର ଶୀଘ୍ର ଧରେ ଗୋଟା ।

୨୧୭୩୬. ନଥିଲାବେଳେ କ୍ଷତି ନୀତି ଘଇଚା
ଠେଲି ପେଲି କରି ଦିନ ନେଉଥା ।

୨୧୭୩୭. ନଜର ମାତାକୁ ଖଣ୍ଡଖଣ୍ଡ
ଆରେ ଭାଇ ତୁହି ଝାଟଖଣ୍ଡ । (ବୀରେନ୍ଦ୍ର)

୨୧୭୩୮. ନଷ୍ଟ ବଧୂ ଯେ ତାର ଘରେ,
ପୁତ୍ର ନଷ୍ଟ ଯେ ପରଦାର କରେ ।
ବ୍ରାହ୍ମି ଯଶେ ଘନ ଚାଷେ,
କୁଳବଧୂ ନାଶେ ପ୍ରକାଶ ।

୨୧୭୩୯. ନଟଗୋପାଳର ଗଞ୍ଜାଇ ଆପୁ (ଅଫିମ)
ଦିନେ ନୋହିଲେ ଯେ ନ ଚଳେ ଟାପୁ ।

୨୧୭୪୦. ନାଗନାତିକୁ ଗୁବନା ଦୀପ (ଆକାଶଦୀପ)
ଜଳିବ ଖାଲି ଦପଦପ ।
(ନାଗ-ନାତି ପଡିଲେ ବରକନ୍ୟାଙ୍କର ବିବାହ ହୁଏ ନାହିଁ ବୋଲି ଜ୍ୟୋତିଷ ବିଦ୍ୟା କହେ । ଶିବରାତ୍ରି, କାର୍ତ୍ତିକମାସ, ପଞ୍ଚୁକ ପ୍ରଭୃତିରେ ବାଉଁଶରେ ଠେକି / କଳସୀ ବାନ୍ଧି ତା ଭିତରେ ଦୀପ ରଖି ଜାଳନ୍ତି ଅନ୍ଧକାର ପାଇ ଉଚ୍ଚସ୍ଥାନରେ ଦୀପ ଭଲ ଭାବରେ ଜଳେ, ଏହାକୁ ଆକାଶଦୀପ କୁହାଯାଏ । ପରିସ୍ଥିତିରେ ପଡି ଉଭୟେ ଭିନ୍ନମୁଖ ଥିଲେ ମଧ ସେଇ ପରିସ୍ଥିତିର ତାଡନାରେ ପରସ୍ପର ଜଡିତ ହେବା ପାଇଁ ବାଧ ହେବା ।)

୨୧୭୪୧. ନେଉଟିଆ ଶାଗ ଅଗ
ଯେଉଁ କଥା ପାଇଁ କରିଛ ରାଗ
ଭାବିଲେ ସେ କଥା ହେବ ।

୨୧୭୪୨. ନାରୀକି ନାରୀ ଛପେ ନାହିଁ, ସୂର୍ଯ୍ୟ ଛପେ ନାହିଁ ବାଦଲ ଛାଇ
ରଣେ କ୍ଷତ୍ରି ଛପେ ନାହିଁ, ଦାତା ଛପେ ନାହିଁ ମାଗିଲେ ଦେଇ ।

୨୧୭୪୩. ନିଜେ ସେ ନିଜର ବନ୍ଧୁ ଜିତେନ୍ଦ୍ରିୟ ଅଟଇ ଯେ ଜନ,
ନିଜେ ସେ ନିଜର ଶତ୍ରୁ ରିପୁକୁ ଯେ ନ କରେ ଦମନ ।(ଭକ୍ତକବି ମଧୁସୂଦନ)

୨୧୭୪୪. ନାରୀମାନଙ୍କର କେ ଅପ୍ରିୟ ଅଛି
ପ୍ରିୟ କେହି ନାହିଁ ଜାଣ ।
ନୂଆନୂଆକୁ ସେ ଇଛାକରୁଥାନ୍ତି
ମୃଗ ବନେ ଯେହ୍ନେ ତୃଣ ।

୨୧୭୪୫. ନାରୀମାନଙ୍କର କେ ଅପ୍ରିୟ ହୋଇ
ପ୍ରିୟ ହୋଇ ନାହିଁ କେହି ।
ଗାଈ ନୂଆ ନୂଆ ତୃଣ ପ୍ରାୟ
ବନେ ନୂଆ ନୂଆ ଇଛା ହୋଇ ।

୨୧୭୪୬. ନାରୀମାନେ ବଡ଼ ଉତ୍ସୁକ ହୁଅନ୍ତି
ଯାହାକୁ କହିଲୁ ସତ ।
ଯେବେ ସୁନ୍ଦର ପୁରୁଷଙ୍କୁ ଦେଖନ୍ତି
ପୁତ୍ର ହେଉ ଅବା ଭ୍ରାତ ।

୨୧୭୪୭. ନିର୍ବେଦବନ୍ତ ଲୋକର ଶୋକ ହୋଇ
ଶୋକ ହେଲେ ବୁଦ୍ଧିଯାଇ ।
ବୁଦ୍ଧି ଗଲେ ନାଶ, ଦାରିଦ୍ର୍ୟ
ସମସ୍ତ ବିପତ୍ତିର ହେତୁ ହୋଇ ।

୨୧୭୪୮. ନିମିତ୍ତରେ କୋପ ଯେବେ ହୋଏ
ସେହି କ୍ଷଣଭଙ୍ଗୁର ଯେ ହୋଏ ।
ଯେଣୁ ବଡ଼ ଲୋକମାନଙ୍କର ସ୍ନେହ
ମରିବା ପର୍ଯ୍ୟନ୍ତ ରହେ ।

୨୧୭୪୯. ନିଯୋଗୀ ଲୋକକୁ ପୀଡ଼ା ନ ଦେଲେ,
ଅନ୍ତଃସାରକୁ ନ ଛାଡ଼ନ୍ତି ଭଲେ ।
ଦୁଃଷ୍ଟ ବ୍ରଣକୁ ସେ ଯେତେ ଚିପଇ,
ଯେତିକି ପୂଜ ବାହାର ହୁଅଇ ।
ସେହି ରୂପେ ଜାଣ,
ଚିପୁଥିଲେ ବାହାରୁ ଥାଇ ଧନ ।

୨୧୭୫୦. ନାରୀମାନଙ୍କ ଆହାର ଦ୍ୱିଗୁଣ,
ବୁଦ୍ଧି ତାହାଙ୍କର ସେ ଚତୁର୍ଗୁଣ ।
ଉସାହ ତାଙ୍କର ଷଡ୍‌ଗୁଣ ହୋଇ ।
କାମ ଇଚ୍ଛା ଆଠ ଗୁଣ ଅଟଇ ।
ଏମନ୍ତ ସେ ବୁଦ୍ଧି,
ବିପତ୍ତି ହେଲା କାଳେ ସେ ପ୍ରସିଦ୍ଧି ।

୨୧୭୫୧. ନିତ୍ୟରେ ଦୁର୍ଜ୍ଜନକୁ ସେବା କଲେ,
କେବେହେଁ ସେ ପ୍ରିୟ ନୁହଇ ଭଲେ ।
ମାଇପା ଲଗାଇ ଯେତେହେଁ ସେକି,
କୁକୁର ଲାଙ୍ଗୁଡ଼ ନୁହେଁ ସଳଖ ।
ଖଳ ଲୋକ ପ୍ରୀତି,
ବୁଝିଲେ ବିଷ ବୃକ୍ଷେ ପ୍ରାୟ ରୀତି ।

୨୧୭୫୨. ନିମିତ୍ତ ଦେଖି ଯେ କୋପ କରଇ,
ନିମିତ୍ତ ଗଲେ ସେ ପ୍ରସନ୍ନ ହୋଇ ।
କାରଣ ନ ପାଇ ଯା ମନେ ଦ୍ୱେଷ,
ତାହାକୁ କେ କରିବ ପରିତୋଷ ।

କାରଣ ନ ଥାଇ,
ଦ୍ୱେଷ କଲା ଯେ ପ୍ରତିକାର ନାହିଁ ।

## ଏମାନେ ମୂର୍ଖ

୨୧୭୫୩. ନିଜକୁ ବୁଦ୍ଧିମନ୍ତ ବୋଲି ଜାଣି,
ଦର୍ପେ ଯେ ହିତବଚନ ନ ଶୁଣି,
ବିପଦ-ଖାତେ ସେ ହୁଏ ପତିତ,
ମୂର୍ଖ ସମାଜେ ସେ ପରିଗଣିତ ।

୨୧୭୫୪. ନିକୃଷ୍ଟ ଧାତୁରୁ ସୁନା ବାହାର
କରିବା ପାଇଁ ଚେଷ୍ଟାରେ ଯେ ନର
ଆପଣା ଅର୍ଥ କରେ ଭସ୍ମୀଭୂତ,
ମୂର୍ଖ ବୋଲନ୍ତି ତାକୁ ସୁଧୀବ୍ରତ ।

୨୧୭୫୫. ନିଜକୁ ଜଣେ ଅତି ବଡ଼ଜନ
ଅବା ପଣ୍ଡିତ ବୋଲି ବିଚାରିଣ
ସଦା ଫୁଲୁଥାଏ ଯେବଣ ଲୋକ
ସଂସାର ମଧରେ ସେହିଟି ମୂର୍ଖ ।

୨୧୭୫୬. ନିଜକୁ ପଣ୍ଡିତ ମଣି ଯେ ଜନ
ସଦା ପ୍ରକାଶଇ ବାଚାଳପଣ,
ଜ୍ଞାନୀ ହେଲେ ମଧ ମୂର୍ଖ ନାମରେ
ଅଭିହିତ ହୋଇଥାଏ ଲୋକରେ ।

୨୧୭୫୭. ନିର୍ଦ୍ଦିଷ୍ଟ ସ୍ଥାନେ ପହୁଞ୍ଚି ଯେ ଦୂତ
ଭୁଲିଯାଏ ଆଣିଥିବା ସଙ୍କେତ
ତାହାକୁ ମୂର୍ଖ ବୋଲନ୍ତି ସଂସାରେ,
ଏହି ନୀତି ସଦା ରଖ ମନରେ ।

